# ଆଉ କେତେ ବିଷ ପିଇଲେ ଚେତିବା !





ନଟବର ଷଡ଼ଙ୍ଗୀ

# ଆଉ କେତେ ବିଷ ପିଇଲେ ଚେତିବା !



ନଟବର ଷଡ଼ଙ୍ଗୀ

# ଆଉ କେତେ ବିଷ ପିଇଲେ ଚେତିବା!

*ଲେଖକ :*
**ନଟବର ଷଡ଼ଙ୍ଗୀ**
ରାଜେନ୍ଦ୍ର ଦେଶୀଚାଷ ଗବେଷଣା କେନ୍ଦ୍ର
ଲୋକ ସମବାୟ ପ୍ରତିଷ୍ଠାନ
ନିଆଳି- ନରିଶୋ ରୋଡ୍
ନିଆଳି, କଟକ
ଦୂରଭାଷ: ୯୯୩୭୬୨୦୮୮୩

*ପ୍ରକାଶକ:*
**ସମଦୃଷ୍ଟି ପବ୍ଲିକେଶନସ୍**
ଏଚ୍.ଆଇ.ଜି-୭୮, ଫେଜ-୭,
ଶୈଳଶ୍ରୀବିହାର, ଭୁବନେଶ୍ୱର-୭୫୧୦୨୧

**ପ୍ରଥମ ସଂସ୍କରଣ-୨୦୧୬**



*ମୁଦ୍ରଣ :*
**ଜଗନ୍ନାଥ ଗ୍ରାଫିକ୍ସ**
୩୯୩, ସହିଦ ନଗର, ଭୁବନେଶ୍ୱର

ମୂଲ୍ୟ : ଟ.୨୦୦/-

**Aau Kete Bisa Piele Chetiba!**

*Author:*
**Natabar Sadangi**
Rajendra Deshi Chasa Gabesana Kendra
Lok Samabaya Pratisthan
Niali- Narisho Road
Niali, Cuttack
Mob : 9937620883

*Publisher :*
**Samadrusti Publications**
H.I.G-78, Phase-7,
Sailashree Vihar,
Bhubaneswar-751021

**First Edition- 2016**



*Printed at:*
**Jagannath Graphics**
393, Saheed Nagar
Bhubaneswar

Price: 200/-

# ଉତ୍ସର୍ଗ

ମୋର ପ୍ରତିଟି ଭିନ୍ନ କାମ, ଭିନ୍ନ ଚିନ୍ତା ଓ ଭିନ୍ନ ବିଚାରର ସୃଜନଶୀଳ ସାଥୀ ବଡପୁଅ ରାଜେନ୍ଦ୍ର (ତିରୋଧାନ ମାର୍ଚ୍ଚ୨୭,୨୦୦୮) ଓ ତାର ବଡ ଭାଇ ସଦୃଶ ସାଥୀ ତଥା ବିଦ୍ୱାନ ଅର୍ଥନୀତୀଜ୍ଞ ପ୍ରଫେସର ଶକ୍ତିପ୍ରସାଦ ପାଢ଼ୀ (ତିରୋଧାନ ମାର୍ଚ୍ଚ ୨,୨୦୧୦) ଙ୍କ ସ୍ମୃତିରେ.....

# ମୁଖବନ୍ଧ

**ଡ଼ଃ ବୀରେନ୍ଦ୍ର ନାୟକ**

'ଆଉ କେତେ ବିଷ ପିଇଲେ ଚେତିବା !' ଏକ ଭିନ୍ନ ସ୍ୱାଦର ପ୍ରବନ୍ଧ ସଙ୍କଳନ। ପୁସ୍ତକର ଶିରୋନାମା ହିଁ ବହନ କରେ ଲେଖକର ଆକୁଳ ଆବେଦନ ଯାହା ପ୍ରତିଫଳିତ ହୋଇଛି ଏହି ସଙ୍କଳନରେ ସ୍ଥାନିତ ତଥ୍ୟ, ସୂଚନା ଓ ବଳିଷ୍ଠ ଯୁକ୍ତି ଦ୍ୱାରା ପୁଷ୍ଟ ପ୍ରବନ୍ଧ ଗୁଡ଼ିକରେ। ଲେଖକ ଶ୍ରୀଯୁକ୍ତ ନଟବର ଷଡଙ୍ଗୀ ଏହି ପ୍ରବନ୍ଧ ଗୁଡିକ ଜରିଆରେ ଆଜିର ବଂଶଧରଙ୍କୁ ଚେତିବା ପାଇଁ ଆହ୍ୱାନ ଦେଇଛନ୍ତି ଯାହାକୁ ଅବହେଳା କଲେ ଏକ ପରାଙ୍ମୁଖୀ, ଦୁଃସାଧ ରୋଗାକ୍ରାନ୍ତ, ବିକଳାଙ୍ଗ ଭବିଷ୍ୟତ ବଂଶଧର ପାଇଁ ଆମେ ଯେ ଦାୟୀ ହୋଇଯିବା। କୃଷିର ପରିବେଶ, କୃଷକର ଅସ୍ତିତ୍ୱ ଓ ଉପଭୋକ୍ତାର ସ୍ୱାସ୍ଥ୍ୟ କିପରି ଆଜି ସଙ୍କଟାପନ୍ନ ତାହାର ପ୍ରତିଫଳନ ହୋଇଛି ଏହି ପ୍ରବନ୍ଧ ଗୁଡିକରେ। ସ୍ଥାନୀୟ ସ୍ତରରେ ବ୍ୟକ୍ତିଗତ ଅନୁଭୂତି ସହ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ କୃଷି ଓ କୃଷକର ସ୍ଥିତିର ଅଧ୍ୟୟନର ଏକ ସମନ୍ୱିତ ଚିତ୍ରର ଅତି ସରଳ ଭାଷାରେ ପରିବେଷଣ ହୋଇଛି ଏହି ପ୍ରବନ୍ଧ ମାନଙ୍କରେ। ଏହି ପ୍ରବନ୍ଧମାନଙ୍କରେ ବୃହତ୍ତର ପ୍ରଶ୍ନର ଉତ୍ଥାପନ ହୋଇଛି। ପ୍ରଶ୍ନ କରାଯାଇଛି, ନୂତନ ପୁରାତନ ସବୁ ସଂସ୍କରଣର ସବୁଜ ବିପ୍ଳବକୁ, ଜଗତିକରଣ, ଉଦାରୀକରଣ, ଘରୋଇକରଣ ପ୍ରାଧାନ୍ୟ ପାଉଥିବା ଅର୍ଥନୈତିକ ପର୍ଯ୍ୟାୟକୁ, ପ୍ରଶ୍ନ କରାଯାଇଛି କମ୍ପାନୀ କୃଷିକୁ, ବିହନ ଉପରେ କମ୍ପାନୀର ନିୟନ୍ତ୍ରଣକୁ, ପ୍ରଶ୍ନ କରାଯାଇଛି ଗୁଣସୁତ୍ର ସ୍ତରରେ ବିହନର ପରିବର୍ତ୍ତନକୁ ଓ ଏହି ପରିବର୍ତ୍ତିତ ବିହନର ବ୍ୟବହାରକୁ।

ଏହି ପ୍ରବନ୍ଧମାନଙ୍କରେ କୃଷକର ଆତ୍ମନିର୍ଭରଶୀଳତା ଉପରେ କୁଠାରଘାତ ବିବ୍ରତ କରିଛି ଲେଖକଙ୍କୁ, ତାର ଆତ୍ମହତ୍ୟା ବ୍ୟଥିତ କରିଛି ଲେଖକଙ୍କୁ, ଖାଦ୍ୟ ଥାଳିରୁ ଉଭାନ୍ ହୋଇଯାଉଥିବା ବିନା ସାର, କୀଟନାଶକ ପ୍ରୟୋଗରେ ଉତ୍ପାଦିତ ଶସ୍ୟ, ପନି- ପରିବାର ବ୍ୟଞ୍ଜନ ମର୍ମାହତ କରିଛି ଲେଖକଙ୍କୁ। ୨୦୦୭ରୁ ୨୦୧୨ ମଧ୍ୟରେ ପାକ୍ଷିକ ପତ୍ରିକା 'ସମଦୃଷ୍ଟି'ରେ ପ୍ରକାଶିତ ଏହି ପ୍ରବନ୍ଧ ଗୁଡିକ ସମ୍ପ୍ରତି ଭୂମି ଅଧିଗ୍ରହଣ ଆଇନ-୨୦୧୩

ଓ ଅଧ୍ୟାଦେଶ-୨୦୧୫କୁ ନେଇ ହେଉଥିବା କୃଷକ ଓ କୃଷି କେନ୍ଦ୍ରିକ ବିତର୍କର ପୃଷ୍ଠଭୂମିରେ ଅତ୍ୟନ୍ତ ପ୍ରାସଙ୍ଗିକ ମନେହୁଏ। ଏହି ଆଇନ ଓ ଅଧ୍ୟାଦେଶ ଉପରେ ଚାଲିଥିବା ଆଲୋଚନାରେ କୃଷି ଓ କୃଷକ ସପକ୍ଷରେ ଯୁକ୍ତି ଉପସ୍ଥାପନ ପାଇଁ ଯଥେଷ୍ଟ ଖୋରାକ ଏହି ପ୍ରବନ୍ଧ ମାନଙ୍କରୁ ମିଳେ। ଯେଉଁମାନେ ଏହି ସଙ୍କଳନରେ ସ୍ଥାନିତ ପ୍ରବନ୍ଧ 'ଚାଷୀ ଆତ୍ମହତ୍ୟା: ନିଦାନ, ନିରାକରଣ ଓ ନିୟନ୍ତ୍ରଣ' ପଢ଼ିବେ, ସେମାନେ ନିଶ୍ଚିତ ଆଶା କରିବେ ଯେ ଉତ୍ତର ଭାରତ ଓ ପଶ୍ଚିମ ଭାରତରେ ସମ୍ପ୍ରତି ଦେଖାଯାଇଥିବା ଚାଷୀର ଆତ୍ମହତ୍ୟାକୁ ପ୍ରସଙ୍ଗ କରି ଉକ୍ତ ଅଧ୍ୟାଦେଶର ପ୍ରତ୍ୟାହାର ଦାବୀ କରୁଥିବା ବିରୋଧୀ ମାନେ ଯେମିତି ଭୂସଂସ୍କାର ଆଇନ ପ୍ରଣୟନ ପାଇଁ ମଧ୍ୟ ବଳିଷ୍ଠଭାବେ ଦାବୀ କରନ୍ତି। ଉପସ୍ଥାପକ ନଟବରବାବୁଙ୍କ ବିଚାରରେ ଚାଷୀ ଆତ୍ମହତ୍ୟାର ପ୍ରକୃତ ନିରାକରଣ ରହିଛି ଭୂସଂସ୍କାରରେ। ତାଙ୍କ ଭାଷାରେ, "ଭୂସଂସ୍କାର କମିଶନ ଗଠନ କରି ଚାଷଜମି ଭୂମିହୀନ ଚାଷୀମାନଙ୍କୁ ବଣ୍ଟନ କରିବାରେ ଅହେତୁକ ବିଳମ୍ବ ହେଲାଣି। ସାଆନ୍ତଙ୍କ ଦଖଲରେ ହଳିଆ ଭାଗଚାଷ କରି ଆତ୍ମହତ୍ୟା କରିବ, ଏ ଧାରା ବେଶୀ ଦିନ ଚାଲି ପାରିବ ନାହିଁ। ଭାଗ ଚାଷୀକୁ ଜମିରେ ଦଖଲ ରେକର୍ଡଭୂକ୍ତ କରାଯାଉ। ଉତ୍ପନ୍ନ ଫସଲରୁ ଜମି ମାଲିକ ୨୫ ପଇସା ଓ ଚାଷୀ ୭୫ ପଇସା ପାଇବା ପାଇଁ ଆଇନଗତ ବିଧାନ ରହୁ। ଭୂସଂସ୍କାର କମିଶନରେ ଭୂମିହୀନମାନଙ୍କ ମଧ୍ୟରୁ ପ୍ରତିନିଧିତ୍ୱ ଆବଶ୍ୟକ।" କାରଣ ନଟବରବାବୁଙ୍କ ଦୃଷ୍ଟିରେ, "ଆତ୍ମହତ୍ୟା କରିଥିବା ଚାଷୀମାନେ ସମସ୍ତେ ଛୋଟ ଚାଷୀ ବା ନାମମାତ୍ର ଚାଷୀ ଅଥବା ଭାଗଚାଷୀ। ଚାଷୀ ଆତ୍ମହତ୍ୟା ତାଲିକାରେ କେହି ସାଆନ୍ତିଆ ଚାଷୀ ନାହାନ୍ତି।" କୃଷକର ଆତ୍ମହତ୍ୟା ପ୍ରସଙ୍ଗରେ ପାଞ୍ଚ ବର୍ଷତଳେ ନଟବର ବାବୁଙ୍କ ପ୍ରବନ୍ଧରେ ଗୁରୁତ୍ୱ ପାଇଥିବା ନାମମାତ୍ର ଚାଷୀ ବା ଭାଗଚାଷୀ ଆଜି ସଂଘ ପରିବାରର ସଦସ୍ୟ ସ୍ୱଦେଶୀ ଜାଗରଣ ମଞ୍ଚର ଉଦ୍ୟୋକ୍ତା ବିଶିଷ୍ଟ ସ୍ତମ୍ଭକାର ଏସ ଗୁରୁମୂର୍ତ୍ତୀଙ୍କ ପ୍ରବନ୍ଧରେ ଗୁରୁତ୍ୱ ପାଏ (Cultural Bias Killing Villages, Farming in the Country-S. Gurumurthy, The New Indian Express, Bhubaneswar, Thursday, 7th May 2015, p.9 ) ।

ଗୁରୁମୂର୍ତ୍ତି ଲେଖନ୍ତି, "କ୍ଷୁଦ୍ର ବା ନାମମାତ୍ର ଚାଷୀଙ୍କୁ ଛାଡି କୃଷି ହୋଇପାରେନା। ଗାଁକୁ ଛାଡି କ୍ଷୁଦ୍ର ବା ନାମମାତ୍ର ଚାଷ ହୋଇପାରେନା। ଭାରତ ପାଇଁ କୃଷି ଓ ଖାଦ୍ୟ ନିରାପତ୍ତା କ୍ଷୁଦ୍ରଚାଷ ବା ଗାଁକୁ ଛାଡି ସମ୍ଭବ ନୁହେଁ। ସେମାନେ ହେଉଛନ୍ତି ବିରାଟ ସମ୍ପତ୍ତି।" ( "There is no agriculture without small and marginal farm-

ers. And there is no small and marginal farming without villages. And there is no agriculture or food security for India without small farming or villages. They are a great asset.") ।

କିନ୍ତୁ ଗୁରୁମୂର୍ତ୍ତିଙ୍କ ପ୍ରବନ୍ଧରେ ଏହି 'ବିରାଟ ସମ୍ପତ୍ତି' କୁ କାଏମ ରଖିବାର ଆବଶ୍ୟକତା ଉପରେ ଗୁରୁତ୍ୱ ଥିବା ବେଳେ, କିପରି କାଏମ ରଖାଯାଇ ପାରିବ ତାହାର କୈଣସି ଠୋସ ପ୍ରସ୍ତାବ ପରିଲକ୍ଷିତ ହୁଏ ନାହିଁ । ଅପର ପକ୍ଷରେ ଭୂସଂସ୍କାର ଦ୍ୱାରା ଏହି 'ବିରାଟ ସମ୍ପତ୍ତି'କୁ କାଏମ ରଖାଯାଇ ପାରେ ବୋଲି ସମ୍ବାଦ ମିଳେ ନଟବରବାବୁଙ୍କ ଦ୍ୱାରା ପାଞ୍ଚ ବର୍ଷ ତଳେ ଲିଖିତ ପ୍ରବନ୍ଧରୁ ।

ଚାଷୀର ଆତ୍ମହତ୍ୟାକୁ ଏକ ରାଜନୈତିକ ଅସ୍ତ୍ର ଉର୍ଦ୍ଧ୍ୱରେ ବିଚାର କରୁଥିବା ପ୍ରତ୍ୟେକ ସଚେତନ ବ୍ୟକ୍ତି ନଟବରବାବୁଙ୍କ ଏହି ପରାମର୍ଶ ସହ ନିଶ୍ଚିତ ଏକମତ ହେବେ। କିନ୍ତୁ କେଉଁ ମୁଖ୍ୟଧାରାର ରାଜନୈତିକ ଦଳ ଭୂସଂସ୍କାର ହେଉ ତାହା ଚାହିଁବ ? ତେଣୁ ପାଠକ ନଟବରବାବୁଙ୍କର ଏହି ପରାମର୍ଶକୁ ମୁଖ୍ୟ ରାଜନୈତିକଦଳ ମାନଙ୍କ ପ୍ରତି ଏକ ଆହ୍ୱାନ ବୋଲି ମନେ କରି ପାରନ୍ତି। ନଟବରବାବୁ ଏହି ପ୍ରବନ୍ଧଗୁଡିକରେ ଆଉ ଏକ ଦିଗପ୍ରତି ପାଠକଙ୍କର ଦୃଷ୍ଟି ଆକର୍ଷଣ କରନ୍ତି। ତାହା ହେଉଛି କୃଷକର ସ୍ୱାଧୀନତା। ବିଡମ୍ବନା ଯେ କୃଷି ପ୍ରଧାନ ରାଷ୍ଟ୍ର ସ୍ୱାଧୀନ ଭାରତରେ ଆଜି କୃଷକର ସ୍ୱାଧୀନତା ସଙ୍କଟାପନ୍ନ। ନଟବରବାବୁ ପ୍ରଶ୍ନ କରନ୍ତି, "ଭାରତୀୟ କୃଷକର ସ୍ୱାଧୀନତା ନାହିଁ। ସେ କଣ ଚାଷ କରିବ ? କେଉଁ ବିହନ କେଉଁଠୁ କିଣିବ, କେତେ ରାସାୟନିକ ସାର ଓ କୀଟନାଶକ କିଣିବ, ଏ ସବୁ ସରକାରଙ୍କ କୃଷି ବିଭାଗ ସ୍ଥିର କରିବ। ତା ଓଳିଆରେ ଆଉ ବିହନ ନାହିଁ। ବାଡିରେ ଖତ ନାହିଁ। ଖୁଣ୍ଟରେ ବଳଦ ନାହିଁ। ସବୁ ସାଧନ ବଜାରରୁ କିଣିବ। ପାଣି ବି ସରକାରଙ୍କ ଠାରୁ କିଣିବ। ଗୋଟିଏ ଏକର ଜମି ଧାନ ଚାଷ ପାଇଁ ୧୦ ହଜାରରୁ ୧୨ ହଜାର ଟଙ୍କା ଖର୍ଚ୍ଚ। ବ୍ୟୟ ବହୁଳ କୃଷି, ପୁଣି ଜମି ମାଲିକକୁ ଅଧେ ଫସଲ ଦେଲା ପରେ ୪/୫ ବସ୍ତା ଧାନ ଘରକୁ ନେବ। ଋଣ ଶୁଝିବ କେଉଁଠୁ ? ସବୁଜ ବିପ୍ଳବ ବା ରାସାୟନିକ କୃଷି ତା ପାଇଁ କାଳ ।" ('ଚାଷୀ ଆତ୍ମହତ୍ୟା: ନିଦାନ, ନିରାକରଣ ଓ ନିୟନ୍ତ୍ରଣ')। ଗତ ଶତାବ୍ଦୀର ମଧ୍ୟ ଭାଗରେ ତଥା ୬୦ ଦଶକରେ ଭାରତ ଭୂଇଁରେ ଆରମ୍ଭ ହୋଇଥିବା ସବୁଜ ବିପ୍ଳବ ବା ରାସାୟନିକ କୃଷିର ପ୍ରଚଳନ ହିଁ କୃଷକର ସ୍ୱାଧୀନତାକୁ ବିପନ୍ନ କଲା, ତାହାର ଏଯାବତ୍ ନିଜେ ନେଇପାରୁଥିବା ନିଷ୍ପତ୍ତି ସରକାରଙ୍କ ହାତକୁ ଚାଲିଗଲା। ଆଜି ଜଗତିକରଣ, ଉଦାରୀକରଣ ଓ ଘରୋଇକରଣର ଆକ୍ରାମକ ଅର୍ଥନୈତିକ ପରିବେଶରେ ଏହାକୁ

ମନସାଣ୍ଟୋ ଭଳି ବିଦେଶୀ କମ୍ପାନୀ ହାତକୁ ଟେକି ଦେବା ପାଇଁ ମସୁଧା ଆରମ୍ଭ ହେଲାଣି। ଉପଭୋକ୍ତା ମନରେ ରାସାୟନିକ କୃଷିଜାତ ଦ୍ରବ୍ୟ ପ୍ରତି ବିମୁଖତାକୁ ଦୃଷ୍ଟିରେ ରଖି ଏହି କମ୍ପାନୀମାନେ ଗୁଣ ସୂତ୍ର ପରିବର୍ତ୍ତିତ ବା ଜେନେଟିକାଲି ମଡିଫାଏଡ ବିହନର ପ୍ରଚଳନ ପାଇଁ ବଜାର ସୃଷ୍ଟିରେ ମାତିଗଲେଣି ଓ ଏହାକୁ ବଚସ୍କର ବୈଜ୍ଞାନିକମାନେ ଦ୍ୱିତୀୟସବୁଜ ବିପ୍ଳବ ବୋଲି କହିବା ଆରମ୍ଭ କଲେଣି। କୃଷକ ସ୍ୱାଧୀନତା ଅପହରଣ ପାଇଁ ଦ୍ୱିତୀୟ ସବୁଜ ବିପ୍ଳବ ଏକ ଆହୁରି ମାରାତ୍ମକ ଷଡଯନ୍ତ୍ର ତାହାର ସୂଚନା ନଟବରବାବୁ ଖୁବ ବିସ୍ତାରିତ ଭାବେ ସଙ୍କଳନରେ ସ୍ଥାନିତ ପ୍ରବନ୍ଧ ମାନଙ୍କରେ ଦେଇଛନ୍ତି । 'ଆମ ଭାତ ହାଣ୍ଡିର ମାଲିକ ହେବ ମନସାଣ୍ଟୋ' 'ବାଇଗଣ ଭରତାର ଦିନ କାଳ ସରି ଆସୁଛି' 'ସୁନା ହରିଣ ବନାମ ସୁନେଲି ଧାନ' 'ବିଟି ବାଇଗଣ ଗୁମର କଥା' 'ବିହନ ଆଗକୁ ଆସୁଛି ଦୁର୍ଦ୍ଦିନ' ଶିରୋନାମାରେ ସ୍ଥାନିତ ପ୍ରବନ୍ଧମାନଙ୍କରେ ନଟବରବାବୁ ଅତି ସରଳ ଭାଷାରେ ଉପସ୍ଥାପିତ କରିଛନ୍ତି ମନସାଣ୍ଟୋ ଭଳି ବିଦେଶୀ ବିହନ କମ୍ପାନୀମାନଙ୍କର ପ୍ରବେଶ ଭାରତ ଭୂଇଁରେ କେତେ ଗମ୍ଭୀର ହେବାକୁ ବସିଲାଣି। ସ୍ୱାଭାବିକ ଏହାକୁ ମୁକାବିଲା କରିବା ପାଇଁ ତାଙ୍କର ଆହ୍ୱାନ ଏହି ପ୍ରବନ୍ଧମାନଙ୍କରେ ପ୍ରତିଧ୍ୱନିତ ହୁଏ। 'ଦେଶୀଚାଷ ବିପ୍ଳବ ପାଇଁ ଜାତୀୟ ବିତର୍କର ଆରମ୍ଭ ହେଉ' ବୋଲି ଆହ୍ୱାନ ଓ ଏଥିରେ 'ଛୋଟ ଓ ନାମମାତ୍ର ଚାଷୀ, ଗାଁର ୬୦/୭୦ ବର୍ଷର ବୁଢାବୁଢୀଙ୍କୁ ଆଲୋଚନରେ ଅଗ୍ରାଧିକାର' ଦେବା ପାଇଁ ପରାମର୍ଶ ଦର୍ଶାଏ ନଟବରବାବୁଙ୍କର ବିଶ୍ୱାସର ଦୃଢତା ଯେ କୃଷି, କୃଷକ ଓ ଖାଉଟିର ମୁକ୍ତିର ପ୍ରତିଶୃତି ଦେଶୀଚାଷରେ ହିଁ ରହିଛି। ଦେଶୀ ବିହନ, ହଳ, ଲଙ୍ଗଳ, ବଳଦ, ଗୋବର ଖତ, ନିମ୍ବ ପିଡିଆ, ଧନିଚା ଚାଷ ଦେଶୀଚାଷରେ 'ସୁନେଲି ଧାନ'ର ସ୍ଥାନ ନାହିଁ, ଏହା ନଟବରବାବୁଙ୍କର ବିଶ୍ୱାସ । ତେଣୁ ଏହାର 'ବିରୋଧ ଜାରି ରଖିବାକୁ ହେବ'; 'କୃଷିକ୍ଷେତ୍ରରେ ଆସନ୍ନ ବିପର୍ଯ୍ୟୟକୁ ଟାଳିବାକୁ ହେଲେ "ସୁନେଲି ଧାନ" ନୁହେଁ "ଦେଶୀଧାନ" ହିଁ ଏକମାତ୍ର ବିକଳ୍ପ ।' ଏହି ବିକଳ୍ପକୁ ଗତ ଦୁଇଦଶନ୍ଧି ଧରି କାର୍ଯ୍ୟକାରୀ କରିଆସୁଛନ୍ତି ନଟବରବାବୁ ନିଜ ଖେତରେ । ପ୍ରମାଣ କରିଛନ୍ତି ଯେ ଏହି 'ଚାଷରେ ଅଳ୍ପ ଖର୍ଚ୍ଚ' ରୋଗ ପୋକ ନାହିଁ । ଉତ୍ପାଦନ ମଧ୍ୟ ଏକରକୁ ୧୫/୨୦ କ୍ୱିଣ୍ଟାଲ ନିଶ୍ଚୟ ହେବ। ବିହନ ପାଇଁ ବଜାରକୁ ଯିବାକୁ ପଡିବ ନାହିଁ ।' ଏହି ପ୍ରବନ୍ଧ ଗୁଡିକରେ ବାର୍ତ୍ତା ନିଜସ୍ୱ ଅନୁଭୂତିସିକ୍ତ, ତାହା ନିଜ ଖେତରୁ ହେଉ ବା ଓଡିଶାର ବିଭିନ୍ନ ଅଞ୍ଚଳର ଚାଷୀଙ୍କ ସମସ୍ୟାକୁ କ୍ଷେତ୍ର ଉପରେ ପ୍ରତ୍ୟକ୍ଷ କରି ହେଉ, ତେଣୁ ଖୁବ ଆନ୍ତରିକ । ତେଣୁ କୃଷି, କୃଷକ, ଖାଦ୍ୟ ସୁରକ୍ଷା ପ୍ରତି ସଚେତନ, ଆଗାମୀ ବଂଶଧରର ସ୍ୱାସ୍ଥ୍ୟ ପ୍ରତି ସଚେତନ, ମାଟିର ଉର୍ବରତା

ଓ କୃଷକର ସ୍ୱାଧୀନତା ପ୍ରତି ସଚେତନ ପ୍ରତ୍ୟେକ ସମ୍ବେଦନଶୀଳ ପାଠକ ଏହି ପ୍ରବନ୍ଧ ମାନଙ୍କରୁ କେବଳ ଦୃଶ୍ୟମାନ ପରିସ୍ଥିତିର ପ୍ରତିକୂଳ ପ୍ରଭାବର ଗମ୍ଭୀରତା ବିଷୟରେ ଅବଗତ ହେବ ନାହିଁ, ସେ ମଧ୍ୟ ପାଇବ ଏହି ପ୍ରତିକୂଳ ସ୍ଥିତିରୁ ମୁକ୍ତି ପାଇବାର ପ୍ରସ୍ତାବିତ ଉପାୟ। ଖେତରେ ନିରନ୍ତର କୃଷି ବା ଦେଶୀଚାଷ ଓ ରାସ୍ତାରେ ସରକାର, କମ୍ପାନୀ ମାନଙ୍କର କୃଷି ଓ କୃଷକମାରଣ ନୀତିକୁ ବେସାଲିସ ବିରୋଧ ହେଉଛି ମୁକ୍ତିର ବାଟ- ଏହାହିଁ ହେଉଛି ମୁଖ୍ୟ ପ୍ରସ୍ତାବ। ତା ନ ହେଲେ ନଟବରବାବୁ କାହିଁକି ଲେଖନ୍ତେ, "ସର୍ବୋପରି ଚାଷୀମାନେ ନିଜର ଆର୍ଥିକ ଅଭିବୃଦ୍ଧି କରିବାକୁ ଚାହାନ୍ତି ନିଜ ନିଜ ଭିତରେ ଥିବା ଭେଦଭାବ ଭୁଲି ରାଜରାସ୍ତାକୁ ଓହ୍ଲାନ୍ତୁ। ସରକାରଙ୍କଠାରୁ ଚାଷୀ ତା'ର ନ୍ୟାଯ୍ୟ ଦାବୀ ଛଡାଇ ନେବା, ଚାଷଜମି କମ୍ପାନୀକୁ ଦେବା ବିରୋଧ କରିବା, କୃଷିଜାତ ଦ୍ରବ୍ୟର ଉଚିତ ମୂଲ୍ୟ ହାସଲ କରିବା, ସରକାରଙ୍କ କୃଷି ନୀତିରେ ଗଠନ ମୂଳକ ପରିବର୍ତ୍ତନ କରି ନିରନ୍ତର କୃଷିର ପୁନଃ ପ୍ରବର୍ତ୍ତନ କରିପାରିଲେ ହିଁ ଚାଷୀ ମୁହଁରେ ହସ 'ଫୁଟିବ ।" (ଚାଷୀର ଆତ୍ମହତ୍ୟା-ନିଦାନ, ନିରାକରଣ ଓ ନିୟନ୍ତ୍ରଣ)।

କହିବା ବାହୁଲ୍ୟ ଯେ ଏହି ପ୍ରବନ୍ଧ ସଙ୍କଳନରେ କୃଷି ଓ କୃଷକ ସମ୍ପର୍କରେ ଏକ ଭିନ୍ନ ଦୃଷ୍ଟିକୋଣ ବା ପରସ୍ପେକ୍ଟିଭର ଆଭାସ ମିଳେ ଯାହା ଏଯାବତ୍ ଉପଲବ୍ଧ କୃଷି-କୃଷକ ସମ୍ପର୍କିତ ସାହିତ୍ୟକୁ ଏକ ନବୀନ ଅବଦାନ ବୋଲି କୁହାଯାଇ ପାରିବ ଓ ଏହା ଗବେଷକଙ୍କଠାରୁ ଆରମ୍ଭ କରି ସାମାଜିକ କର୍ମୀ ସମସ୍ତଙ୍କ ପାଇଁ ନିଶ୍ଚିତ ଚକ୍ଷୁ ଉନ୍ମେଷକାରୀ ହେବ।



# ଅଗ୍ରଲେଖ

'ଆଉକେତେ ବିଷ ପିଇଲେ ଚେତିବା !' ଓଡ଼ିଆ ଭାଷାରେ କୃଷି ବିଜ୍ଞାନକୁ ଏକ ଅନନ୍ୟ ଅବଦାନ। କୃଷି, କୃଷକ ଓ କୃଷିକ୍ଷେତ୍ର ଆଗରେ ଆସିଥିବା ଆହ୍ୱାନ ଗୁଡ଼ିକର ବିଶ୍ଳେଷଣ କରି ନିଦାନ ରଖିଛନ୍ତି ବିଶିଷ୍ଟ ଗ୍ରନ୍ଥକାର, ଜୈବ କୃଷି ବିଜ୍ଞାନୀ ଶ୍ରୀଯୁକ୍ତ ନଟବର ଷଡ଼ଙ୍ଗୀ। ଓଡ଼ିଶା ତଥା ସମଗ୍ର ଭାରତ ବର୍ଷରେ ଗତ ଦୁଇ ଦଶନ୍ଧି ଧରି କୃଷି ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ହ୍ରାସ ପାଇବା, କୃଷି ଉପକରଣର ବଜାର ଦରବୃଦ୍ଧି ହେବା, କୃଷିଜାତ ଦ୍ରବ୍ୟର ବିକ୍ରିବଟା ନିମନ୍ତେ ବ୍ୟବସ୍ଥିତ ବଜାର ନ ମିଳିବା, କୃଷିଜାତ ଦ୍ରବ୍ୟର ଉପଯୁକ୍ତ ମୂଲ୍ୟ ନ ମିଳିବା, ବଢ଼ି, ମରୁଡ଼ି, ବାତ୍ୟା ଓ ଅଦିନିଆ ବର୍ଷାରେ ଫସଲ ଉଜୁଡ଼ି ଯିବା, ସରକାରୀ ସ୍ତରରେ କୃଷିରେ ପୁଞ୍ଜି ବିନିଯୋଗ ହ୍ରାସ ପାଇବା ଯୋଗୁଁ କୃଷକର ଅବସ୍ଥା ଆଜି ଶୋଚନୀୟ ହୋଇ ପଡ଼ିଛି । ରାଜ୍ୟର ୮୦ ଭାଗ କୃଷକ ଯେଉଁମାନେ କି କ୍ଷୁଦ୍ର ଓ ନାମ ମାତ୍ର ଚାଷୀ, ଭାଗ ଚାଷୀ, ଭୂମିହୀନ କୃଷି ଶ୍ରମିକ, କୃଷିକୁ ଜୀବିକା ଭାବରେ ଗ୍ରହଣ କରିଥିବା ପରିବାର ଗୃହଖର୍ଚ୍ଚ ସହିତ ବର୍ଦ୍ଧିତ ଚାଷ କାର୍ଯ୍ୟରେ ଖର୍ଚ୍ଚ ତୁଲାଇବାରେ ଅସମର୍ଥ ହୋଇ ସାହୁକାରଠାରୁ ଋଣ କରୁଛନ୍ତି। ଚାଷ ନିମନ୍ତେ ଋଣଭାରରେ ବୁଡ଼ି ରହି ଯେକୌଣସି କାରଣରୁ ଫସଲହାନୀ ହେଲେ କୃଷକ ମାନସିକ ଭାରସାମ୍ୟ ହରାଇ ଆତ୍ମହତ୍ୟାର ପଥ ବାଛି ନେଉଛି । ବିଗତ ଏକ ଦଶନ୍ଧି ଧରି ଚାଷୀ ଆତ୍ମହତ୍ୟା ବୃଦ୍ଧି ହେବାରେ ଲାଗିଛି । ଓଡ଼ିଶା ସରକାର ମାନନ୍ତୁ ବା ନମାନନ୍ତୁ କିନ୍ତୁ ଚାଷୀ ଆତ୍ମହତ୍ୟା ମନୁଷ୍ୟକୃତ। ଏହା ସରକାରଙ୍କ କୃଷିପ୍ରତି ଅବହେଳାର ନଗ୍ନ ଉଦାହରଣ ।

୧୯୬୦ ଦଶକର ପ୍ରଥମ ସବୁଜ ବିପ୍ଳବ ନାମରେ ଉଚ୍ଚ ଅମଳକ୍ଷମ ହାଇବ୍ରିଡ଼ ବିହନ, ରାସାୟନିକସାର ଜଳସେଚନ ଓ କୀଟନାଶକ ଔଷଧ ବ୍ୟବହାର କରି କୃଷକ ସର୍ବଶ୍ୱାନ୍ତ ହୋଇ ସାରିଲାଣି। ପଞ୍ଜାବ, ହରିଆନା, ଆନ୍ଧ୍ର ପ୍ରଦେଶ, କର୍ଣ୍ଣାଟକରେ ଋଣଗ୍ରସ୍ତ କୃଷକ ବ୍ୟାପକ ଭାବରେ ଆତ୍ମହତ୍ୟା କରିଛନ୍ତି। ସେତେବେଳେ ଓଡ଼ିଶା ସମେତ ବିହାର,

■ *ଆଉ କେତେ ବିଷ ପିଇଲେ ଚେତିବା... !*

ଆସାମ, ପଶ୍ଚିମବଙ୍ଗ ପରି ରାଜ୍ୟମାନେ ସବୁଜ ବିପ୍ଳବରୁ ଦୂରରେ ଥିଲେ। ଭାରତ ସରକାର ପ୍ରଥମ ସବୁଜ ବିପ୍ଳବର ଫଳାଫଳକୁ ପରିକ୍ଷା ନିରୀକ୍ଷା ନକରି ପୂର୍ବ ଭାରତର ରାଜ୍ୟ ଓଡ଼ିଶା, ଆସାମ, ପଶ୍ଚିମବଙ୍ଗ ଓ ପୂର୍ବ ଉତ୍ତର ପ୍ରଦେଶରେ ଦ୍ୱିତୀୟ ସବୁଜ ବିପ୍ଳବର ପର୍ବ ଆରମ୍ଭ କରିସାରିଛନ୍ତି। ଉନ୍ନତ ଅମଳକ୍ଷମ ବିହନ, ରାସାୟନିକ ସାର ଓ କୀଟନାଶକ ଔଷଧ ସହିତ ଏଥର ଦ୍ୱିତୀୟ ସବୁଜ ବିପ୍ଳବରେ ଗୁଣସୂତ୍ର ପରିବର୍ତ୍ତିତ ବିହନ, (ଜିଏମ୍) ଜୈବ ପ୍ରଯୁକ୍ତି ବିଦ୍ୟା ପ୍ରସ୍ତୁତ (ବିଟି) ବିହନ ଉପରେ ଗୁରୁତ୍ୱ ଆରୋପ କରାଯାଉଛି। ଏହା ସମଗ୍ର ପୂର୍ବ ଭାରତରେ ବିଟି ଧାନ, ବିଟି ଗହମ, ବିଟି କପା, ବିଟି ବାଇଗଣ, ବିଟି ପନିପରିବା ଚାଷକୁ ବ୍ୟାପକ କରିବ। ପ୍ରଥମ ସବୁଜ ବିପ୍ଳବ ପରେ ଦକ୍ଷିଣ ପଶ୍ଚିମ ରାଜ୍ୟଗୁଡ଼ିକରେ ଯେଉଁ ଅବସ୍ଥା ଉପୁଜିଥିଲା ପୂର୍ବ ଭାରତରେ ଦ୍ୱିତୀୟ ସବୁଜ ବିପ୍ଳବରେ ସେହି ଅବସ୍ଥାରେ ପୁନଃରାବୃତ୍ତି ଘଟିବାକୁ ଯାଉଛି।

ସରକାର ଅର୍ଥନୈତିକ ସଂସ୍କାର ପରବର୍ତ୍ତୀ ଭାରତରେ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱ ବାଣିଜ୍ୟ ଅନୁଷ୍ଠାନ ମାନଙ୍କ ପ୍ରରୋଚନାରେ ପଡ଼ି ଦେଶରେ କୃଷି ଅବସ୍ଥାକୁ ବଜାର ଅଭିମୁଖୀ ଓ ପ୍ରତିଯୋଗୀତା ମୂଳକ କରି ବିଶ୍ୱ ଅର୍ଥ ବ୍ୟବସ୍ଥା ସହିତ ଅନୁବନ୍ଧିତ କଲେ। ଫଳରେ ପୂର୍ବରୁ କୃଷକ କଲ୍ୟାଣ ନିମନ୍ତେ ଖର୍ଚ୍ଚ କରାଯାଉଥିବା ଅର୍ଥ କାଟ କରିଚାଲିଛନ୍ତି। ଉନ୍ନତ ବିଜ୍ଞାନ, ସାର, ଓ କୀଟନାଶକ ଔଷଧ ଯୋଗଣରେ ଯେଉଁ ରିହାତି ଦିଆଯାଉଥିଲା ତାକୁ କାଟ କରିଛନ୍ତି । ଖାଦ୍ୟ ଶସ୍ୟ ଉତ୍ପାଦନ ବଦଳରେ ଆଖୁ, ଚିନାବାଦାମ, ସୋୟାବିନ, କପା, ଧୂଆଁପତ୍ର, ଚା, କଫି, ଫୁଲ ଫଳ ଆଦି ଅର୍ଥକାରୀ ଫସଲ ଚାଷ କରିବା ନିମନ୍ତେ ପ୍ରରୋଚିତ କରିଛନ୍ତି। କିନ୍ତୁ ଉକ୍ତ ଫସଲ ଗୁଡ଼ିକ ଅଧିକ ଜଳ, ରାସାୟନିକ ସାର, କୀଟନାଶକ ଔଷଧ, ଆବଶ୍ୟକ କରନ୍ତି । ଅଧିକ ଲାଭର ବଶବର୍ତ୍ତୀ ହୋଇ କୃଷକ ଅଣ ଅନୁଷ୍ଠାନିକ ଉତ୍ସମାନଙ୍କରୁ ଋଣ ସଂଗ୍ରହ କରି ବ୍ୟୟବହୁଳ ଚାଷକାର୍ଯ୍ୟ ଚଳାଏ । କିନ୍ତୁ କୌଣସି କାରଣ ବଶତଃ ଫସଲ ନଷ୍ଟ ହେଲେ ହତୋତ୍ସାହ ହୋଇ ଆତ୍ମହତ୍ୟା କରେ । ପୂର୍ବରୁ ବନ୍ୟା ବାତ୍ୟା ଅଦିନିଆ ବର୍ଷା ବଢ଼ି ମରୁଡ଼ି ସବୁ କିଛି ଥିଲା କିନ୍ତୁ କୃଷକ ଆତ୍ମହତ୍ୟା ନଥିଲା । କାରଣ କୃଷକର ଫସଲର ବିବିଧତା ଥିଲା । ଗୋଟିଏ ପସଲ ନହେଲେ ଅନ୍ୟ ଫସଲ ଉପରେ ସେ ନିର୍ଭର କରି ଚଳିଯାଉଥିଲା। ଆଜିକାଲି ପରି କୃଷି ଏତେ ବ୍ୟୟ ବହୁଳ ନଥିଲା। କୃଷିକାର୍ଯ୍ୟ ନିମନ୍ତେ ତାକୁ ବଜାର ଉପରେ ନିର୍ଭର କରିବାକୁ ପଡୁନଥିଲା । କୃଷି ସଂପୂର୍ଣ୍ଣ ଭାବରେ କୃଷକର ନିୟନ୍ତ୍ରଣରେ ଥିଲା । କିନ୍ତୁ ଆଜି କୃଷକ କୃଷି ଉପରୁ ନିଜର ନିୟନ୍ତ୍ରଣ ହରାଉଛି । ତା ପାଖରେ ହଳ

ବଳଦ ନାହିଁ ଚାଷ କରିବା ନିମନ୍ତେ ସେ ଟ୍ରାକ୍ଟର ଉପରେ ନିର୍ଭର କରିବ ଓ ଏହା ମହିନ୍ଦ୍ରା ଏଣ୍ଡ ମହିନ୍ଦ୍ରା କିମ୍ୱା ସେହିପରି ଅନ୍ୟ ଏକ କମ୍ପାନୀ ଯୋଗାଇବ। ବେଙ୍ଗଲା ପକାଇ ଧାନ ମଳିବାକୁ ତା ପାଖରେ ବଳଦ ନାହିଁ। ଚାଷୀ ପାଖରେ ବିହନ ନାହିଁ, ବିହନ ନିମନ୍ତେ ସେ ନିର୍ଭର କରିବ ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ଡ଼ୋ, ବେୟର କପ୍ ସାଇନସ୍ ପରି ବହୁଦେଶୀୟର କମ୍ପାନୀମାନଙ୍କ ଉପରେ। ଜମିରୁ ଭଲ ଫସଲ ପାଇବା ନିମନ୍ତେ ଆବଶ୍ୟକ ହେଉଥିବା ସାର ତା ପାଖରେ ନାହିଁ। ଏଥି ନିମନ୍ତେ ସେ ଯିବ ରାସାୟନୀକ ସାର ଯୋଗାଣକାରୀ ମନ୍‌ସାଣ୍ଟୋ, ନୋଭାଟିସ୍, ଡ଼ୋନିକା, ଡୁପଣ୍ଡ, ବେୟର ପାଖକୁ । ଫସଲରେ କୀଟନନାଶକ ଔଷଧ ନିମନ୍ତେ ସେ ମନ୍‌ସାଣ୍ଟୋ, ଆଭେଣ୍ଟିସ୍, ନୋଭାଟିସ, ଡ଼ୋନିକା ଆଗ୍ରୋ, ଡ଼ୋ ଆଗ୍ରୋପରି ବହୁଦେଶୀୟ କମ୍ପାନୀ ଓ ସେମାନଙ୍କର ଦଲାଲ ଭାରତୀୟ କମ୍ପାନୀମାନଙ୍କ ଦ୍ୱାରସ୍ତ ହେବ। ଚାଷ ନିମନ୍ତେ ତା ପାଖରେ ଅର୍ଥ ନାହିଁ । ନଟବର ଷଡ଼ଙ୍ଗୀ କୁହନ୍ତି ସମବାୟତ ଲୁଟେରାଙ୍କ କବ୍‌ଜାରେ। ବ୍ୟାଙ୍କ ଏକ 'ପବିତ୍ର ମନ୍ଦିର' ଯେଉଁଠିକି କି ଗରିବ କୃଷକର ପ୍ରବେଶ ନିଶେଧ । ତେଣୁ ଅର୍ଥ ନିମନ୍ତେ କୃଷକ ଯିବ ସାର ବ୍ୟବସାୟୀ, ଧାନ ବ୍ୟବସାୟୀ, ଦୋକାନୀ ପାଖକୁ, ଗ୍ରାମ୍ୟ ସାହୁକାର ପାଖକୁ କିମ୍ୱା ବିଦେଶୀ ଅର୍ଥରେ ଚାଲୁଥିବା ମାଇକ୍ରୋ ଫାଇନାନ୍ସ କମ୍ପାନୀ ଓ ସେମାନଙ୍କ ଦଲାଲ ଗ୍ରାମ୍ୟ ଏସ.ଏସ.ଜି ମାନଙ୍କ ପାଖକୁ । ଏହାହେଲା ପ୍ରଥମ ସବୁଜ ବିପ୍ଳବର ଅନୁଭୂତି। ଭାରତ ତଥା ଓଡ଼ିଶାର ଏହା ଫଳରେ ହଜାର ହଜାର ବର୍ଷର କୃଷି ସଂସ୍କୃତି ନଷ୍ଟ ହୋଇଗଲା। ନଷ୍ଟ ହୋଇଗଲା କୃଷି ଉପରେ ପିଢ଼ି ପରେ ପିଢ଼ିର ଥିବା ଆଞ୍ଚଳିକ ଜ୍ଞାନ କୌଶଳ । ନଷ୍ଟ ହୋଇଗଲା ଫସଲ ବିବିଧତା, ଫସଲ ପର୍ଯ୍ୟାୟ। ଆତ୍ମ ନିର୍ଭରଶୀଳ କୃଷକ ପରାଶ୍ରିତ ହେଲା । ଏପରି ସ୍ଥଳେ କୃଷକ ମୃତ୍ତିକାର ଗୁଣବତ୍ତାର ସୁରକ୍ଷା କରିପାରିବ କି ? ପାରମ୍ପାରିକ ବିହନର ପୁନଃରୁଦ୍ଧାର ହୋଇ ପାରିବ କି ? କୃଷକ ଆତ୍ମ ନିର୍ଭରଶୀଳ ହୋଇ ପାରିବ କି ? କୃଷକ ଋଣ ମୁକ୍ତି ହୋଇ ପାରିବ କି ? ରାଜ୍ୟର କୃଷି ନୀତିରେ ଏସବୁ ପ୍ରଶ୍ନର ଉତ୍ତର ଖୋଜିଲେ ହତାଶ ହେବାକୁ ପଡ଼ିବ। କାରଣ ବର୍ତ୍ତମାନର ଶାସକ ଶ୍ରେଣୀ ସେ ଯେକୌଣସି ଦଳର ହୁଅନ୍ତୁ ନା କାହିଁକି ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ ନାମରେ ବିଶ୍ୱ ବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂଗଠନ ଇଙ୍ଗିତରେ କୃଷି ନୀତିକୁ ପରିଚାଳିତ କରୁଛନ୍ତି। ସାମ୍ରାଜ୍ୟବାଦୀ ଆମେରିକା, ବିଶ୍ୱବ୍ୟାଙ୍କ, ବହୁଦେଶୀୟ ସଂସ୍ଥା ଓ ସରକାରମାନେ କୃଷକଠାରୁ ଉଦ୍‌ବୃତ୍ତ ସଂଗ୍ରହ କରିବା ନିମନ୍ତେ ନୂଆ ନୂଆ ରଣକୌଶଳ ସ୍ଥିର କରିଛନ୍ତି। ପୂର୍ବ ଭାରତରେ ଦ୍ୱିତୀୟ ସବୁଜ ବିପ୍ଳବ ଏହି ରଣକୌଶଳର ଏକ ଅଂଶ ବିଶେଷ। ସାମ୍ରାଜ୍ୟବାଦୀ

■ *ଆଉ କେତେ ବିଷ ପିଇଲେ ଚେତିବା... !*

ଦେଶମାନଙ୍କର ବହୁଦେଶୀୟ କମ୍ପାନୀ ଓ ଭାରତର ଦଲାଲ ପୁଞ୍ଜିପତି, ବ୍ୟବସାୟୀ, ସାମନ୍ତ ଶ୍ରେଣୀ, ଭ୍ରଷ୍ଟ ରାଜନେତା, ବୈଜ୍ଞାନିକ ଓ ଅମଲାତନ୍ତ୍ରକୁ ହତିଆର କରି ଗଣ ବଜାର, ରାସାୟନୀକ ସାର ବଜାର, ବିହନ ବଜାର, ଜମି ବଜାର, କୃଷି ଯନ୍ତ୍ରପାତି ବଜାର ଖୋଲି ରାଜ୍ୟ କୃଷକର ଯାହା କିଛି ଉଦ୍‌ବୃତ୍ତ ନିଜ ନିଜ ମଧ୍ୟରେ ବାଣ୍ଟି ନେଉଛନ୍ତି । କୃଷି କ୍ଷେତ୍ରରେ ପୁନଃ ବିନିଯୋଗ କରିବା ନିମନ୍ତେ ଆଉକିଛି ଉଦବୃତ୍ତ ରହୁନାହିଁ । ତେଣୁ କୃଷକ ବାଧହୋଇ ଚାଷ କାର୍ଯ୍ୟ ଛାଡ଼ି ଦେଉଛି । ଦାଦନ ଶ୍ରମିକ ଭାବରେ ପୁଣି ପୁଞ୍ଜିପତି ପାଖରେ ବନ୍ଧା ପଡୁଛି । ଅନ୍ୟ ଭାଷାରେ କହିଲେ ଏହାହିଁ ସାମ୍ରାଜ୍ୟବାଦୀ ମାନଙ୍କର ଅର୍ଥ ନୈତିକ ଶୋଷଣ ଓ ଲୁଣ୍ଠନ । ଏହି ପ୍ରକ୍ରିୟାରେ ସେମାନେ ଭାରତର କୃଷି ଅର୍ଥନୀତିରୁ ମୁନାଫା ଓ ଉଦବୃତ୍ତ ସଂଗ୍ରହ କରିବାରେ ଲାଗିଛନ୍ତି ।

ଉପରୋକ୍ତ ପ୍ରେରିପ୍ରେକ୍ଷୀରେ "ଆଉ କେତେ ବିଷ ପିଇଲେ ଚେତିବା !" ପୁସ୍ତକଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ପୁସ୍ତକର ପ୍ରତ୍ୟେକଟି ଲେଖାରେ ଶ୍ରୀଯୁକ୍ତ ଷଡ଼ଙ୍ଗୀ ମହାଶୟ ଆଗାମୀ ଦିନରେ ରାଜ୍ୟରେ କୃଷି କ୍ଷେତ୍ର ଓ କୃଷକ ଉପରେ ମାଡ଼ି ଆସୁଥିବା ଦୁର୍ଦ୍ଦିନ ବିଷୟରେ ଆଗାମୀ ପୀଢ଼ିର ବଂଶଧର ମାନଙ୍କୁ ସଚେତନ କରାଇ ଦେଇଛନ୍ତି । ରାସାୟନିକ କୃଷି ପ୍ରଣାଳୀରୁ ଋଷି କୂଳକୁ ରକ୍ଷା କରିବା ନିମନ୍ତେ ନିରାକରଣର ରାସ୍ତା ଦେଖାଇଛନ୍ତି । ସେ ଅତି ସ୍ୱଷ୍ଟ ଭାଷାରେ ମୃତ୍ତିକାର ଗୁଣାବତ୍ତାର ସୁରକ୍ଷା, ପାରମ୍ପରିକ ବିହିନ, ଜୈବିକ ସାର ଓ କିଟନାଶକର ପ୍ରୟୋଗ, ଦେଶୀ ଚାଷ ପ୍ରବର୍ତ୍ତନ ହିଁ ଋଷୀ ଓ ଚାଷର ସୁରକ୍ଷା କବଚ ବୋଲି ଘୋଷଣା କରିଛନ୍ତି । ଦେଶୀ ଗାଈ, ଦେଶୀ ବଳଦ, ଦେଶୀ ବିହନ, ଦେଶୀ କୀଟନାଶକ ଔଷଧର ବ୍ୟାପକ ବ୍ୟବହାର ଆଜି ଋଷୀକୁ ଆସନ୍ନ ବିପତ୍ତିରୁ ରକ୍ଷା କରିପାରିବ । ସେ ସାମ୍ରାଜ୍ୟବାଦୀ ଶକ୍ତିଙ୍କ ଚକ୍ରାନ୍ତର ଶିକାର ହେବ ନାହିଁ ଓ ସମ୍ମାନର ସହିତ ଆତ୍ମ ନିର୍ଭରଶୀଳ ହୋଇ ଋଷକାର୍ଯ୍ୟ ଚଳାଇ ରଖିପାରିବ । କିନ୍ତୁ ଏସବୁ ଆପେ ଆପେ ହୋଇଯିବ ନାହିଁ । ଏଥି ନିମନ୍ତେ କୃଷି ନୀତିରେ ପ୍ରୋତ୍ସାହନ ରହିବା ଦରକାର । କିନ୍ତୁ ବହୁଦେଶୀୟ କମ୍ପାନୀ ଓ ସାମ୍ରାଜ୍ୟବାଦୀ ଦେଶମାନଙ୍କର କ୍ରିଡ଼ନକ ସାଜିଥିବାରୁ ଭାରତ ତଥା ଓଡ଼ିଶା ସରକାରଙ୍କଠାରୁ ଦେଶୀ ଋଷ ନିମନ୍ତେ ପ୍ରୋତ୍ସାହନ ବା ରିହାତି ମିଳିବା କଷ୍ଟକର । ନଟବର ଷଡ଼ଙ୍ଗୀ କହନ୍ତି "ଏ ବାହାପିଆ, ବେପରୁଆ ସରକାରକୁ ବାଟକୁ ଆଣିବାକୁ ହେଲେ ସଙ୍ଗଠିତ ହେବା ହିଁ ପ୍ରଥମ କାମ" । କୃଷକ ମାନଙ୍କୁ ଦେଶୀ ଋଷ ସପକ୍ଷରେ ସରକାରୀ ନୀତି ଅନୁକୂଳ କରିବା ନିମନ୍ତେ ନିରନ୍ତର ଦୁର୍ବାର ରଣସଂଗ୍ରାମ ଗଢ଼ି ତୋଳିବାକୁ ହେବ । ସରକାରଙ୍କୁ କମ୍ପାନୀ ମୁଖି ନହୋଇ କୃଷକ ମୁଖି ହେବାକୁ ବାଧ କରାଯିବ । ଜଳ

ସେଚନକୁ ବ୍ୟାପକ କରିବା, ଅନାବଦୀ ଜମିକୁ ଆବାଦ କରିବା, ଶୁଷ୍କାଞ୍ଚଳ ଚାଷ ପ୍ରଣାଳୀର ଉନ୍ନତି କରିବା, ଭୂସଂସ୍କାରକୁ ସଂପୂର୍ଣ୍ଣକରି କୃଷିରେ ଢ଼ାଞ୍ଚାଗତ ପରିବର୍ତ୍ତନ ଆଣିବା, କୃଷିଜାତ ଦ୍ରବ୍ୟର ବାଣିଜ୍ୟ ବ୍ୟବସାୟକୁ ସରକାରଙ୍କ ଏକ ଛଟିଆ ଅଧିକାର ସାବ୍ୟସ୍ତ କରିବା, କୃଷି ଉତ୍ପାଦିତ ଦ୍ରବ୍ୟର ଉପଯୁକ୍ତ ଦାମ ଦେବା ଆଦି ଦାବୀଗୁଡ଼ିକ ସରକାରଙ୍କଠାରୁ ଆଦାୟ କରିବାକୁ ହେବ। ଅନ୍ୟଥା କୃଷକମାନେ ସଂଗଠିତ ହୋଇ ରାଜନୈତିକ କ୍ଷମତା ଦଖଲ କରି କୃଷକ ଅନୁକୂଳ ସରକାର ଗଠନ କରିପାରିବେ। ଏହା ହିଁ ଆଜିର ଆହ୍ୱାନ। "ଆଉ କେତେ ବିଷ ପିଇଲେ ଚେତିବା!" ପୁସ୍ତକ ହିଁ ଏହି ଆହ୍ୱାନର ସଠିକ ଉତ୍ତର କହିଲେ ଅତ୍ୟୁକ୍ତି ହେବନାହିଁ। ପୁସ୍ତକର ପ୍ରତିଟି ପୃଷ୍ଠାରେ ଦେଶୀ ବିହନ, ଦେଶୀ ସାର, ଦେଶୀ କୀଟନାଶକ, ଦେଶୀ ଗାଈ, ସର୍ବୋପରି ଦେଶୀ ଚାଷ ପ୍ରଣାଳୀକୁ ନେଇ ଅକାଟ୍ୟ ଯୁକ୍ତି ସବୁ ଉପସ୍ଥାପିତ ହୋଇଥିବା ସହିତ ରାସାୟନିକ ସାର ଓ ଗୁଣସୂତ୍ର ପରିବର୍ତ୍ତିତ ବିହନର କ୍ଷତିକାରକ ଦିଗପ୍ରତି ସତର୍କ କରି ଦିଆଯାଇଛି।

ଯେଉଁ ସଚେତନ ନାଗରିକ ତଥା ବୁଦ୍ଧିଜୀବୀ, କୃଷକ, କୃଷି ବିଜ୍ଞାନୀ ଏକ ବିଷମୁକ୍ତ ଖାଦ୍ୟ ଥାଳି, ଋଣମୁକ୍ତ କୃଷକ ସମାଜ ଏବଂ ଏକ ଆତ୍ମ ନିର୍ଭରଶୀଳ କୃଷି ପ୍ରଣାଳୀ ଉପରେ ବିଶ୍ୱାସ ରଖନ୍ତି, ସେମାନେ ନିଶ୍ଚିତ ଭାବରେ ଏ ପୁସ୍ତକରୁ ବହୁ ମୂଲ୍ୟବାନ ତଥ୍ୟ ପାଇପାରିବେ। ଯେଉଁମାନେ ଭାରତର ବିଭିନ୍ନ କୋଣ ଅନୁକୋଣରେ ଜୈବ କୃଷିର ପ୍ରଚାର ପ୍ରସାରରେ ନିଜକୁ ସମର୍ପଣ କରିଛନ୍ତି, ସ୍ଥାନୀୟ ଜ୍ଞାନ କୌଶଳ କୃଷିରେ ପ୍ରୟୋଗ କରୁଛନ୍ତି ସେମାନଙ୍କ ନିମନ୍ତେ ଉକ୍ତ ପୁସ୍ତକ ପ୍ରେରଣାଦାୟୀ ଭାବରେ କାମ କରିବ ଏଥିରେ ସନ୍ଦେହ ନାହିଁ। ଏହି ସାଧୁ ଉଦ୍ୟମ ନିମନ୍ତେ ସମସ୍ତ ପାଠକ ପାଠିକା ଓ ତାଙ୍କର ଗୁଣଗ୍ରାହୀ ମାନଙ୍କ ତରଫରୁ ଶ୍ରୀଯୁକ୍ତ ନଟବର ଷଡ଼ଙ୍ଗୀଙ୍କୁ ବିନମ୍ର କୃତଜ୍ଞତା ଜ୍ଞାପନ କରୁଛି। ତାଙ୍କର ଲେଖନୀ ଆମ୍ଭମାନଙ୍କୁ ଉଦ୍‌ବୁଦ୍ଧ କରୁ।

**ଡ଼ଃ ଗୋଲକ ବିହାରୀ ନାଥ**



# ନିଜ କଥା

'ଆଉ କେତେ ବିଷ ପିଇଲେ ଚେତିବା !' ଓ ଅନ୍ୟାନ୍ୟ ପ୍ରବନ୍ଧ ଗୁଡ଼ିକ ପାକ୍ଷିକ ପତ୍ରିକା 'ସମଦୃଷ୍ଟି'ରେ ବିଭିନ୍ନ ସମୟରେ ପ୍ରକାଶ ପାଇଛି । ଦେଶୀ ଅର୍ଥନୀତି, ରାସାୟନିକ କୃଷିର ଭୟାଭୟତା, ଦେଶୀ ଚାଷ, କୃଷି ଓ କୃଷକର ଭଲମନ୍ଦ, କୃଷିର ରାଜନୈତିକ ଅର୍ଥନୀତିକୁ ଆଧାରକରି ଲେଖାଗୁଡ଼ିକ ତିଆରି କରାଯାଇଛି । 'ସମଦୃଷ୍ଟି'ର ପାଠକମାନଙ୍କ ମଧ୍ୟରୁ ଅନେକ ଏହି ଲେଖାଗୁଡ଼ିକ ପଢ଼ିବାକୁ ଭଲ ପାଆନ୍ତି ଓ ଅନେକେବି ମତାମତ ଦିଅନ୍ତି । ମୋ ସହିତ ଫୋନରେ ଲେଖାର ଭୂଲ ଠିକ୍ ସମ୍ପର୍କରେ ବେଳେବେଳେ କଥା ହୁଅନ୍ତି । ଅଧିକ ଲେଖିବାକୁ ପ୍ରେରଣା ମଧ୍ୟ ଦିଅନ୍ତି । ସେମାନଙ୍କ ନିକଟରେ ମୁଁ ଋଣୀ । କେତେକ ପାଠକ ମଧ୍ୟ ଆଗୁଆ ଚାଷୀ । କୃଷି ସଙ୍ଗଠନର ସାଥି ଓ କେତେଜଣ ବୁଦ୍ଧିଜୀବୀ ପ୍ରସ୍ତାବ ଦିଅନ୍ତି ଲେଖାଗୁଡ଼ିକ ଖଣ୍ଡିଏ ଖଣ୍ଡିଏ ବହି ଭାବରେ ପ୍ରକାଶ କଲେ ପାଠକମାନେ ଆମ ଦେଶ ବା ରାଜ୍ୟର କୃଷି ଓ କୃଷକ ସମସ୍ୟା ସହିତ ଅଧିକ ପରିଚିତ ହୋଇପାରନ୍ତେ । 'ସମଦୃଷ୍ଟି'ର ସମ୍ପାଦକଙ୍କ ଉଦ୍ୟମ ଓ ସମଦୃଷ୍ଟି ପରିବାରର ସହଯୋଗ ଯୋଗୁ ହିଁ ଏହି ବହିଖଣ୍ଡିକ ଛପା ଯାଇପାରିଛି । ମୋ ଝିଅ ତୁଲ୍ୟ ସ୍ୱୟଂପ୍ରଭା ବହିଟିକୁ ପ୍ରସ୍ତୁତ କରିବାରେ ଅନେକ ଦିନ ହେଲା କାମ କରିଆସିଛି । ଏମାନେ ସମସ୍ତେ ସାମାଜିକ ପରିବର୍ତ୍ତନ ପାଇଁ ସାହିତ୍ୟ ମାଧ୍ୟମରେ ଯେଉଁ ନିରନ୍ତର ପ୍ରଚେଷ୍ଟା ଜାରି ରଖିଛନ୍ତି ଆଗକୁ ତାହା ସଫଳ ହେବ ବୋଲି ମୋର ହୃଦବୋଧ ହେଉଛି ।

ମୋର ଲେଖାଲେଖିରେ ଦଖଲ ନଥିଲା । ମୋର ବଡ଼ ପୁଅ ରାଜେନ୍ଦ୍ରର ପ୍ରେରଣାରେ ମୁଁ ଲେଖା ଆରମ୍ଭ କଲି । ରାଜେନ୍ଦ୍ର ଜଣେ ବିପ୍ଳବୀ ବୁଦ୍ଧିଜୀବୀ ଥିଲା । କଳିଙ୍ଗନଗର ବିସ୍ଥାପନ ବିରୋଧୀ ଆନ୍ଦୋଳନ ଓ କମ୍ପାନୀମାନଙ୍କ ଦୌରାତ୍ମ୍ୟରୁ ପ୍ରାକୃତିକ ସମ୍ପଦର ସୁରକ୍ଷାପାଇଁ ସେ ଅନ୍ୟମାନଙ୍କ ସହିତ ଏକାଧିକ ଜନ ଆନ୍ଦୋଳନରେ ସାମିଲଥିଲା । ସେ ସମୟର କଥା । ୨୦୦୦ ମସିହା ବେଳକୁ ରାଜୁ ଭୁବନେଶ୍ୱରରେ ମୋ ଝିଅ ଘରେ ଥାଏ । ୨୦୦୫ ବେଳକୁ 'ସମଦୃଷ୍ଟି'ର ଆତ୍ମପ୍ରକାଶ ପ୍ରକ୍ରିୟା ଆରମ୍ଭ ହେଲା । ରାଜୁ ଥିଲା

ସମଦୃଷ୍ଟିର ଆଉ ଏକ ସ୍ତମ୍ଭ। ପତ୍ରିକା ପାଇଁ ସେ ନିୟମିତ ଲେଖେ। ମୋତେ ଅନେକ ସମୟରେ ଫୋନ୍ କରେ "ନନା ତୁମେତ ଗାଁରେ ଅଛ, ଚାଷ ଓ ଚାଷୀ କଥା ପାଖରୁ ଦେଖୁଛ, ସେମାନଙ୍କର ସମସ୍ୟା କ'ଣ ଲେଖ।" ମୁଁ ଜଣେ ଶିକ୍ଷକ ଥିଲି । ୧୯୯୨ରେ ସରକାରୀ ଚାକିରିରୁ ମୁକୁଳି ଗାଁରେ ଚାଷବାସ କରୁଥିଲି। ମୁଁ ଜବାବରେ ତାକୁ କହେ, ରାଜୁ ! ମୋର ଜ୍ଞାନ ଗାରିମା କେତେଯେ ମୁଁ ଲେଖିବି। ସେ କହେ, "ନନା ମୋତେ ସେଗୁଡ଼ାକ ଶୁଣାଅ ନାହିଁ। ତୁମେ ପାରିବ, କଲମ କାଗଜ ଧର। ବିହନ କଥା ଲେଖି ପାରିବନି ? ମନସାଣ୍ଟୋ କମ୍ପାନୀର ଜି.ଏମ୍. ବିହନ କଥାତ ସଭା ସମିତିରେ କହୁଛ, ଲେଖିପାରିବନି କାହିଁକି ? ତୁମେ ଖାଲି ବସି ଆରମ୍ଭ କର। ତୁମ ଅଜାଣତରେ ବହୁକଥା ଲେଖିଯାଇଥିବ। ବର୍ତ୍ତମାନ ଆରମ୍ଭ କର।" ମାଷ୍ଟ୍ରେ ପିଲାଙ୍କୁ ତାଗିଦ କଲାପରି ରାଜୁ ମୋତେ ନ ଛାଡ଼େ । ତାରି କଥାରେ ମୁଁ ଲେଖିବା ଆରମ୍ଭ କଲି। ସେ ଆଉ ଆମ ପାଖରେ ନାହିଁ। ମାତ୍ର ସେ ତା'ବଦଳରେ ଆଉ ଗୋଟିଏ ପୁଅ ମୋର ଓ ତା' ମା'ର ଭଲମନ୍ଦ ବୁଝିବାକୁ ଦେଇଯାଇଛି। 'ସମଦୃଷ୍ଟି'ର ସମ୍ପାଦକ, ସାମାଜିକ ନ୍ୟାୟ ପ୍ରତିଷ୍ଠାପାଇଁ ନିରବଚ୍ଛିନ୍ନ ଭାବେ କାମ କରୁଥିବା 'ସୁଧୀର ପଟ୍ଟନାୟକ'। ସୁଧୀର ବି ଲେଖାପାଇଁ ମୋ ସାଥିରେ ସବୁବେଳେ ଲାଗିଥାଏ। ଏବେ ସୁଧୀରର ପ୍ରେରଣାରେ ମୁଁ କିଛି କିଛି ଲେଖୁଛି।

ଖୋର୍ଦ୍ଧା ଜିଲ୍ଲାର ନରିଶୋ ଗ୍ରାମରେ ମୁଁ ରହେ। ଭୁବନେଶ୍ୱର ଠାରୁ ଏହା ୪୦ କିମି ପୂର୍ବ ଦିଗକୁ ଅବସ୍ଥାପିତ। ମୋତେ ଏବେ ୮୨ ବର୍ଷ। ପାଠ ପଢ଼ିବା ଓ ସହରର ଚାକିରୀ ପାଇଁ ମୁଁ ୫/୬ ବର୍ଷ ପୁରୀ, କାମାକ୍ଷାନଗର ଓ ଭୁବନେଶ୍ୱର ସହରମାନଙ୍କରେ କଟାଇଛି। ବାକି ସବୁ ସମୟ ଗାଁରେ କଟିଛି। ଚାଷୀ ପରିବାରରେ ମୋର ଜନ୍ମ। ବାପା ଜଣେ ଭଲ ଚାଷୀ ଥିଲେ। ଆମେ ଦୁଇଭାଇ ଓ ତିନି ଭଉଣୀ ବାପାଙ୍କୁ ଚାଷରେ ସାହାଯ୍ୟ କରୁଥିଲୁ। ଚାଷ ବାବଦରେ କିଛି କାର୍ଯ୍ୟକାରି ଜ୍ଞାନଥିଲା। ୧୯୯୨ରେ ଅବସର ପରେ ଆମର ୪/୫ ଏକର ଜମିରେ ରାସାୟନିକ ସାର, କୀଟନାଶକ, ସରକାରୀ ବିହନ ଆଉ ଟ୍ରାକ୍ଟର ଲଗାଇ ଚାଷ ଆରମ୍ଭ କଲି। ସବୁଜ ବିପ୍ଳବ ଧାରାରେ ଚାଷ। ସମସ୍ତେ କରୁଛନ୍ତି, ମୁଁ ବି କଲି। ୩/୪ ବର୍ଷ ଚାଷପରେ ମୁଁ ଜାଣିପାରିଲି ରାସାୟନିକ କୃଷି ମାଟି, ପାଣି, ଉତ୍ପାଦିତ ଖାଦ୍ୟ ସବୁଥିରେ ବିଷ ଭର୍ତ୍ତି କରିଦେଇଛି। ଗେଣ୍ଡା, କଙ୍କଡ଼ା, ଚିଂଆ, ମରିଯାଉଛନ୍ତି। ସେତବେଳକୁ ମୁଁ ଜାପାନର କୃଷିବିତ୍ ମାସାନୋବୁ ଫୁକୁଓକାଙ୍କ 'One Straw Revolution' ଏବଂ 'Go Back To Nature' ପଢ଼ିଥାଏ। ରାସାୟନିକ କୃଷି ନିଶା ଛାଡ଼ି ମୁଁ ଦେଶୀଚାଷ ଧରିଲି। ୧୯୯୬ ମସିହାଠାରୁ ଆଜି ପର୍ଯ୍ୟନ୍ତ ମୁଁ ଦେଶୀ ଚାଷରେ ଅଛି।

ରାସାୟନିକ ସାର, କୀଟନାଶକ ବଦଳରେ ବାଡ଼ିଘର ଖତ, ଗୋବର ଖତ, ପଞ୍ଚଗୋବ୍ୟ, ହାଣ୍ଡିଖତ, ଗୋବର, ଧନିଚା, ଦେଶୀ ଗାଈର ମୂତ୍ର ଭଳି ଜୈବିକ ଖତ, ଲିମ୍ବ, କରଞ୍ଜ, ଗାଈ ମୂତ୍ରରୁ ତିଆରି ଦେଶୀ କୀଟନାଶକ ବ୍ୟବହାର କରି ଆମେ ଚାଷକରୁ । ଧାନ, ପନିପରିବାର ଦେଶୀ ବିହନ ସଂଗ୍ରହକରି ଚାଷ କରିଥାଉ ।

'ନରିଶୋ'ର ଦେଶୀଚାଷ ଖବର ଏବେ ରାଜ୍ୟ ଛଡ଼ା ସମୁଦାୟ ଭାରତ ବର୍ଷ ଓ ଦେଶ ବିଦେଶକୁ ବ୍ୟାପିଯାଇଛି । ଏହା ମୋର ପାରିବା ପଣ ନୁହେଁ । ମୋତେ ଆମ ଗାଁ'ର ଶିକ୍ଷିତ ଯୁବକ ଯୁବରାଜ ସ୍ୱାଇଁ ଗତ ୧୫ବର୍ଷ ହେଲା ଏହି କାମରେ ସହଯୋଗ କରି ଆସୁଛନ୍ତି । ସବୁଜ ବିପ୍ଳବ ଆମ ଦେଶରେ ୧୯୬୦ ଦଶକରେ ରାଜୁତି ଆରମ୍ଭ କଲା । ସେତବେଳକୁ ଭାରତରେ ପ୍ରାୟ ଏକ ଲକ୍ଷ କିସମର ଓ ଓଡ଼ିଶାରେ ତିରିଶ ହଜାର କିସମର ଦେଶୀଧାନ ଚାଷ ହେଉଥିଲା । ଓଡ଼ିଶାର କୋରାପୁଟକୁ ଧାନର ଏନ୍ତୁଡ଼ିଶାଳ କୁହାଯାଏ । ୧୯୬୫ ରୁ ୭୦ ଭିତରେ ଦେଶୀଧାନ ବିହନ ଲୋପ ପାଇଗଲା । ଚାଷୀକୁ ଗୋଟିଏ ଅମଳକ୍ଷମ ଧାନ ଧରାଇ ଦିଆଗଲା । ଦେଶୀଚାଷ ପାଇଁ ଦେଶୀ ବିହନ ହିଁ ଦରକାର । ମାତ୍ର ଗୋଟିଏ ଗୋଟିଏ ବ୍ଲକରେ ଖୋଜିଲେ ୨/୩ଟି ଦେଶୀଧାନ କିସମ ବି ମିଳୁନାହିଁ । ରାଜୁର ତାଗିଦ- " ଯୁବରାଜ ତୁ ଗାଁ ଗାଁ ଜିଲ୍ଲାରୁ ଜିଲ୍ଲା ବୁଲି ଖୋଜ୍ । କେଉଁଠି ନା କେଉଁଠି ଦେଶୀ ବିହନ ମିଳିଯିବ । କିଛି ନକରି ମିଳୁନି ମିଳୁନି ବୋଲି ନନାଙ୍କ ସାଥିରେ ପାଳି ଧରନାହିଁ ।" ଖୋଜା ଚାଲିଲା । ଏବେବି ଖୋଜା ଚାଲୁ ରହିଛି । ଏ ପର୍ଯ୍ୟନ୍ତ ଆମେ ୪୫୦ ରୁ ଅଧିକ କିସମ ଧାନ ବିହନ ସଂଗ୍ରହ କରିପାରିଛୁ । ପ୍ରତିବର୍ଷ ସେଇ ୮ ଏକର ଜମିରେ ଚାଷ କରୁ । କେତେକ ଚାଷୀ ଆମଠାରୁ ଦେଶୀ ବିହନ ନେଇ ଚାଷ କଲେଣି । ଏହି ବିହନ କିସମଗୁଡ଼ିକ ଆମପାଇଁ ଅସଲ ସମ୍ପଦ । ଏବେ ଏବେ ସରକାରଙ୍କର ହେଜ ପଶିଲାଣି । ସରକାରୀ ସ୍ତରରେ ଦେଶୀ ବିହନ ଖୋଜା ଚାଲିଛି ।

ନରିଶୋ ଦେଶୀଚାଷ କାର୍ଯ୍ୟକ୍ରମ ବହୁ ପ୍ରତିଷ୍ଠିତ ବୁଦ୍ଧିଜୀବୀଙ୍କ ସହଯୋଗ ପାଉଛି । ସୁଧୀର ସମେତ ପ୍ରଫେସର ବିରେନ୍ଦ୍ର ନାୟକ, ପ୍ରଫେସର ସ୍ୱାଧୀନ ପଟ୍ଟନାୟକ ଓ ତାଙ୍କ ସହଧର୍ମିଣୀ ସୁମିତ୍ରା ପଟେଲ୍, ଓମଫେଡ଼ର ଚେୟାରମେନ୍ ସରୋଜିନୀ ମିଶ୍ର, କୃଷି ବିଜ୍ଞାନୀ ସୁବାସ ସାହୁ, ମୁସ୍ତାକ୍, ଶୈଳେନ୍ଦ୍ର ଛାଟୋଇ, ବିଘ୍ନେଶ୍ୱର ସାହୁ, ପ୍ରଫେସର ବାଣୀକାନ୍ତ ମିଶ୍ର, ପରିବେଶବିତ୍ ପ୍ରଫୁଲ୍ଲ ସାମାନ୍ତରା, କୃଷକ ନେତା ଲିଙ୍ଗରାଜ, ପ୍ରଫେସର ଗୋଲକ ବିହାରି ନାଥ, ଅଧାପିକା ଚିତ୍ରା ପଟ୍ଟନାୟକ, ବିପ୍ଳବୀ ଗଣନାଥ ପାତ୍ର, ରାଧାକାନ୍ତ ସେଠି,

ସୁରେଶ ପାଣିଗ୍ରାହୀ, ମହେନ୍ଦ୍ର ପରିଡ଼ା, ଭାଲଚନ୍ଦ୍ର ଷଡ଼ଙ୍ଗୀ, ପ୍ରଶାନ୍ତ ମହାନ୍ତି, ତରୁଣ ମିଶ୍ର, ଲକ୍ଷ୍ମୀଧର ମୁର୍ମୁଙ୍କ ଭଳି ୪୦/୫୦ ଜଣ ପ୍ରତିଷ୍ଠିତ ବ୍ୟକ୍ତି ଆମକୁ ଏହି କାମରେ ନିରନ୍ତର ସାହାଯ୍ୟ କରିଥାନ୍ତି। ନିକଟରେ "ରାଜେନ୍ଦ୍ର ଦେଶୀଚାଷ ଗବେଷଣା କେନ୍ଦ୍ର" ପାଇଁ ଘର ଖଣ୍ଡିଏ କରିଛୁ। ଏଥିପାଇଁ ମୋ ପିଲାଦିନର ସାଥୀ ଅଭିମନ୍ୟୁ ସିଂ, ପୂର୍ବତନ ରାଜ୍ୟସଭା ସାଂସଦ ତଥା ଛାତ୍ର ଶଶିଭୂଷଣ ବେହେରା, ବର୍ତ୍ତମାନର ରାଜ୍ୟସଭା ସାଂସଦ ବୈଷ୍ଣବ ଚରଣ ପରିଡ଼ା, ମୋ ସାନ ଭାଇ ଦାମୋଦର ଷଡ଼ଙ୍ଗୀ, ଝିଅ ନମିତା ଓ ଜ୍ୱାଇଁ ଅଶୋକ ତଥା ମୋର ଅନେକ ନାତି ନାତୁଣୀ ଉତ୍ସାହର ସହ ସହଯୋଗ କରିଆସିଛନ୍ତି। ନିୟମିତ କୃଷକ ତାଲିମ, ଦେଶୀ ଚାଷ ସମ୍ପର୍କିତ ଗବେଷଣା ଭଳି କାମ ଏହି କେନ୍ଦ୍ରରୁ ପରିଚାଳିତ ହୋଇଥାଏ। ଦେଶୀଚାଷ ଗବେଷଣା ଓ ଦେଶୀ ବିହନ ସଂରକ୍ଷଣ କାମକୁ ସୁସଂଗଠିତ କରିବାରେ ଶିବାଶିଷଙ୍କ ଯୋଗଦାନ ଅତୁଳନୀୟ। କୃଷି, ପଶୁପାଳନ, ମତ୍ସ୍ୟ ସମ୍ପଦ ବିକାଶ, ଗ୍ରାମ ଅର୍ଥନୀତି ଉପରେ ଗବେଷଣା କରୁଥିବା ଛାତ୍ରମାନେ ଚାହିଁଲେ 'ରାଜେନ୍ଦ୍ର ଦେଶୀଚାଷ ଗବେଷଣା କେନ୍ଦ୍ର'ରୁ ଗବେଷଣା ପାଇଁ ବହୁ ତଥ୍ୟ ସଂଗ୍ରହ କରିପାରିବେ। ଆମର ଦେଶୀଚାଷ ପ୍ରକ୍ରିୟାଟିକୁ ସର୍ବତ୍ର ପରିଚିତ କରାଇବା ପାଇଁ ସୁଧୀରଙ୍କ ବନ୍ଧୁ ତଥା ପ୍ରସିଦ୍ଧ ବୃତ୍ତଚିତ୍ର ନିର୍ମାତା ଅମର କନୱାର ନିଜସ୍ୱ ଉଦ୍ୟମରେ ଏକ ସାର୍ବଭୌମ ଜଙ୍ଗଲ ନାଁରେ ପ୍ରଦର୍ଶନୀଟିଏ ଆରମ୍ଭ କରିଛନ୍ତି। ଫ୍ରିଲାନସର ଓ ଇଣ୍ଡିପେଣ୍ଡେଣ୍ଟ୍ ମିଡ଼ିଆ ତରଫରୁ 'ନରିଶୋ ପ୍ରୟାସ' ନାଁରେ ଏକ ବୃତ୍ତଚିତ୍ର ମଧ୍ୟ ନିର୍ମାଣ କରାଯାଇଛି। 'ସମଦୃଷ୍ଟି ଟେଲିଭିଜନ୍' ତରଫରୁ ପୁଣି ଏକ ବୃତ୍ତଚିତ୍ର ନିର୍ମାଣ ମଧ୍ୟ ଚାଲିଛି।

ମୁଁ ନିଜେ ଗାଁ'ରେ ରହି ଚାଷ କରୁଥିବାରୁ ଓ ଚାଷୀମାନଙ୍କ ସହିତ ନିୟମିତ ମିଶୁଥିବାରୁ ଚାଷୀ ଓ ଚାଷର ଭଲମନ୍ଦ ଅତିନିକଟରୁ ଦେଖିପାରୁଛି। ଦେଖୁଛି ଚାଷୀ ଘରେ ଆଉ ବିହନ ଭାଡ଼ି ନାହିଁ। ବିହନ ଓଳିଆ ନାହିଁ, ଦେଶୀ ଗାଈ ନାହାଁନ୍ତି, ଖୁଣ୍ଟରେ ବଳଦ ନାହାଁନ୍ତି, ଲଙ୍ଗଳ ଯୁଆଳି ନାହିଁ, ଶଗଡ଼ ସାତ ସପନ ହେଲାଣି । ଯୁବକମାନେ ଲଙ୍ଗଳ, ମଇ କ'ଣ ବୁଝିପାରିବେନି । ଗାଁ ବଢ଼େଇ ଆଉ ଲଙ୍ଗଳ, ଇସ କିଛି ତିଆରି କରୁନାହିଁ। ଗାଁ'ରେ କମାର ଶାଳ ନାହିଁ କି ଦେଶୀ ଗାଈ ନାହାଁନ୍ତି। ଜମି ମାଲିକମାନେ ଆଉ ଚାଷବାସରେ ନାହାଁନ୍ତି। ଦଳିତ, ଦୁର୍ବଳ ଶ୍ରେଣୀ ଭୂମିହୀନ କୃଷି ଶ୍ରମିକମାନେ ସାଆନ୍ତଙ୍କ ଜମିକୁ ଭାଗରେ ଚାଷ କରୁଛନ୍ତି। ଭାଗ ଚାଷୀହିଁ ଆଜି ପ୍ରକୃତ ଚାଷୀ । ଚାଷର ସବୁ ସାଧନପାଇଁ ସେ ବଜାରକୁ ଯାଉଛି। କମ୍ପାନୀ ବିହନ, ରାସାୟନିକ ସାର, କୀଟନାଶକ ଓ ଟ୍ରାକ୍ଟର- ସବୁ ପଇସା ଦେଇ କିଣୁଛି। ସବୁଜ ବିପ୍ଳବ ରାଜୁତି ପୂର୍ବରୁ ଚାଷରେ ଏତେ ଖର୍ଚ୍ଚ ନଥିଲା।

ଓଳିଆରେ ବିହନ, ବାଡ଼ିରେ ଖତ, ଗୁହାଳରେ ବଳଦ, ବାରଣ୍ଡାରେ ଲଙ୍ଗଳ। ନିଜେ ଖଟୁଥିଲା, ପିଲା ମାଇପେ, ବୁଢ଼ା ବାପା, ମା' ବି ଖଟୁଥିଲେ। ଏବେତ ଏକରେ ଜମି ଧାନ ଚାଷକଲେ ୨୦ ହଜାର ଟଙ୍କା ଖର୍ଚ୍ଚ ହେଉଛି।

ଭାଗଚାଷୀଙ୍କୁ ସରକାରୀ ଋଣ ମିଳେନାହିଁ। ବ୍ୟାଙ୍କ, ସମବାୟକୁ ସାଆନ୍ତମାନେ ଲୁଟନ୍ତି। ସେମାନଙ୍କର ଜମି ମାଲିକାନା ! ଫସଲ ନଷ୍ଟହେଲେ ସରକାରୀ ସାହାଯ୍ୟ ଜମି ମାଲିକ ପାଇବ। ଭାଗଚାଷୀ ନୁହେଁ। ଋଣ ଛାଡ଼ ହେଲେ ଜମି ମାଲିକର ଲାଭ। ବୀମା କମ୍ପାନୀ ସେଇ ଜମି ମାଲିକକୁ ଛାଡ଼ ଟଙ୍କା ଦେବ। ଏମାନଙ୍କ ଦିହରେ ହାତରେ ଲାଗେନି। ଶୁଖିଲାରେ ବାଲିଆ ପିଟନ୍ତି। ମୋଟା ଅଙ୍କରେ ଋଣପାଇ ମଉଜ ମଜଲିସ କରନ୍ତି। ଦୁଇ ଚକିଆ, ଚାରି ଚକିଆ କିଣି ସରକାରୀ ଦଳପାଇଁ ଓକିଲାତି କରନ୍ତି। ଭାଗଚାଷୀ ମହାଜନଠାରୁ ୪୦ ପ୍ରତିଶତ ସୁଧରେ ଋଣକରି ଚାଷରେ ଖଟାଏ। ବାତ୍ୟା, ବନ୍ୟା, ମରୁଡ଼ି ବା ରୋଗପୋକରେ ଫସଲ ଉଜୁଡ଼ିଲାତ ମୁଣ୍ଡରେ ହାତ ଦେଇ ବସନ୍ତି। ସରକାରଙ୍କ ଖାତା ଖତିଆନରେତ ଏମାନଙ୍କର ନାଁ ନାହିଁ। ପଇସାଟିଏ ସରକାରୀ ସାହାଯ୍ୟ ଏମାନଙ୍କୁ ମିଳିବ ନାହିଁ। ଭାଗଚାଷୀ ବିଲକୁ ଚାହିଁଲେ ହଂସା ଉଡ଼ିଯାଉଛି। ମୁଣ୍ଡ ବୁଲିଯାଉଛି, କୁଟୁମ୍ବଙ୍କ ମୁହଁରେ ଦାନାଦେବ କେମିତି ? ମହାଜନ ଋଣ ଶୁଝିବ କେମିତି ? ଘରେ ବଢ଼ିଲା ଝିଅ। ମୁଣ୍ଡରେ ଦୁବ ବରକୋଳିପତ୍ର ପଡ଼ିବ କେମିତି ? କେହିତ ଆହା କରିବାକୁ ନାହିଁ। ମହାଜନ ଦାଣ୍ଡରେ ତାଗିଦ କଲାଣି। ବାଡ଼ିବାଟେ ବିଷ ବୋତଲଧରି ଚାଲିଲା। କୀଟନାଶକ ପିଇ ବିଲରେ ଶୋଇଲାତ ଶୋଇଲା। ଓଡ଼ିଶାରେ ଗତ ୧୦ବର୍ଷ ଭିତରେ ୩ ହଜାରରୁ ଅଧିକ ଚାଷୀ ଆତ୍ମହତ୍ୟା କଲେଣି। ମରୁଡ଼ି ଯୋଗୁଁ କେବଳ ୨୦୧୫ ମସିହା ଅକ୍ଟୋବର ମାସ ସୁଦ୍ଧା ୧୨୫ ଜଣ ଚାଷୀ ଆତ୍ମହତ୍ୟା କରିଥିବା ରାଜ୍ୟସରକାର ମାନିଲେଣି। ମାତ୍ର ଏଗୁଡ଼ାକ ଚାଷୀମୃତ୍ୟୁ ନୁହେଁ ବୋଲି ସରକାର କହୁଛନ୍ତି। ଆଜି ଦିନରେ ସରକାର ଗୁଡ଼ିକ ରାଜାଠାରୁ ଆହୁରି ନିଷ୍ଠୁର। ଅବୁଝା ରାଜାକୁ ପାଳବିଣ୍ଡା ମନ୍ତ୍ରୀ ଭଳି ପ୍ରଶାସନିକ ଅଧିକାରୀ ମାନଙ୍କ କଥାରେ ହିଁ ଶାସନ ଚାଲିଛି।

ଭାରତର କୃଷି ସଂସ୍କୃତି ୧୦ହଜାର ବର୍ଷର ପୁରୁଣା। ସେ କାଳର ନିରନ୍ତର କୃଷି ଆଜି ଇତିହାସ ପାଲଟିଯାଇଛି। ଗାଁ' ଗୁଡ଼ିକର ଶିରୀ ଉଜୁଡ଼ି ଯାଉଛି। ବିକାଶ ନାଁରେ ବିନାଶର କୋଳାହଳ ଗାଁ ଗୁଡ଼ାକରେ ଘେରିଗଲାଣି। ଗାଁ'ର ପ୍ରାକୃତିକ ସମ୍ପଦ କମ୍ପାନୀମାନେ ଲୁଟି ନେଉଛନ୍ତି। ଜଳ, ଜମି, ଜଙ୍ଗଲ ଏବେ କମ୍ପାନୀମାନଙ୍କ କବ୍‌ଜାରେ। ଗାଁ'ରେ ଆଉ

ଆମ୍ବତୋଟା ନାହିଁ, ବେତ ବାଡ଼ି ନାହିଁ। ନଈ, ନାଳ, ପୋଖରୀ ଗୁଡ଼ାକ ମରିଯାଉଛନ୍ତି। ସହର ଗୁଡ଼ାକ ଗାଁ ଆଡ଼କୁ ମାଡ଼ି ଆସୁଛନ୍ତି। କାଲି ଯେଉଁ ଜମିରେ ପାଚିଲା ଧାନ ଲହଡ଼ି ମାରୁଥିଲା ଆଜି ଦେଖିଲାବେଳକୁ ତା ଉପରେ ବିରାଟ ଅଟ୍ଟାଳିକା। ଗାଁରେ ଆଉ ଭାଗବତ ଟୁଙ୍ଗି ନାହିଁ। ସମୟଥିଲା ଯେତେବେଳେ ଭାଗବତ ଟୁଙ୍ଗି ଗାଁ'ର ବିଧାନସଭା ଭଳି ଥିଲା। ସଞ୍ଜହେଲେ ଗାଁ ଲୋକେ ଏକାଠି ବସୁଥିଲେ। ଚାଷବାସ, ହଳ, ଲଙ୍ଗଳ, ବିହନ ଅନୁକୂଳ ସବୁକଥା ଭାଗବତ ଘରେ ଚର୍ଚ୍ଚା ହେଉଥିଲା। ଏହା କହିବା ମାନେ ନୁହେଁ ଯେ ଗାଁ'ରେ ସବୁକିଛି ସୁନ୍ଦର ଥିଲା ଏବଂ ସାମାଜିକ ଭେଦଭାବ ନଥିଲା। ମୁଁ ଏଠାରେ କେବଳ ଗାଁର କୃଷି ଓ ଗ୍ରାମ୍ୟ ଅର୍ଥନୀତି ପ୍ରସଙ୍ଗରେ ହିଁ କହୁଥିଲି। ଆଜି ଗାଁ'ର ଯୁବକ ଟୋକା ଗୁଡ଼ାକ ଚାଷକୁ ମୁହଁ ମୋଡ଼ି ଦେଉଛନ୍ତି। ଛକରେ ମେଳିହୋଇ ଦେଶୀ, ବିଦେଶି ମଦ ପିଉଛନ୍ତି ନାହିଁତ ଦାଦନ ଖଟିବାକୁ ସହର ଆଡ଼େ ଧାଉଁଛନ୍ତି।

ଆମ ଦେଶର ଚାଷ ଏବେ ସମ୍ରାଜ୍ୟବାଦୀ ଆମେରିକା ବରାଦରେ ଚାଲିଛି। ମନସାଣ୍ଟୋ, ସିଞ୍ଜେଣ୍ଟା, ବେୟର କ୍ରପ ସାଇନସ୍ ଭଳି କମ୍ପାନୀମାନେ ଆମ ଦେଶର କୃଷି ନୀତି ତିଆରି କରୁଛନ୍ତି। ଚାଷୀର ସାର୍ବଭୌମତ୍ୱ ଲୋପ ପାଇଯାଇଛି। କମ୍ପାନୀ ପଇସାରେ ଭୋଟ କିଣାଯାଉଛି। ଲୋକେ ନାମକୁ ମାତ୍ର। କମ୍ପାନୀମାନେ ଟଙ୍କା ଲଢ଼ଉଛନ୍ତି। ସେମାନେ ତାଙ୍କ ବେପାରକୁ ସୁହାଇଲାଭଳି ସରକାର ଦିଲ୍ଲୀରେ କରାଉଛନ୍ତି, ରାଜ୍ୟମାନଙ୍କରେ ବସାଉଛନ୍ତି। ରାଜନେତାମାନେ କମ୍ପାନୀ କଥାରେ ଉଠବସ ହେଉଛନ୍ତି। ଭାରତୀୟ ଗଣତନ୍ତ୍ରର ସଫଳ ରୂପାୟନ-ଦେଶସାରା କମ୍ପାନୀରାଜ। ସରକାର ଶୁଣିଲେ କମ୍ପାନୀ କଥା ଶୁଣିବେ। ଟାଟାକମ୍ପାନୀ ଲୋକଙ୍କୁ ସଚିବାଳୟକୁ ପାଛୋଟିନେବେ। ବିଶ୍ୱବ୍ୟାଙ୍କ, ବିଶ୍ୱବାଣିଜ୍ୟ ପ୍ରତିଷ୍ଠାନ, ଡ଼ି.ଏଫ୍.ଆଇ.ଡ଼ି ବା ମନସାଣ୍ଟୋର ପ୍ରତିନିଧିମାନେ ସଚିବାଳୟରେ ଆସ୍ଥାନ ଜମାଉଛନ୍ତି। ଏଣେ ମଲପଣେ ଚାଷୀ ଗୁହାରୀ କରିବାକୁ ଆସିଲେ ତାଙ୍କୁ ସରକାରୀ ଅଫିସ୍ ମନା। ସରକାରୀ ଗୁଣ୍ଡାମାନେ ବନ୍ଧୁକ, ଠେଙ୍ଗା ଧରି ଜଗିଛନ୍ତି। ଟିକେ ଜୋରକରି ଅଫିସ ଭିତରକୁ ଯିବାକୁ ଚାହିଁଲେତ ସରକାରୀ ଗୁଣ୍ଡାଗୁଡ଼ାକ ଠେଙ୍ଗାରେ ସେକିଦେବେ। ଚାଷୀ ପ୍ରାଣ ବିକଳରେ କର୍ମ ଆଦରି ଯେଉଁବାଟେ ଆସିଥିଲେ ସେଇବାଟେ ଫେରିଯିବେ। ରାଜା ରାଜୁଡ଼ା ଶାସନ ଠାରୁ ବଳିପଡ଼ିଲାଣି।

ନିକଟରେ ସବୁଜ ବିପ୍ଳବର ୪୦ବର୍ଷ ପୂର୍ତ୍ତି ଉପଲକ୍ଷେ, ସୁବର୍ଣ୍ଣଜୟନ୍ତୀ ପାଳନ ହେଉଛି। କୃଷି ବିଶ୍ୱ ବିଦ୍ୟାଳୟ, କୃଷି ଗବେଷଣା କେନ୍ଦ୍ରମାନଙ୍କୁ ସବୁଜ ବିପ୍ଳବର ସଫଳତା

ପାଇଁ ପୁରସ୍କାରମାନ ଦିଆଯାଉଛି । (NRRI Awarded for Green Revolution - The New Indian Express 01 December, 2015 Page-2) ବାସ୍ତବ କାହାଣୀ କିନ୍ତୁ ସମ୍ପୂର୍ଣ୍ଣ ଓଲଟା । ୧୯୬୫ ମସିହାରେ ସବୁଜ ବିପ୍ଳବର ଜନ୍ମ । "ଦେଶୀ ବିହନ ଛାଡ଼, ପେଟୁଆ ବିହନ (ଅଧିକ ଅମଳକ୍ଷମ ବିହନ), ରାସାୟନିକ ସାର, କୀଟନାଶକ ବିଷ, ଟ୍ରାକ୍ଟର ଚଷ ଆଉ କେନାଲରୁ ପାଣି ଲଗାଇ ଚଷ କର । ଅଧିକ ଅମଳ ପାଇବ, ଖାଦ୍ୟ ସଙ୍କଟ ଦୂର ହୋଇଯିବ" - ସବୁଜ ବିପ୍ଳବର ଚଷୀଙ୍କ ପାଇଁ ଅମରବାଣୀ । ପଞ୍ଜାବକୁ ସବୁଜ ବିପ୍ଳବର ପ୍ରୟୋଗ ଶାଳା କରାଗଲା । ପଞ୍ଜାବରେ ସେତେବେଳେ ମାଟି ଅତ୍ୟନ୍ତ ଉର୍ବରଥିଲା । ସିନ୍ଧୁ, ଝେଲମ, ସତଲେଜ୍, ବିତସ୍ତା ଭଳି ନଦୀମାନଙ୍କର ଅବବାହିକା ପଞ୍ଜାବ । ୪/୫ ଫୁଟ ଖୋଳିଲେ ପାଣି । ଭାକ୍ରା ଡ୍ୟାମରୁ ପାଣି । ଉଠା ଜଳସେଚନରୁ ପାଣି, ପଞ୍ଜାବୀମାନେ ଖୁବ୍ କର୍ମଠ ତେଣୁ ଲାଗିପଡ଼ିଲେ, ଭରପୁର ଫସଲ କାଟିଲେ । ୧୦/୧୫ ବର୍ଷ ଇମିଟେସନ ସୁନା ଠିକ୍ ରହିଲା । କିନ୍ତୁ ଏବେ ? ଏହି ୫୦ ବର୍ଷ ଭିତରେ ପଞ୍ଜାବରେ ୫୦ ହଜାର ଚଷୀ ଆତ୍ମହତ୍ୟା କଲେଣି । କାରଣ ହେଲା କରଜ । ଭୂତଳ ଜଳ ଯାହା ୧୯୬୫ ବେଳେ ୪/୫ ଫୁଟ ମାଟି ଖୋଳିଲେ ମିଳୁଥିଲା ଏବେ ୪୦୦ଫୁଟ ତଳକୁ ଖସିଗଲାଣି । କୀଟନାଶକ ଆଖିବୁଜି ଜମିରେ ଢ଼ାଳିଲେ । କମ୍ପାନୀମାନଙ୍କ ବରାଦ । ପଞ୍ଜାବ କୃଷି ବିଶ୍ୱବିଦ୍ୟାଳୟର ବରାଦ । ଫଳ କ୍ୟାନସର । ଘରେ ଘରେ କ୍ୟାନସର । ପ୍ରତିଦିନ ଗୋଟିଏ ଟ୍ରେନ୍ ଜଳନ୍ଧରଠାରୁ ଭଟିଣ୍ଡା କ୍ୟାନସର ରୋଗୀଙ୍କୁ ନେଇ ଯିବାଆସିବା କରେ । ଏମାନଙ୍କ ମଧ୍ୟରୁ ଶତୁରି ପ୍ରତିଶତରୁ ଅଧିକ ମହିଳା । କୀଟନାଶକ ବିଷର କରିସ୍ମା ।

ପଞ୍ଜାବ, ହରିୟାଣା, ପଶ୍ଚିମ ଉତ୍ତର ପ୍ରଦେଶରେ ଏକସମୟରେ ସବୁଜ ବିପ୍ଳବର ଜୟଯାତ୍ରା ଚାଲିଥିଲା । ଆଜି ୫୦ବର୍ଷ ପରେ ସ୍ଥିତି ଏଇଆ ଯେ ସେସବୁ ରାଜ୍ୟରେ ଧାନ ଗହମର ଉତ୍ପାଦନ ହୁହୁ କମିଯାଉଛି । ସେଠାରେ ମାଟି ମରିଗଲାଣି । ଲୋକେ ଚଷ ଛାଡ଼ି ସହର ଆଡ଼କୁ ମୁହାଁଇଲେଣି । ଗୋଟାକପରେ ଗୋଟେ ଗାଁ ବିକ୍ରି ଚାଲିଛି । ପଞ୍ଜାବ କୃଷି ବିଶ୍ୱବିଦ୍ୟାଳୟ କଣ କୁହନ୍ତି ଟିକେ ଧ୍ୟାନ ଦିଅନ୍ତୁ । ପଞ୍ଜାବ କୃଷି ବିଶ୍ୱ ବିଦ୍ୟାଳୟର ମାସିକ ପତ୍ରିକା Progressive Farming June - 2015 ର ସଂପାଦକୀୟ କୁହେ "Saving Natural Resources for posterity-Intensive Cultivation, over exploitation of Groundwater and successive cultivation of Paddy and wheat over the years, have led to degradation in soil health and depletion of the ground water-lable. The pressure to produce more

for food security, aided by misuse of pesticides and fertilisers has worsended the environment. Punjab's deteriorating soil health has become a cause of cancers and worry, as much to the farmers, as to the scientists and policy makers. xxxx." ବିଜ୍ଞ ପାଠକମାନେ ଏବେ ସବୁଜ ବିପ୍ଳବର ମୂଲ୍ୟାଙ୍କନ କରିବା ସହଜ ମନେକରିବେ। ପଶ୍ଚିମ ରାଜ୍ୟମାନଙ୍କର ମାଟିତଳ ଖପରା କଲାପରେ ଏବେ ପୂର୍ବଭାରତରେ ଦ୍ୱିତୀୟ ସବୁଜ ବିପ୍ଳବର ରଣହୁଙ୍କାର। ବିନାଶକାଳେ ବିପରୀତ ବୁଦ୍ଧି। ପରିବେଶ ଧ୍ୱଂସକରି ମାଟି, ପାଣି, ଖାଦ୍ୟରେ ବିଷ ଭର୍ତ୍ତି କରିଦେବାର ଯୋଜନା।

ସଘନ କୃଷିର ଧ୍ୱଂସକାରି ପରିଣତି ସାରା ପୃଥିବୀରେ ଅନୁଭବ ହେଲାଣି। ଆମ ଦେଶର ୪୦ ପ୍ରତିଶତ ଭୂଖଣ୍ଡ ଆଜି ମରୁଭୂମି ପ୍ରବଣ। ଓଡ଼ିଶା ସରକାରଙ୍କର ଜଙ୍ଗଲ ଓ ପରିବେଶ ମନ୍ତ୍ରୀ ନିକଟରେ ସ୍ୱୀକାର କରିଛନ୍ତି ଓଡ଼ିଶାର ୩୫.୧ ପ୍ରତିଶତ ଅର୍ଥାତ୍ ତିନି ଭାଗରୁ ଭାଗେ କ୍ଷେତ୍ରଫଳ ଶୁଷ୍କ ଭୁଖଣ୍ଡ ବା ମରୁଭୂମିକୁ ରୂପାନ୍ତରିତ ହେଉଛି। (Dessertification Threat Looms despite Afforestation Drive - The New Indian Express, 19 June, 2015, Page - 4) । ୨୦୦୦ ମସିହା ବେଳକୁ ଓଡ଼ିଶାରେ ୮ ଲକ୍ଷ ୫୦ ହଜାର ହେକ୍ଟର ଜମିରେ ଘଞ୍ଜଙ୍ଗଲ ଥିଲା। ୨୦୧୩ ବେଳକୁ ଏହା ୩ଲକ୍ଷ ୬୦ ହଜାର ହେକ୍ଟରକୁ ଖସିଆସିଲା। ବିକାଶ ୫ଲକ୍ଷ ହେକ୍ଟର ଜଙ୍ଗଲ ଖାଇଗଲା। ଗଛ ନାହିଁତ ବର୍ଷା ନାହିଁ। ମାଟିକୁ ଧରି ରଖିବାକୁ କେହି ନାହିଁ। ମାଟିର ଜଳଧାରଣ ଶକ୍ତି କମିଯାଉଛି। ଓଡ଼ିଶାରେ ୨୦୧୫ ମରୁଡ଼ି ପାଇଁ ସରକାରଙ୍କର ବିକାଶର ଢ଼ାଞ୍ଚା ଦାୟୀ ନୁହେଁକି ? ମାଟି ଆମର ମା। ତାର ଜୀବନ ଅଛି। ଗୋଟିଏ ଚାମଚ ଉର୍ବର ଉପର ମାଟିରେ କୋଟି କୋଟି ଅଣୁଜୀବ ଥାନ୍ତି। ମାଟିରେ ବିଷ ପ୍ରୟୋଗ କଲେତ ମାଟି ମା' ମରିଯାଉଛି। ପ୍ରାଣୀ ଓ ଉଦ୍ଭିଦ ମାଟିର ଖାଦ୍ୟ ଖାଇ ବଞ୍ଚନ୍ତି। ମାଟି ମରିଗଲେ ଜୀବ ଜଗତ ଜଡ଼ ପାଲଟିଯିବ। ମାଟିକୁ ବଞ୍ଚାଇ ରଖିବାପାଇଁ ରାସାୟନିକ କୃଷିକୁ ଛାଡ଼ିବାକୁ ହେବ। ବୈଜ୍ଞାନିକମାନେ ମତ ରଖନ୍ତି ଯଦି ମାଟି ମା'ର ସୁରକ୍ଷା ନକରିବା ଆଉ ୫୦ବର୍ଷ ଭିତରେ ଏ ପୃଥିବୀ ଜଡ଼ ପାଲଟିଯିବ। ଚନ୍ଦ୍ର ବା ମଙ୍ଗଳଗ୍ରହ ସ୍ଥିତିକୁ ଆସିଯିବ। ଦେଶୀ ଚାଷହିଁ ମାଟିର ସୁରକ୍ଷାପାଇଁ ଏକମାତ୍ର ଉତ୍ତର।

ଚାଷୀ ଓ ଚାଷର ସମସ୍ୟା ଅନେକ ଅନୈତିକ। ଆଜି କୃଷିକୁ ଶିଳ୍ପର ମାନ୍ୟତା ଦିଆଯାଉଛି କାହା ସ୍ୱାର୍ଥରେ ? କମ୍ପାନୀମାନଙ୍କର କୃଷିକ୍ଷେତ୍ରରେ ପ୍ରବେଶ ପାଇଁ ଏହି ନୀତି

ପାସ୍‌ପୋର୍ଟ ଭଳି କାମ କରୁଛି। ଚାଷ ଆଉ ଚାଷୀ ହାତରେ ରହିବ ନାହିଁ। ଛୋଟ ଓ ନାମମାତ୍ର ଚାଷୀ, ଭାଗଚାଷୀଙ୍କୁ ଚାଷରୁ ହଟାଇ ଦିଆଯିବ। ଠିକା ଚାଷ, ଉଦ୍ୟାନ କୃଷି, ଅର୍ଥକାରୀ ଫସଲ, ଅଧିକ ଉତ୍ପାଦନର ଭେଳିକି ଦେଖାଇ ସରକାରଗୁଡ଼ାକ କମ୍ପାନୀ ହାତକୁ ଚାଷଜମି ଟେକି ଦେଉଛନ୍ତି। ଚାଷୀ ପାଇଁ ଆଜି ଚାରିଆଡ଼ ଅନ୍ଧାର। ପାଣି ପଞ୍ଚାୟତ କେବଳ ଜମି ମାଲିକପାଇଁ। ଭାଗଚାଷୀ ପାଣି ପଞ୍ଚାୟତର ସଭ୍ୟ ହୋଇପାରିବ ନାହିଁ। ଓଡ଼ିଶାର କ୍ଷେତ୍ରଫଳ ଦେଶର କ୍ଷେତ୍ରଫଳର ୪ ଶତାଂଶ। ମାତ୍ର ଓଡ଼ିଶାରେ ଦେଶର ୧୨ ପ୍ରତିଶତ ବର୍ଷାପାଣି। ତଥାପି ମାତ୍ର ୨୫ ପ୍ରତିଶତ ଜମିକୁ ଜଳସେଚନର ବ୍ୟବସ୍ଥା ହୋଇଛି। ତାହା ପୁଣି ଗୋଟିଏ ଫଷଲ ପାଇଁ ? ପଞ୍ଜାବରେ ଦେଶର ବୃଷ୍ଟିଜଳର ମାତ୍ର ଏକ ପ୍ରତିଶଦ ଉପଲବ୍ଧ। ସେଠାରେ ୯୮ ପ୍ରତିଶତ ଜମିକୁ ଜଳସେଚନ ଅଛି। ଓଡ଼ିଶା ସରକାର ଚାଷୀପାଇଁ ୧୫ବର୍ଷ ହେଲା ପ୍ୟାକେଜ ଘୋଷଣା କରିଆସୁଛନ୍ତି। ଫଳ ଶୂନ। ଅନ୍ତତଃ ନିଷ୍ଠୁର ସତ୍ୟ ଏହି ଯେ ଓଡ଼ିଶା ସରକାର କୃଷକ ସ୍ୱାର୍ଥ ବିରୋଧୀ।

୧୯୪୮ ମସିହାରେ ମହାରାଷ୍ଟ୍ରରେ ଜଣାଶୁଣା ସ୍ୱାଧୀନତା ସଂଗ୍ରାମୀ ମିନୋ ମାସନି "Our India" ବୋଲି ଖଣ୍ଡିଏ ବହି ଲେଖିଥିଲେ। ଭାରତରେ ଚାଷୀର ଦୟନୀୟ ସ୍ଥିତି ବହିଟିର ପ୍ରତି ପୃଷ୍ଠାରେ ସ୍ଥାନ ପାଇଥିଲା। ୭୦ ବର୍ଷପରେ ଆଜିବି ଚାଷୀକୁ ଭିକାରି ଭଳି ଗଣାଯାଉଛି। ଭାତ ସାଙ୍ଗକୁ ଡ଼ାଲି ଟିକେ ନାହିଁ। ବିଲବାଡ଼ି, ନଈ ନାଳରେ ଆଉ ମାଛନାହିଁ। ବିଲରେ ଶାଗ ନାହିଁ। ଚାଷୀ ପରିବାର ଆଜି ଅପପୃଷ୍ଟିର ଶିକାର। ଗାଁ'ରେ ଏବେବି ୮୦ ପ୍ରତିଶତ ଲୋକ ଅଛନ୍ତି ସେଠି ପିଲାଗୁଡ଼ାକର ଗୁଡୁମ ପେଟ। ପାଠ ନାହିଁ। ଦେହପାଇଁ ଔଷଧ ନାହିଁ। ପୁଅ ଝିଅଙ୍କ ଜନମ ଦିନକୁ ହଳଦିଆ ଭାତ ଗଣ୍ଡେକରି ଶଠିପୂଜା କରିପାରୁନି। ଦୀପାବଳିରେ ଦୀପଟିଏ ଜାଳିପାରୁନି। ପିଲାଙ୍କ ହାତକୁ ଫୁଲ୍‌ଝରିଟିଏ ଦେଇପାରୁନି। ଚାଷୀକୁ ଲୁଣ୍ଠନକରି ସାଆନ୍ତମାନେ ମଜଲିସ କରୁଛନ୍ତି।

ବାମପନ୍ଥୀ ଦଳମାନେ ଆଗେ ଚାଷୀପାଇଁ ଠିଆ ହେଉଥିଲେ। ପଶ୍ଚିମ ବଙ୍ଗ, ତ୍ରିପୁରା, କେରଳ, ତେଲେଙ୍ଗାନାରେ ଚାଷୀ ହାତକୁ ଜମି ଦେଇପାରିଥିଲେ। ସେମାନେ ଆଜି ଖଣ୍ଡ ବିଖଣ୍ଡିତ। ସେମାନେ ଏକାଠି ହୋଇ, କୃଷକ ସଙ୍ଗଠନମାନଙ୍କୁ ସାଙ୍ଗରେ ନେଇ ଚାଷୀଙ୍କ ପାଇଁ ଠିଆହେଲେ ସରକାର ଗୁଡ଼ାକୁ ଜବତ କରିପାରନ୍ତେ। ସାଆନ୍ତମାନଙ୍କୁ ସାବାଡ଼ କରି ପାରନ୍ତେ। କେନ୍ଦ୍ର ବା ରାଜ୍ୟ ସରକାରଗୁଡ଼ାକ ସଂଖ୍ୟା ବଳରେ ଚାଷୀକୁ ଆଡ଼ ଆଖିରେ ଚାହୁଁ ନାହାଁନ୍ତି। ସେମାନଙ୍କୁ କୃଷକ ବିପ୍ଳବ ଆଣ୍ଠେଇ ଦେଇପାରନ୍ତା। ୧୮୫୭ କୃଷକ

ବିପ୍ଳବ କଥାତ ଆମେ ଜାଣିଛେ। ବିଲାତ ସରକାର ହତବାକ୍ ହୋଇଗଲା। ଆଜିବି ବିପ୍ଳବ ସମ୍ଭବ।

ଆପଣ ହାତରେ ଧରିଥିବା ବହି ଖଣ୍ଡକରେ ଏହିଭଳି କେତୋଟି କଥା ଅଛି। ଯଦି ସେଗୁଡ଼ିକ ଆପଣଙ୍କ ମନକୁ ପାଇଲା ଏବଂ ଋଷୀ ଓ ଋଷ ବଞ୍ଚିବାପାଇଁ କିଛିଟା ଉଦ୍ୟମ କରିବା ନିମନ୍ତେ ପ୍ରବର୍ତ୍ତାଇ ପାରିଲା ତା ହେଲେ ମୁଁ ଖୁସି ହେବି। ବହିଟିକୁ ପଢ଼ିବେ ଓ ସାଙ୍ଗ ସାଥିଙ୍କୁ ଋଷୀକଥା କହିବେ। ଋଷୀ ବଞ୍ଚିବାର ରାହା ଦେଖାଇବେ। ସ୍କୁଲ, କଲେଜ ଛାତ୍ରଙ୍କୁ ସଚେତନ କରାଇଲେ ହୁଏତ ଋଷୀ ବଞ୍ଚିବାର ବାଟ ଖୋଲିପାରେ। ମୋର କଥା ଏତିକି। ପ୍ରଫେସର ବିରେନ୍ଦ୍ର ନାଏକ ମୁଖବନ୍ଧଟି ଲେଖିଥିବା ଯୋଗୁଁ ଏବଂ ପ୍ରଫେସର ଗୋଲାକ ବିହାରୀ ନାଥ ଲେଖାଗୁଡ଼ିକ ପଢ଼ି ମତାମତ ଦେଇଥିବାରୁ ମୁଁ ସେମାନଙ୍କୁ କୃତଜ୍ଞତା ଜଣାଉଛି।

**ନଟବର ଷଡ଼ଙ୍ଗୀ**



# ସୂଚୀ





## ସମଦୃଷ୍ଟିରେ ପ୍ରକାଶିତ ଲେଖାର
## ବର୍ଷ, ମାସ ଓ ସଂଖ୍ୟା

୧. ବିପର୍ଯ୍ୟସ୍ତ କୃଷି ବିପନ୍ନ କୃଷକ : ୧-୧୫ ନଭେମ୍ବର ୨୦୦୮
୨. ଆମ ଭାତହାଣ୍ଡିର ମାଲିକ ହେବ ମନ୍‌ସାଣ୍ଟୋ : ୧୬-୨୮ ଫେବୃୟାରୀ୨୦୦୭
୩. ଆଉ କେତେ ବିଷ ପିଇଲେ ଚେତିବା : ୧୬-୩୦ ଏପ୍ରିଲ ୨୦୦୭
୪. ସୁନା ହରିଣ ବନାମ ସୁନେଲି ଧାନ : ୧-୧୫ ଫେବୃୟାରୀ ୨୦୦୮
୫. ବାଇଗଣ ଭରତାର ଦିନକାଳ ସରିଆସୁଛି : ୧୬-୩୦ମାର୍ଚ୍ଚ ୨୦୦୮
୬. ଚାଷୀ ଆତ୍ମହତ୍ୟା: ନିଦାନ, ନିରାକରଣ ଓ ନିୟନ୍ତ୍ରଣ:୧୬-୩୧ ଜାନୁଆରୀ ୨୦୧୦
୭. ବିଟି ବାଇଗଣ-ଗୁମର କଥା : ୧-୧୫/ ୧୬-୩୦ ମାର୍ଚ୍ଚ ୨୦୧୦
୮. ଡାଲିର ରାଜନୈତିକ ଅର୍ଥନୀତି :୧୬-୩୦ ଏପ୍ରିଲ ୨୦୧୧
୯. ଏଣ୍ଡୋସଲ୍‌ଫାନ୍‌ର ରାଜନୈତିକ ଅର୍ଥନୀତି : ୧୬-୩୧ ଜୁଲାଇ ୨୦୧୧
୧୦. ବିଶ୍ୱ ଖାଦ୍ୟ ସଙ୍କଟ ଓ ଓଡ଼ିଶା : ୧-୧୫ ମଇ ୨୦୦୮
୧୧. ସାଆନ୍ତିଆ ସମବାୟ : ୧୬-୩୧ ଡିସେମ୍ବର ୨୦୦୮
୧୨. ବିହନ ଆଗକୁ ଆସୁଛି ଦୁର୍ଦ୍ଦିନ : ୧୬-୩୦ ମେ ୨୦୦୯
୧୩. ଦେଶୀ ଗାଇ ବନାମ ବିଦେଶୀ ଗାଇ : ୧-୧୫ ନଭେମ୍ବର ୨୦୦୯
୧୪. କ୍ଷୀରରେ ବିଷ ରାଜନୀତି : ୧-୧୫ ଫେବୃୟାରୀ ୨୦୧୨
୧୫. ପାଣି! ପାଣି! ପାଣି ପାଇଁ ହାହାକାର ବେପରୁଆ ସରକାର : ୧୬-୩୧ମଇ ୨୦୧୨
୧୬. ସମବାୟ! ଲୁଟେରାଙ୍କ କବ୍‌ଜାରେ : ୧୬-୩୧ ଜୁଲାଇ ୨୦୧୨
୧୭. ବିକାଶ ଯଜ୍ଞରେ ମାଛ ଆହୁତି : ୧୬-୨୮ ଫେବୃଆରୀ ୨୦୧୪
୧୮. ମାଟି ମା'କୁ ଚିହ୍ନିବା ଆସ : ୧-୧୫ ସେପ୍ଟେମ୍ବର ୨୦୧୫

# ବିପର୍ଯ୍ୟସ୍ତ କୃଷି ବିପନ୍ନ କୃଷକ

୨୦୦୮ ବର୍ଷଟି ଓଡ଼ିଶାର ଚାଷୀକୁଳ ପାଇଁ ଏକ ଦୁର୍ଗତିର ବର୍ଷ ହୋଇଯାଇଛି। ମହାନଦୀ ତ୍ରିକୋଣଭୂମି ଜଳସେଚିତ ଅଞ୍ଚଳ ପାଇଁ ରବିଧାନ ପାଣି ବହୁ ବିଳମ୍ବରେ କେନାଲରେ ଛଡ଼ାଗଲା। ରାଜ୍ୟ ଜଳସମ୍ପଦ ବିଭାଗର ତ୍ରୁଟିପୂର୍ଣ୍ଣ ଜଳନୀତି ଯୋଗୁଁ ପାଣି ଆସିବ-ନ ଆସିବ, ଏହି ଅବସ୍ଥା ଫେବୃୟାରୀ ଦ୍ୱିତୀୟ ସପ୍ତାହ ଯାଏଁ ରହିଲା। ଫେବୃୟାରୀ ୨୫ତାରିଖରେ କେନାଲରେ ପାଣି ଛଡ଼ାଗଲା। ବିଳମ୍ବରେ ରବି ଧାନଚାଷ ସାଙ୍ଗକୁ ମେ-ଜୁନ୍ ମାସରେ ପ୍ରବଳ ବର୍ଷାଯୋଗୁଁ ପୁରୀ,ଖୋର୍ଦ୍ଧା ଓ କଟକ ଜିଲ୍ଲାର ପାଚିଲା ଡାଲୁଅଧାନ ପାଣିରେ ସଢ଼ି ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା। ପ୍ରାୟ ୨୦ହଜାର ହେକ୍ଟର ଜମିର ଫସଲ ମାଟିରେ ମିଶିଗଲା। ରାଜଧାନୀଠାରୁ ମାତ୍ର ୧୦କିଲୋମିଟର ଦୂର ବାଲିଅନ୍ତା-ବାଲିପାଟଣା ନିର୍ବାଚନମଣ୍ଡଳୀର ଜଣେ ଚାଷୀ ଫସଲ କ୍ଷତି ସହିନପାରି ଆତ୍ମହତ୍ୟା କଲେ। କିଛିଦିନ ପରେ କେନ୍ଦ୍ରାପଡ଼ାରେ ଜଣେ ଚାଷୀ ଫସଲ ହରାଇ ଋଣ ଶୁଝିପାରିବ ନାହିଁ ଭାବି ଆତ୍ମହତ୍ୟା କରିଥିବା ଖବର ମଧ୍ୟ ପ୍ରକାଶ ପାଇଲା। ମାତ୍ର ଆମ ଲୋକପ୍ରିୟ ଓଡ଼ିଶା ସରକାର ଚାଷୀର ବିପନ୍ନବେଳେ ଆହାଟିକେ ବି କଲେନାହିଁ। ଫେବୃୟାରୀ-ମାର୍ଚ୍ଚ ମାସରେ ଆନ୍ଧ୍ର, ତାମିଲନାଡୁ ଓ କର୍ଣ୍ଣାଟକରେ ଅଦିନ ବର୍ଷା ଯୋଗୁଁ ଧାନଫସଲର କ୍ଷତି ହୋଇଥିଲା। ସେହି ସବୁ ରାଜ୍ୟ ସରକାରମାନେ କ୍ଷତିଗ୍ରସ୍ତ ଚାଷୀମାନଙ୍କୁ ହେକ୍ଟର ପ୍ରତି ୧୦ ହଜାରରୁ ୧୩ହଜାର ଟଙ୍କା ପର୍ଯ୍ୟନ୍ତ କ୍ଷତିପୂରଣ ଦେଇଛନ୍ତି। ଓଡ଼ିଶା ସରକାରଙ୍କ କୃଷକବିରୋଧୀ ନୀତିର ପ୍ରମାଣ ପାଇଁ ଏହା ଏକ ନଜିର ହେବନି କି ?

ଚଳିତବର୍ଷ ଜୁନ୍‌ମାସଠାରୁ ଓଡ଼ିଶାରେ ବନ୍ୟାପର୍ବ ଆରମ୍ଭ ହୁଏ। ପ୍ରଥମପର୍ଯ୍ୟାୟ ବନ୍ୟାରେ ବାଲେଶ୍ୱର ଜିଲ୍ଲାରେ ଗଙ୍ଗାଧୋଇ,ଦ୍ୱିତୀୟ ପର୍ଯ୍ୟାୟରେ ଦକ୍ଷିଣ ଓଡ଼ିଶାର

ଜିଲ୍ଲାମାନଙ୍କରେ ବନ୍ୟା ଓ ସେପ୍ଟେମ୍ବର ମାସରେ ମହାନଦୀର ପ୍ରଳୟଙ୍କରୀ ବନ୍ୟାରେ କଟକ, ପୁରୀ, ଖୋର୍ଦ୍ଧା, ଜଗତସିଂହପୁର, କେନ୍ଦ୍ରାପଡ଼ା ଓ ଯାଜପୁର ଜିଲ୍ଲାମାନଙ୍କରେ ବନ୍ୟା । ମହାନଦୀ ସହିତ ବ୍ରାହ୍ମଣୀ ଓ ବୈତରଣୀ ନଦୀରେ ମଧ୍ୟ ବନ୍ୟା । ଓଡ଼ିଶା ଗେଜେଟ୍‌ରୁ ଜଣାଯାଏ ଯେ ଗତ ୬୦ ବର୍ଷ ଭିତରେ ଏପରି ବନ୍ୟା ଆଗରୁ କେବେ ଦେଖାଯାଇ ନାହିଁ । ରାଜସ୍ୱମନ୍ତ୍ରୀ ଓ ମୁଖ୍ୟ ଶାସନସଚିବଙ୍କ ମିଳିତ ସମୀକ୍ଷା ରିପୋର୍ଟ କୁହେ ବନ୍ୟାରେ ୧୯ଟି ଜିଲ୍ଲାରେ ୪୨ ଲକ୍ଷରୁ ଊର୍ଦ୍ଧ୍ୱ ଲୋକ ବିପନ୍ନ ହୋଇଛନ୍ତି । ୫ ଲକ୍ଷ ହେକ୍ଟର ଚାଷଜମି ଦୀର୍ଘଦିନ ଧରି ପାଣିରେ ବୁଡ଼ି ରହିଥିବା ଯୋଗୁଁ ବ୍ୟାପକ ଫସଲ ହାନୀ ଘଟିଛି । *(ଧରିତ୍ରୀ-ତା ୧୧.୧୦.୨୦୦୮ ସରକାରୀ ରିପୋର୍ଟ)*

ମହାନଦୀ ବନ୍ୟା ଆଶଙ୍କା ସେପ୍ଟେମ୍ବର ୧୭ ବେଳକୁ ସ୍ପଷ୍ଟ ଜଣାପଡୁଥିଲା । ସେପ୍ଟେମ୍ବର ୧୯ରେ ପାଣି ମାଡ଼ିଆସିଲା, ଦୁର୍ବଳ ନଦୀବନ୍ଧ ଯୋଗୁଁ ବଡ଼ ବଡ଼ ଘାଇକରି ପାଣି ସୁରକ୍ଷିତ ଅଞ୍ଚଳ ଭିତରେ ପଶିଗଲା । ସେତେବେଳକୁ ମୁଖ୍ୟମନ୍ତ୍ରୀ ସମେତ ମନ୍ତ୍ରିମଣ୍ଡଳର ସମସ୍ତ ସଭ୍ୟ ପୌର ନିର୍ବାଚନରେ ବ୍ୟସ୍ତ । ସେପ୍ଟେମ୍ବର ୨୩କୁ କନ୍ଧମାଳ ହିଂସା, ଭାଗୁଆଳି ସରକାରର ଗୋଟିଏ ଅଂଶୀଦାର ଦଳ ଦଙ୍ଗାକୁ ପ୍ରୋତ୍ସାହନ ଦେଉଛନ୍ତି । ଲୋକମତ ଓ କେନ୍ଦ୍ର ସରକାର ରାଜ୍ୟ ସରକାରଙ୍କୁ ତୁରନ୍ତ ପଦକ୍ଷେପ ପାଇଁ ଦୃଢ଼ ଦାବି କରୁଥିଲାବେଳେ, ରାଜ୍ୟ ସରକାର ଭୁବନେଶ୍ୱରରେ ବସିରହି ଖାଲି ଚିଠି ଲେଖୁଥାନ୍ତି । ବନ୍ୟା ଦୁର୍ଗତଙ୍କ କଥା ବୁଝୁଛି କିଏ ? ସ୍ୱାଧୀନତା ପରେ ବୋଧହୁଏ ଏହା ପ୍ରଥମ ବନ୍ୟା ଯେଉଁଥିରେ ବନ୍ୟାର ୭୨ ଘଣ୍ଟା ପରେ ମଧ୍ୟ ବିପନ୍ନ ଲୋକଙ୍କ ପାଖରେ ରିଲିଫ୍ ପହଞ୍ଚିପାରିଲା ନାହିଁ । ନିଆଳୀ ବ୍ଲକ୍‌ର ଦେବୀ-କନ୍ଦଳ ଦ୍ୱୀପାଞ୍ଚଳରେ ୪୦ ହଜାର ଲୋକ, ଗୋରୁଗାଈ ସମ୍ପୂର୍ଣ୍ଣ ଜଳବନ୍ଦୀ ଥିବାବେଳେ ସେପ୍ଟେମ୍ବର ୨୨ ସୁଦ୍ଧା କେତେକ ସ୍ଥାନରେ ରିଲିଫ୍ ପହଞ୍ଚି ପାରିନଥିଲା । ପ୍ରଶାସନ ଦକ୍ଷତାର ଏହା ଏକ ନଜିର ।

ଏଥରର ମହାନଦୀ ବନ୍ୟା ମନୁଷ୍ୟକୃତ । ଓଡ଼ିଶା ସରକାରଙ୍କ ତଥ୍ୟକୁ ଆଧାରକରି ଆଇଆଇଟି ଯୋଗ୍ୟତାପ୍ରାପ୍ତ ଜଳଗବେଷକ ହିମାଂଶୁ ଥକ୍କର ଏକ ପ୍ରେସ ବିଜ୍ଞପ୍ତିରେ ଏହା ପ୍ରକାଶ କରିଛନ୍ତି । ତାଙ୍କ ବ୍ୟତୀତ ବହୁ ବରିଷ୍ଠ ରାଜନୀତିଜ୍ଞ, ବୈଜ୍ଞାନିକ ଓ ପୋଲିସ ପ୍ରଶାସକ ମଧ୍ୟ ଅନୁରୂପ ମତ ଦେଇଛନ୍ତି । ହୀରାକୁଦଠାରେ ଜଳ ପରିଚାଳନା ତ୍ରୁଟିଯୋଗୁଁ ଏପରି ଭୟଙ୍କର ବନ୍ୟାର ସୂତ୍ରପାତ ହେଲା । କିନ୍ତୁ ବହୁ ପ୍ରତିଷ୍ଠିତ କୃଷକ ନେତା, ସମାଜକର୍ମୀ ସରକାରଙ୍କର ଏହା ତ୍ରୁଟିନୁହେଁ, ଉଦ୍ଦେଶ୍ୟମୂଳକ ବୋଲି ମତପୋଷଣ କରନ୍ତି ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

ହୀରାକୁଦର ପାଣି ଜଳସେଚନ ପାଇଁ ଚାଷୀର ଦରକାର, ମାତ୍ର ଏଥିମଧ୍ୟରେ ଓଡ଼ିଶା ସରକାର ବହୁ ଶିଳ୍ପସଂସ୍ଥାକୁ ହୀରାକୁଦର ଜଳ ଯୋଗାଇ ଦେବାପାଇଁ ଚୁକ୍ତିବଦ୍ଧ। ଏହି କାରଣରୁ ଗତବର୍ଷ ହୀରାକୁଦରେ ୫୦ହଜାର ଚାଷୀ କମ୍ପାନୀକୁ ଜଳଯୋଗାଣ ବିରୁଦ୍ଧରେ ଆନ୍ଦୋଳନ କରି ହୀରାକୁଦଠାରେ ଲକ୍ଷ୍ମଣରେଖା ଟାଣିଛନ୍ତି। କମ୍ପାନୀକୁ ଟୋପେବି ପାଣି ଛାଡ଼ିବେ ନାହିଁ। ସରକାରଙ୍କର ତ ବିଚକ୍ଷଣ ବୁଦ୍ଧି। ଯଦି ଚାଷୀକୁ ପାଣି ଦେଇ କମ୍ପାନୀକୁ ବଳକା ପାଣି ଦିଆଯାଏ, ସେମାନେ ଆପତ୍ତି କାହିଁକି ବା କରିବେ ? ଏହା ସମ୍ଭବ ହେବ ହୀରାକୁଦରେ ସେପ୍ଟେମ୍ବର ୨୦ବେଳକୁ ୬୩୦ଫୁଟ ପାଣି ରଖିପାରିଲେ। ଜଳ ପରିଚାଳନା ଯନ୍ତ୍ରୀମାନେ ତାହା ହିଁ କଲେ। ମାତ୍ର ଏଭଳି ମାରାତ୍ମକ ଦୁଃସାହସ କମ୍ପାନୀ ସ୍ୱାର୍ଥପାଇଁ କରିବା ନିର୍ବୋଧତା ପ୍ରମାଣିତ ହେଲା। ସରକାରଙ୍କ ଖେଳ ଲୋକଙ୍କ କାଳ ହେଲା। ସରକାରଙ୍କର ଇଚ୍ଛାଶକ୍ତି ଥିଲେ ମହାନଦୀ ବନ୍ୟାକୁ ଏଡ଼ାଇ ଦିଆଯାଇ ପାରିଥାନ୍ତା।

ଆଉ କେତେଦିନ ପରେ ବନ୍ୟାର ୨ମାସ ବିତିଯିବ। ବନ୍ୟା ପରବର୍ତ୍ତୀ ରିଲିଫ୍ ଓ କ୍ଷୟ କ୍ଷତିପୂରଣ ପାଇଁ ସରକାରଙ୍କର ତତ୍ପରତା ଥିଲାଭଳି ମନେହୁଏ ନାହିଁ। ବନ୍ୟାର ୭ଦିନ ପରେ ବିପନ୍ନ ଲୋକମାନଙ୍କୁ ୧୫ଦିନର ଖାଦ୍ୟ ସାହାଯ୍ୟ ମିଳିଲା। ପ୍ରତ୍ୟେକ ବ୍ୟକ୍ତିକୁ ଦିନକୁ ଏକ କିଲୋ ଓ ଶିଶୁମାନଙ୍କ ପାଇଁ ୫୦୦ଗ୍ରାମ ହିସାବରେ ଚାଉଳ କିଛି ମିଳିଲା। ସରକାର ରିଲିଫ୍ କୋର୍ଡ଼ ସଂଶୋଧନ କରିଥିବା କଥା କୁହନ୍ତି। ବିପନ୍ନ ଲୋକଟିଏ କ'ଣ ଚାଉଳଗଣ୍ଡିଏ ସିଝାଇ ଖାଇବ ? ଡାଲି, ତେଲ, ପରିବା ତ' ଦରକାର। ସେହି ଉପନିବେଶ ସରକାରୀ ଢାଞ୍ଚା। ଆମ ସରକାରରେ କିଛି ଟାଣୁଆନେତା ଗୋମାତା କହି ଗୋହତ୍ୟା ବିରୋଧ ଆଇନ କଡ଼ାକଡ଼ି କରିବା ପାଇଁ ଜୋର୍ ଦିଅନ୍ତି। ରାଜସ୍ୱମନ୍ତ୍ରୀ ସେହି ଗୋପ୍ରେମୀ ଦଳର। ବନ୍ୟାର ୭ଦିନ ପରେ ଗୋଖାଦ୍ୟ ବଣ୍ଟନ କରାଗଲା। ଗାଈ, ମଇଁଷି ବା ବଳଦ ମୁଣ୍ଡପିଛା ୨୦୦ଗ୍ରାମ ଦାନା। ହାତୀକୁ ହୋମିଓପ୍ୟାଥି। ମହାବାତ୍ୟା ପରେ ପ୍ରାକୃତିକ ବିପର୍ଯ୍ୟୟର ସଠିକ୍ ମୁକାବିଲା ପାଇଁ ରାଜ୍ୟ ବିପର୍ଯ୍ୟୟ ପ୍ରଶମନ ସଂସ୍ଥା ନାମରେ ଗୋଟିଏ ବିଭାଗ ଆମରାଜ୍ୟରେ କାମ କରୁଥିବା କଥା ଶୁଣାଯାଏ। ମାତ୍ର ଗତବନ୍ୟାରେ ଏହି ବିଭାଗର ଦାୟିତ୍ୱ ଓ କର୍ତ୍ତବ୍ୟ ଅତ୍ୟନ୍ତ ନିରୁତ୍ସାହଜନକ ଥିବା ଜଣାପଡ଼ିଛି। ଚାଷୀର ମା'ବାପ ତା'ର ଗୋସମ୍ପଦ। ବନ୍ୟାପରେ ବିଡ଼ାଏ ନଡ଼ା ଚାଷୀ ପାଖରେ ନାହିଁ। ଅଣ୍ଟାରେ କଉଡ଼ି ନାହିଁ ଦାନା କିଣିବାପାଇଁ। ମୁହଁ ମାରିବାପାଇଁ ପଡ଼ିଆରେ ଘାସନାହିଁ। ଗୋଚର ଜମିରେ ୨-୩ଇଞ୍ଚ ପଟୁ ମାଡ଼ିଯାଇଛି। ମଣିଷର ସିନା ପାଟିଫିଟୁଛି। ତା' କଥା କିଛିଟା

ହେଲେ ସରକାର ଶୁଣୁଛନ୍ତି। ଗୋରୁଗାଈଙ୍କର ତ'ପାଟି ଫିଟୁନି, ତାଙ୍କ ଦୁଃଖ ବୁଝୁଛି କିଏ ? ସରକାରରେ କାହାର ବା ଏ ସମ୍ପର୍କରେ ସର୍ବନିମ୍ନ ତୃଣମୂଳ ଜ୍ଞାନ ଅଛି ? ସବୁଠାରୁ କ୍ଷୋଭର ବିଷୟ ଦେଢ଼ମାସ ବିତି ଯାଇଥିଲେ ମଧ୍ୟ ବନ୍ୟା କ୍ଷୟକ୍ଷତିର ସଠିକ୍ ଆକଳନ କରିବାରେ ସରକାର ବ୍ୟର୍ଥ ହୋଇଛନ୍ତି। ରାଜସ୍ୱ ବିଭାଗ, କୃଷିବିଭାଗ ଓ ଜଳସମ୍ପଦ ବିଭାଗର ତଥ୍ୟମାନଙ୍କ ମଧ୍ୟରେ ତାଳମେଳ ନାହିଁ । ପୁନଃନିର୍ମାଣ ଓ ଥଇଥାନ କାର୍ଯ୍ୟ ମଧ୍ୟ ନିରୁତ୍ସାହଜନକ। ଦୁଇ/ତିନୋଟି ଉଦାହରଣ ଦେଲେ କଥାଟା ସ୍ପଷ୍ଟ ହେବ। ରାଜ୍ୟ ସରକାରଙ୍କର ତଥ୍ୟକୁ ଆଧାର କଲେ ୪୨ଲକ୍ଷ ଲୋକ କ୍ଷତିଗ୍ରସ୍ତ ହୋଇଛନ୍ତି। ଏମାନେ ମୁଖ୍ୟତଃ କୃଷକ ଓ କୃଷିଶ୍ରମିକ। ବନ୍ୟାଞ୍ଚଳରେ ଧାନ, ପାନ,ଆଖୁ ଓ ଝୋଟ ବିଶେଷଭାବେ କ୍ଷତିଗ୍ରସ୍ତ ହୋଇଛି। ସେପ୍ଟେମ୍ବର ୧୯ ତାରିଖଠାରୁ ଅକ୍ଟୋବର ୨୩ ତାରିଖ ପର୍ଯ୍ୟନ୍ତ ଟୋପାଏ ବି ବର୍ଷା ହୋଇନାହିଁ। ବର୍ଷା ହୋଇଥିଲେ ଧାନବିଲରୁ ପଟୁ ଛାଡ଼ି ଯାଇଥିଲେ ବିହନ ମିଳିବାର ଆଶା ଥାନ୍ତା। ବର୍ତ୍ତମାନ ଚାଷୀ ବିଲକୁ ଆଉ ଦା'ନେବାର ଦରକାର ପଡ଼ିବନି। ଏଣେ ଯେଉଁ କେତେକ ଅଞ୍ଚଳରେ ବନ୍ୟାର ପ୍ରକୋପ ନଥିଲା, କେନାଲରେ ୮/୧୦ଦିନ ଭିତରେ ପାଣି ଆସିଥିଲେ ଚାଷୀ ଷୋହଳ ଅଣା ଫସଲ କାଟିଥାନ୍ତେ। ମାତ୍ର କେନାଲ ଘାଇ ମରାମତିରେ ଅହେତୁକ ବିଳମ୍ବ ହେଲା। କୁଶଭଦ୍ରା ବନ୍ୟାରେ ଗୋପ ବ୍ରାଞ୍ଚ କେନାଲର ପ୍ରତାପରୁଦ୍ରପୁର ନିକଟରେ ୧୫୦ଫୁଟ ଘାଇ ହୋଇଥିଲା। ସେପ୍ଟେମ୍ବର ୨୭/୨୮ବେଳକୁ ନଦୀରୁ ବନ୍ୟା କମିଯାଇଥିଲା। ମାତ୍ର ଘାଇ ମରାମତି ଅକ୍ଟୋବର ୨୦ସୁଦ୍ଧା ସମ୍ପୂର୍ଣ୍ଣ ହୋଇପାରିଲା ନାହିଁ। କାରଣ ନେତାଙ୍କ ଚିଠାରେ ପାନଦୋକାନୀ, ଚା ଦୋକାନୀ ଘାଇ ମରାମତି କାମନେଲେ। ଠିକାଦାର ପାଖରେ ସମସ୍ତ ଜରୁରୀକାଳୀନ ଗାଡ଼ି ଘୋଡ଼ା ଉପକରଣ ଥାଏ। ସେମାନେ ୫/୭ଦିନରେ ଘାଇ ପକାଇ ପାରିଥାନ୍ତେ। ଭୁବନେଶ୍ୱର-ପୁରୀ ରାସ୍ତା ମରାମତି ତ ପୁଣି ଅକ୍ଟୋବର ୫ସୁଦ୍ଧା ଶେଷ ହୋଇପାରିଲା। କେନାଲ ଘାଇରେ ରାଜନୈତିକ ଉଦ୍ଦେଶ୍ୟ ରହିଲା। ନେତାମାନେ ବଟି ସଂଗ୍ରହ କରି ଆସନ୍ନ ନିର୍ବାଚନ ପାଇଁ ପାଣ୍ଠି ସଂଗ୍ରହ କରିବାପାଇଁ ବନ୍ୟା ଏକ ସୁଯୋଗ ସୃଷ୍ଟିକଲା। ଚାଷୀ ବା ଚାଷକୁ ମାର ଗୁଲି। ଏଣେ ଧାନବିଲ ଫାଟି ଫଡ଼ା ହୋଇଗଲା। ପୁରୀ, ଖୋର୍ଦ୍ଧା ଓ କଟକ ଜିଲ୍ଲାର ୩ଲକ୍ଷ ହେକ୍ଟର ଜଳସେଚିତ ଭାତହାଣ୍ଡି ଜମିର ସ୍ଥିତି ଏହିପରି। ଅକ୍ଟୋବର ୨୪ତାରିଖରେ ଅସରାଏ ଭଲ ବର୍ଷା ଚାଷୀମନରେ କିଛିଟା ଆଶା ସଞ୍ଚାର କରିଛି। ମାତ୍ର ଫସଲର ଉତ୍ପାଦନ ୬୦ରୁ ୭୦ପ୍ରତିଶତ କମିଯିବା ନିଶ୍ଚିତ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

୧୦ରୁ ୧୫ଲକ୍ଷ ଲୋକ କୃଷିଶ୍ରମିକ। ସେମାନଙ୍କ ପାଇଁ କାମନାହିଁ, ପେଟକୁ ଦାନା ନାହିଁ। ତାଙ୍କର ତ ଖାଦ୍ୟ ମୁଠାକ ଦାଣ୍ଡରୁ ଆସି ହାଣ୍ଡିରେ ପଡ଼େ। ଭୋକ ବିକଳରେ କଲବଲ ହୋଇ ମହାଜନଠାରୁ ପାଞ୍ଚଶହ/ହଜାରେ କରଜ କରି ଦାଦନ ଖଟିବାକୁ ବାହାର ରାଜ୍ୟକୁ ଦୌଡ଼ ଲଗାଇଛନ୍ତି। ଅକ୍ଟୋବର ୧୭ ତାରିଖ ସକାଳ ୯ଟା,୧୦ଟାବେଳେ ଚେନ୍ନାଇ ଷ୍ଟେସନରେ ଓହ୍ଲାଇ ଲେଖକ ଦେଖିବାକୁ ପାଇଲା ପ୍ରାୟ ୫୦୦ ଓଡ଼ିଆ ଯୁବକ (୧୫ବର୍ଷରୁ ୩୫ବର୍ଷ ମଧ୍ୟରେ) ମେଳାମେଳା ହେଉଛନ୍ତି। ସେମାନଙ୍କ ପାଖକୁ ଯାଇ ପଚରା ଉଚରା କରି ଜାଣିବାକୁ ମିଳିଲା ସେମାନେ ଜଗତସିଂହପୁର, କେନ୍ଦ୍ରାପଡ଼ା, ପୁରୀ, କଟକ ଓ ଖୋର୍ଦ୍ଧା ଜିଲ୍ଲାର ଲୋକ। ତାଙ୍କପାଖରେ ଠିକାଦାର ଅଛନ୍ତି। ତାଙ୍କୁ ନେଇ କେଉଁଠି କାମରେ ଲଗାଇବେ। ପେଟ ବିକଳରେ ଗାଁ, ବାପ, ମା, ସ୍ତ୍ରୀପିଲାଙ୍କୁ ପଛରେ ଛାଡ଼ି ଆସିଛନ୍ତି ଦାନା ଯୋଗାଡ଼ ପାଇଁ। ବନ୍ୟାପରେ ପ୍ରାୟ ଲକ୍ଷାଧିକ ଯୁବକଙ୍କ ଦାଦନ କାମ ପାଇଁ ବାହାର ରାଜ୍ୟକୁ ସୁଅ ଛୁଟିଛି। ଆମ ସରକାର କୁହନ୍ତି ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ ଶ୍ରମିକମାନଙ୍କୁ କାମ ଯୋଗାଇ ଦିଆଯିବ। ଏକଥା ପ୍ୟାକେଜ୍‌ରେ ଉଲ୍ଲେଖ ଅଛି। ଏହି ସମୟମଧ୍ୟରେ ରାଜ୍ୟରେ ୩୫ଟି ଅନାହାର ମୃତ୍ୟୁ ଘଟିଥିବା ଖବର ପ୍ରକାଶ ପାଇଛି। ପ୍ୟାକେଜ୍ ସରକାରଙ୍କ ଚମଡ଼ା କୁମ୍ଭୀର ଚମଡ଼ା ଭଳି ଟାଣ। ଯେତେ ଫୋଡ଼ିଲେ ବି କାଟିବ ନାହିଁ। ଅକ୍ଟୋବର ୨୫ତାରିଖ ଦିନ ମିଳିତ ଜାତିସଂଘ ବିଶ୍ୱଖାଦ୍ୟ କାର୍ଯ୍ୟକ୍ରମ 'ଓଡ଼ିଶାର ଗ୍ରାମାଞ୍ଚଳରେ ଖାଦ୍ୟ ନିରାପତ୍ତା' ଆଟଲାସ୍ ଯୋଜନା ଆୟୋଗ ସଭ୍ୟ ଅଭିଜିତ ସେନ୍‌ଙ୍କ ଦ୍ୱାରା ଭୁବନେଶ୍ୱରରେ ଉନ୍ମୋଚିତ ହୋଇଯାଇଛି। ଉତ୍କଟ ଦାରିଦ୍ର୍ୟ, କ୍ଷୁଧା, ଶିଶୁ ମୃତ୍ୟୁହାର ଓ ପୁଷ୍ଟିହୀନତାରେ ଓଡ଼ିଶା ସମଗ୍ର ପୃଥିବୀରେ ଆଗଧାଡ଼ିରେ ଅଛି।*(ଦି ନିୟୁ ଇଣ୍ଡିଆନ୍ ଏକ୍ସପ୍ରେସ ତା.୨୬.୧୦.୦୮ ପ୍ରଥମ ପୃଷ୍ଠା ଓ ଧରିତ୍ରୀ ତା.୨୬.୧୦.୦୮ ଅଷ୍ଟମ ପୃଷ୍ଠା)*। ଓଡ଼ିଶାର ଉପକୂଳ ଜିଲ୍ଲାମାନଙ୍କରେ ଦାରିଦ୍ର୍ୟ ରିପୋର୍ଟର ଶ୍ରୀ ମଣ୍ଡନ କରିଛି। ବର୍ତ୍ତମାନ ବନ୍ୟାପରେ ସେହି ଉପକୂଳ ଜିଲ୍ଲାମାନଙ୍କରେ ବିପନ୍ନ ଲୋକମାନେ ଭୋକ ଉପାସରେ ଯେ କିପରି ତହଳ ବିକଳ ହେଉଛନ୍ତି, ନିଜଆଖିରେ ନ ଦେଖିଲେ ବିଶ୍ୱାସ କରିହେବନାହିଁ। କନ୍ଧମାଳ ଦଙ୍ଗାଗ୍ରସ୍ତ ଅଞ୍ଚଳକୁ ବହୁ ବୁଦ୍ଧିଜୀବୀ, ଶିକ୍ଷାବିତ୍ ଓ ସମାଜସେବୀ ବାରମ୍ବାର ଯାଇ ଗଣ-ମାଧ୍ୟମରେ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଦେବାଦ୍ୱାରା ସରକାରଙ୍କ ଉପରେ ନୈତିକଚାପ ତ' ପଡୁଛି। ଏହି ଶ୍ରେଣୀର ବ୍ୟକ୍ତିବିଶେଷ ଓ ଅନୁଷ୍ଠାନ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳ ଗସ୍ତକରି ସେମାନଙ୍କର ଅନୁଭୂତି ଗଣମାଧ୍ୟମରେ ପ୍ରକାଶ କଲେ ହୁଏତ ସରକାରଙ୍କର କୁମ୍ଭକର୍ଣ୍ଣ ନିଦ୍ରା ଭଙ୍ଗ ହୋଇପାରେ। ରାଜସ୍ୱ ବିଭାଗ, କୃଷି ବିଭାଗ ଅଧିକାରୀମାନେ

ଶୀତତାପ ନିୟନ୍ତ୍ରିତ ଅଟ୍ଟାଳିକାରୁ କେଉଁ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ କ୍ଷୟକ୍ଷତିର ଆକଳନ କରିପାରିବେ ? ସରକାର କୁହନ୍ତି ୫ଲକ୍ଷ ହେକ୍ଟର ଚାଷଜମି କ୍ଷତିଗ୍ରସ୍ତ ହୋଇଛି । ସରକାରୀ ହିସାବରେ ହେକ୍ଟର ପ୍ରତି ହାରାହାରି ଫସଲ ଉତ୍ପାଦନ ୩୦ ହଜାର ଟଙ୍କା ହେଲେ କେବଳ ଫସଲ କ୍ଷତିର ପରିମାଣ ୧୫୦୦କୋଟି ଟଙ୍କା ହେବ । ଏହା ବ୍ୟତୀତ ଗୋସମ୍ପଦ, କୃଷି ଉପକରଣ, ମାଛ, ଗଚ୍ଛିତ ଖାଦ୍ୟଶସ୍ୟ ଯାହାକି ବନ୍ୟା ଯୋଗୁଁ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଇଛି, ଏସବୁକୁ ହିସାବକୁ ନେଲେ ଆଉ ୫୦୦କୋଟି ଟଙ୍କାହେବ । କେବଳ କୃଷିକ୍ଷେତ୍ରରେ କ୍ଷତିର ପରିମାଣ ୨ହଜାର କୋଟି ଟଙ୍କା ହୋଇଥିବା ବେଳେ ସରକାର କୃଷି, ରାସ୍ତାଘାଟ, ବନ୍ଧବାଡ଼ ମରାମତି, ସରକାରୀ କୋଠାବାଡ଼ି ମରାମତି ପାଇଁ କେନ୍ଦ୍ର ସରକାରଙ୍କୁ ମାଗିଛନ୍ତି ମାତ୍ର ୨,୫୦୦କୋଟିର ସାହାଯ୍ୟ । ସେଥିରେ କେନ୍ଦ୍ର ସରକାର ୫୦୦କୋଟି ସାହାଯ୍ୟ ମଞ୍ଜୁର କରିଛନ୍ତି ବୋଲି କେନ୍ଦ୍ର ସରକାରଙ୍କୁ ଦୋଷ ଦେଇଦେଲେ ତ ହବନି । ରାଜ୍ୟ ସରକାର ନିଜଦାୟିତ୍ୱ କେତେ ନିଷ୍ଠାର ସହିତ ସମ୍ପନ୍ନ କରିଛନ୍ତି, ଆଗ ସମୀକ୍ଷା କରନ୍ତୁ ।

ବନ୍ୟାର କ୍ଷୟକ୍ଷତି ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ ପାଇଁ ଆମେ ପୁରୀ, ଖୋର୍ଦ୍ଧା, କଟକ, ଜଗତସିଂହପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାର କେତେକ ଅଞ୍ଚଳ ଗସ୍ତ କରିଥିଲୁ । ପୁରୀଜିଲ୍ଲାର ପିପିଲି ବ୍ଲକ୍‌ର ଆରୁଆ ଗ୍ରାମ । ବନ୍ୟାରେ ଗାଁ ଦାଣ୍ଡରେ ୩ରୁ ୪ଫୁଟ ପାଣି ଠିଆ ହୋଇଗଲା । ସବୁ ମାଟିଘର ଭାଙ୍ଗି ତଳେ ଶୋଇପଡ଼ିଛି । ଗ୍ରାମବାସୀଙ୍କଠାରୁ ବୁଝିଲୁ ବନ୍ୟାଜଳ ସବୁ ପୋଖରୀଉପରେ ୨/୩ଫୁଟ ଚାଲିଲା । କୌଶଲ୍ୟାଗଙ୍ଗ କେନ୍ଦ୍ରୀୟ ମତ୍ସ୍ୟ ଗବେଷଣା କେନ୍ଦ୍ର ଏହି ଗ୍ରାମଠାରୁ ୮/୧୦କିଲୋମିଟର ଦୂର । ଗାଁରେ ଘରେ ଘରେ ପୋଖରୀ । ମାଛଚାଷରୁ ବର୍ଷକ ଘରେ ଖାଇ ପ୍ରାୟ ପ୍ରତି ପରିବାର ୨୦/୩୦ହଜାର ଟଙ୍କା ମାଛ ବିକିଥାନ୍ତି । ସବୁ ମାଛ ଭାସିଗଲେ । ଲୋକେ କୁହନ୍ତି ପ୍ରାୟ ୨ଲକ୍ଷ ଟଙ୍କାର ମାଛ ପଳାଇଲେ । ଗାଁ ଭିତରକୁ ପଶିଲାବେଳକୁ ଚାରିଆଡ଼େ ଦୁର୍ଗନ୍ଧ । ଧାନଗଛ ସଢ଼ି ମାଟିରେ ମିଶିଯାଇଛି । ସେରେ ବି ଧାନ ଚାଷୀ ପାଇବନାହିଁ । କାହିଁକି ସବୁ ଧାନ ସଢ଼ିଗଲା । ପଚାରିବାରୁ ଜଣେ ବୁଢ଼ାଚାଷୀ କହିଲେ (ବୟସ ପ୍ରାୟ୭୦ହେବ), ‘ଆଜ୍ଞା ଏବେ ତ ସାରଖିଆ ଧାନ । ଦୋଓଡ଼ ବାଛି ଚାଷୀ ୟୁରିଆ ପକାଇଥିଲେ । ଗଛ କଅଁଳିଆ ପତ୍ର ଛାଡ଼ି ହୁ ହୁ ବଢ଼ୁଥାଏ ସିନା ଏ ଧାନର ଅଣ୍ଟା ଦମ୍ଭ ନାହିଁ । ପାଣି ସହିପାରିଲା ନାହିଁ । ଶୋଇପଡ଼ିଲା । ‘ଆପଣଙ୍କ ଯୁବାବେଳେ କ’ଣ ଧାନଚାଷ କରୁଥିଲେ । ମୁଁ ପଚାରିଲି, ‘ସେତେବେଳେ

ଭୋତିଆ, ରାଜବଲ୍ଲଭ, ଖଜରା, କେଦାରଗୌରୀ ଭଳି ପାଣିସହଣୀ ଦେଶୀଧାନ ଚାଷ କରୁଥିଲୁ। ୧୦/୧୫ଦିନ ପାଣିରେ ବୁଡ଼ି ରହିଲେ ମଧ୍ୟ ପୁଣି ପିଲ ବାହାରି ଜମି ପୁରି ଯାଉଥିଲା। ଷୋଳଣା ଫସଲ ନହେଲେ ବି ଗୁଣ୍ଠକୁ ୧୦/୧୫ଗୌଣୀ ବାନ୍ଧୁଥିଲୁ। ସରକାରୀ ଧାନ ତ ସାର ନଖାଇଲେ ହବନି। ବଢ଼ି ଖାଇଗଲା'-କେଡ଼େ ସରଳ ଭାଷାରେ ଭାଇଜଣକ ବୁଝାଇଦେଲେ।

ଖୋର୍ଦ୍ଧାଜିଲ୍ଲାର ବାଲିପାଟଣା, ବାଲିଅନ୍ତା ବ୍ଲକ୍‌ର ଅନେକ ଗାଁକୁ ଯାଇ ଚାଷୀମାନଙ୍କୁ ପଚରାଉଚରା କଲୁ। କୁଶଭଦ୍ରା ଘାଇ ଯୋଗୁଁ ବ୍ୟାପକ ଅଞ୍ଚଳରେ ଫସଲ ସତେଯେପରି ଚାଞ୍ଚ ହୋଇଯାଇଛି। ଡାଲୁଅ ତ' ଯାଇଥିଲା। ଏବେ ଖରିଫ ଗଲା। ଚାଷୀ ପାଟିରୁ କଥା ବାହାରୁନାହିଁ। ଧନୁଆ ନଦୀ ବାଲିପାଟଣା, ବାଲିଅନ୍ତା, ନିମାପଡ଼ା ଓ ଗୋପ ବ୍ଲକ୍‌ର ଦୁଃଖ। ବେଙ୍ଗ ମୁତିଲେ ଏଥିରେ ପାଣି। ଏ ବର୍ଷ ତ ନାହିଁ ନଥିବା ବଢ଼ି। ଏହିସବୁ ବ୍ଲକ୍‌ରେ ପ୍ରାୟ ୭୫ପ୍ରତିଶତ ଫସଲ ଭାସିଯାଇଛି। ଗତ ୬୦ବର୍ଷ ହେଲା ବହୁ ସରକାର ବସିଛନ୍ତି। ଦୟାନଦୀ ଜଳ ନିଷ୍କାସନ ପ୍ରତିଶ୍ରୁତି ଦେଇଛନ୍ତି। ମାତ୍ର ଆଜିବି ଏହା ପ୍ରତିଶ୍ରୁତିରେ ହିଁ ରହିଛି। ରାଜ୍ୟ ସରକାରଙ୍କ ବନ୍ୟା ନିୟନ୍ତ୍ରଣ ପ୍ୟାକେଜର ଏହା ଏକ ନମୂନା। ବଳଙ୍ଗାଠାରୁ ସାତଶଙ୍ଖ ପର୍ଯ୍ୟନ୍ତ ବୁଲିଲୁ, ଓଡ଼ିଶାର ପରିବା ବଗିଚା ବଳଙ୍ଗା। ହଜାର ହଜାର ହେକ୍ଟର ବାଇଗଣ, ଲଙ୍କା, ଭେଣ୍ଡି, ଜହ୍ନି ଭଳି ପରିବାକିଆରୀ ସଢ଼ି ଦୁର୍ଗନ୍ଧ। ଗୁଣ୍ଠେ ପରିବାଚାଷରୁ ହଜାର ଟଙ୍କା ପର୍ଯ୍ୟନ୍ତ ରୋଜଗାର କରୁଥିଲେ ଚାଷୀ। ତାଙ୍କର ଭାତହାଣ୍ଡି ଭାଙ୍ଗିଯାଇଛି। ହାତତିଆରି ଫସଲର ବିପର୍ଯ୍ୟୟ ଆଖିରେ ଦେଖି ସହିପାରୁ ନାହାନ୍ତି। ପୋଷନ୍ତା ପୁଅ ଜାଣ ଚାଲିଯାଇଛି। ଛାତି ଫାଟିଯାଉଛି ଚାଷୀକୁଳର। ସରକାରଙ୍କ ପାଖରେ ଏ ହିସାବ ଥିବ ତ ? କେତେ ସହାୟତା ପ୍ୟାକେଜରେ ଅଛି। ହେକ୍ଟରକୁ ୪ହଜାର। ଚାଷୀର ପ୍ରାୟ ଆୟ ହେକ୍ଟରକୁ ୬୦ହଜାର ଉଜୁଡ଼ିଯାଇଛି।

କଟକଜିଲ୍ଲାର ନିଆଳୀ ବ୍ଲକ୍‌ର ଦେବୀ-କନ୍ଦଳ ଦ୍ୱୀପାଞ୍ଚଳ ୫/୬ଟି ଗ୍ରାମପଞ୍ଚାୟତ। ପାଚିଲା ବିଆଳିଧାନ ବିଲରେ ଲହଡ଼ି ମାରୁଛି। ଆଉ ୫/୭ଦିନ ପରେ ଚାଷୀ କାଟି ଖଳାକୁ ଆଣିଥାନ୍ତା। ବିଆଳି ୩ମାସିଆ ଧାନ। ଚାଷୀ ପୁରୁଣା ଚାଷ ଛାଡ଼ିନାହାନ୍ତି, ମାଣକୁ ୫/୬ଭରଣ କାଟନ୍ତି (ପ୍ରାୟ ୧୦/୧୨କ୍ୱିଣ୍ଟାଲ), ତିରୋଟବେଳେ ଭାତ ମିଳି ଯାଉଥିଲା। ବିଲ ଉପରେ ୫/୬ଫୁଟ ପାଣି। ଲୋକେ ଜଳବନ୍ଦୀରେ ୬/୭ଦିନ ରହିଲେ। ପାଣିଛାଡ଼ିଲା ବେଳକୁ ବିଲକୁ ଆଉ ଚାଷୀ ଚାହିଁପାରୁନି। ଆଖିରେ ଲୁହ ଆସିଯାଉଛି। କାଠଯୋଡ଼ି

ନଦୀରେ ଘାଇ, କନ୍ଦଳ ନଦୀରେ ଘାଇ, ପାଣି ପଶିଗଲା। ମୁଣାଭିତରୁ ପାଣି ବାହାରୁଛି କେତକେ ? ଛିଣ୍ଡାନଦୀ ମୁହଁ ବନ୍ଦ କରିଦେଲା ସରକାର, ଫଳରେ ପାଣି ଉଚ୍ଛୁଳି ବନ୍ଧ ଭାଙ୍ଗି ବଢ଼ି ହେଲା।

ଜଗତସିଂହପୁର ଜଳସେଚିତ ଅଞ୍ଚଳ। ଅଚାନକ ବଢ଼ିରେ ଧାନଫସଲ ମାଟିରେ ମିଶିଯାଇଛି। ଏଠାରେ ଚାଷୀ ପେଟୁଆ ବିହନ (ଅଧିକ ଅମଳକ୍ଷମ ଧାନ)ରାସାୟନିକ ସାର ଓ କୀଟନାଶକ ବହୁଳ ବ୍ୟବହାର କରନ୍ତି। ଓଡ଼ିଶା ସରକାର ତ ଗର୍ବକରନ୍ତି ଚଳିତବର୍ଷ ରାସାୟନିକ ସାର ଖର୍ଚ୍ଚ ହେକ୍ଟରପ୍ରତି ୪୫କିଲୋରୁ ବଢ଼ି ୬୦କିଲୋରେ ପହଞ୍ଚିଛି। ରବିଋତୁରେ ଏହା ହେକ୍ଟର ପ୍ରତି ୮୦କିଲୋରୁ ବଢ଼ାଇ ଦିଆଯିବ। ଉତ୍ପାଦନ ବଢ଼ିବ ନା। ଚାଷୀର ବହୁତ ଲାଭ। ଚାଷୀ ଏବେ କାନ୍ଦୁଛି। ମୁଣ୍ଡ ପିଟୁଛି। ବୁଢ଼ା ବାପା ପାଟି କରୁଛି। 'ଆରେ କାନ୍ଦିଲେ କ'ଣ ହେବ। ମୋ କଥା ତ ଶୁଣୁନାହଁ। ୟୁରିଆ ସାର ତୁମ କ୍ଷେତ ଖାଇନାହିଁ, ତୁମକୁ ଖାଇଯିବ।' ଏରସମା ଅଞ୍ଚଳ ଖାଲୁଆ ଜମି। ବହୁ ଦେଶୀ ପାଣି ସହଣୀଧାନ ସେମାନେ ଚାଷ କରୁଥିଲେ। ୨୦/୨୫ ଦିନ ପାଣିରେ ବୁଡ଼ିରହିଲେ ମଧ୍ୟ କନିଆଁ, ପାଟିଆ, ହାବିରା ଧାନ ପୁଣି ବାହାରୁଥିଲା। ରାସାୟନିକ କୃଷି ଏମାନଙ୍କୁ ଇତିହାସ ଗର୍ଭକୁ ପଠାଇଦେଇଛି। ସେଇ ସରକାରୀ ବିହନ। ବିହନ ଧୋଉଥିବୁ, ଗୁଣ ଗାଉଥିବୁ।

ସେପ୍ଟେମ୍ବର ୩୦ତାରିଖରେ 'ସମଦୃଷ୍ଟି'ର ସମ୍ପାଦକ ସୁଧୀର ପଟ୍ଟନାୟକଙ୍କ ସହିତ ରାଜକନିକା ଯାଇଥିଲି। କେନ୍ଦ୍ରାପଡ଼ାର ବହୁ ଅଞ୍ଚଳ, ଆଳି, ରାଜକନିକାରେ ବନ୍ୟା ବିଭୀଷିକା ନିଶ୍ଚିତଭାବେ ଜଣେ ଚାଷୀକୁ ମର୍ମାହତ କରିବ। ଆଖୁପାଣିରେ ଶୋଇପଡ଼ିଛି। କଥାଅଛି ଆଖୁ ପଡ଼ିଲେ ଜଡ଼ା, ନଳିତା କିଆରୀରେ ସଢ଼ି ପଚି ଦୁର୍ଗନ୍ଧ। ଧାନବିଲକୁ ଚାହିଁଲେ ବାଦାମୀ ରଙ୍ଗର କାର୍ପେଟ୍ ଚାରିଆଡ଼େ ବିଛା ହେଲାଭଳି ଦେଖାଯାଉଛି। ଚାଷୀକୁଳର ମନ ମଉଳିଯାଇଛି। ହେଲେ କନିକା ଚାଷୀମାନଙ୍କଠାରୁ ଯାହା ବୁଝିଲୁ ସେମାନେ ଦମ୍ଭ ଧରିଛନ୍ତି। ସେମାନେ ପ୍ରାୟ ଦେଶୀଧାନ ଚାଷ କରନ୍ତି। ସେଠାକାର ପ୍ରତିଷ୍ଠିତ ସଂଗ୍ରାମୀ ତଥା ବିପ୍ଳବୀ ସାହିତ୍ୟିକ ପ୍ରଫୁଲ୍ଲ ଦାସଙ୍କ ସହିତ ତାଙ୍କର ଅଗ୍ନିଯୁଗ ଆଶ୍ରମରେ ବନ୍ୟା ସମ୍ପର୍କରେ ଆଲୋଚନା କଲୁ। ୮୨ବର୍ଷ ବୟସରେ ଯୁବକର ସାହସ। ସେଠାରୁ ବୁଝିଲୁ 'ଦେଶୀଧାନ ଗଛତ ଏବେ ଶୋଇପଡ଼ିଛି। କିନ୍ତୁ ମୂଳରୁ ପିଲ ବାହାରିବ। ହାବିରା, କଳାସୁହା, ପଟିଆ ଧାନର ପାଣିସହଣୀ ଗୁଣ ଖୁବ୍ ବେଶୀ। ଏବେ ବିରି ଛାଟିଦେବେ। ଧାନ ବି ହେବ। ରବି ବି ପାଇବେ।' ସେଠାରେ ଜଳସେଚନ ବ୍ୟବସ୍ଥା ନାହିଁ। ମାତ୍ର ପାଣି

ପତନ ପାଖରେ ଥିବାଯୋଗୁଁ ଜାନୁଆରୀ ମାସକୁ ରବି ଧାନଚାଷ କରିବେ। ନିଜ ନିଜର ପମ୍ପ ସାହାଯ୍ୟରେ ପାଣି ଉଠାଇ ଜମିରେ ମଡ଼ାଇବେ। ଗାନ୍ଧୀବାଦୀ,ସଂଗ୍ରାମୀ ଚରିତ୍ର ତ ପ୍ରଫୁଲ୍ଲ ଆଜ୍ଞା। ପଚାରିଲି ଚାଷୀମାନଙ୍କୁ ସରକାର ଯେଉଁ ସାହାଯ୍ୟ ପ୍ୟାକେଜ ଘୋଷଣା କରିଛନ୍ତି ଆପଣଙ୍କ ପ୍ରତିକ୍ରିୟା କ'ଣ ? 'ଚାଷୀ କ'ଣ ସରକାରଙ୍କର ଅନୁଗ୍ରହର ପାତ୍ର ! ଦୟାର ପାତ୍ର ! ହେକ୍ଟରକୁତ୍ର ୪ହଜାର। କନିକା ଜଳସେଚିତ ନୁହେଁ ଏଠାର ଚାଷୀପାଇଁ ହେକ୍ଟରକୁ ୨ହଜାର। ଚାଷୀ ସରକାରଙ୍କର ଏ' କରୁଣା ଚାହେଁନି। ଚାଷୀର ନ୍ୟାଯ୍ୟଦାବୀ ପ୍ରକୃତ କ୍ଷତିପୂରଣ ସରକାର ଚାଷୀକୁ ଦେବା ସାମ୍ବିଧାନିକ ଦାୟିତ୍ୱ। ଚାଷୀକୁ ସଙ୍ଗଠିତ ହେବାକୁ ପଡ଼ିବ। ଆନ୍ଦୋଳନ ଗଢ଼ିବାକୁ ହେବ। ଏ ସରକାର କନିକା ରଜାଠାରୁ ଅଧିକ ଅତ୍ୟାଚାରୀ ହୋଇଗଲା। ଆମେ ଏହାର ମୁକାବିଲା ପାଇଁ ଲଢ଼େଇ କରିବା...'। ପ୍ରଫୁଲ୍ଲ ଆଜ୍ଞାଙ୍କର କଥାଗୁଡ଼ାକ ମନଭିତରେ ବିଦ୍ରୋହର ନିଆଁ ଜାଳିଦେଲା। ଓଡ଼ିଶାର କୃଷକ ଆନ୍ଦୋଳନକୁ ନୂତନ ଦିଗ୍‌ଦର୍ଶନ, ପ୍ରେରଣା ଦେବ ପ୍ରଫୁଲ୍ଲ ଦାସଙ୍କ ବାର୍ତ୍ତା।

ପାଞ୍ଚଟି ଜିଲ୍ଲାରେ ବନ୍ୟା କ୍ଷୟକ୍ଷତିର ଆଂଶିକ ତଥ୍ୟ ଯାହା ଏଠାରେ ଉଲ୍ଲେଖ କରାଗଲା ସେଥିରୁ ଏତିକି ବୁଝିହେବ ଯେ ୧୯ଟି ଜିଲ୍ଲାର ସମ୍ପୂର୍ଣ୍ଣ ତଥ୍ୟ ସଂଗ୍ରହ କରାଯାଇ ପାରିଥିଲେ ୨୦୦୮ ଓଡ଼ିଶା ବନ୍ୟା ଯେ ଏକ ଜାତୀୟ ବିପତ୍ତି, ଏହା ଦୃଢ଼ଭାବେ ଘୋଷଣା କରାଯାଇ ପାରିଥାନ୍ତା। ସରକାରଙ୍କର ମାନସିକତାର ଅଭାବ, କୃଷିଶ୍ରମିକ, ସାଧାରଣ ଲୋକ,ଗ୍ରାମାଞ୍ଚଳ ଲୋକ ଓ ଚାଷୀମାନଙ୍କ ସମସ୍ୟା ପ୍ରତି ନିରନ୍ତର ଉପେକ୍ଷା ଓଡ଼ିଶା ସରକାରଙ୍କର କୃଷି ପ୍ୟାକେଜର ନିଦର୍ଶନ। ସରକାରଙ୍କର ନ୍ୟାୟ ଓ ବିଚାର ବୋଲି ଯଦି କିଛିଥାନ୍ତା, ଏଥିମଧ୍ୟରେ ବିଧାନସଭାର ସ୍ୱତନ୍ତ୍ର ଅଧିବେଶନ ଡକାଇ ବନ୍ୟା କ୍ଷୟକ୍ଷତି ସମ୍ପର୍କରେ ବିଧାୟକମାନଙ୍କ ସହିତ ବ୍ୟାପକ ଆଲୋଚନା କରିପାରିଥାନ୍ତେ। ସରକାରଙ୍କୁ ଡର। କନ୍ଧମାଳ ଦଙ୍ଗା ଆଲୋଚନା ପରିସରକୁ ଆସିଗଲେ ସରକାରଙ୍କ ସଂଘ ପରିବାର ପ୍ରୀତି ଖୁଲାସା ହୋଇଯିବ।

ବହୁଚର୍ଚ୍ଚିତ କୃଷିପ୍ୟାକେଜ୍ କଥା ଏବେ ଆଲୋଚନା କରାଯାଉ। ବିଜେଡ଼ି-ବିଜେପି ଭାଗୁଆଳି ସରକାରଙ୍କ ନଅବର୍ଷ ରାଜୁତି କାଳରେ କୃଷିପ୍ୟାକେଜ୍ ଘୋଷଣା ପ୍ରାୟ ୯୦୦ଥର ସମସ୍ତପ୍ରକାର ଗଣମାଧ୍ୟମରେ କରାଯାଇଥିବ। ଖବରକାଗଜ ପୁରାପୃଷ୍ଠା ବିଜ୍ଞାପନ, ରେଡ଼ିଓ, ଟିଭିରେ ପ୍ରଚାର, କୃଷକ ସମ୍ପର୍କ ମେଳା, ଅକ୍ଷୟତୃତୀୟାରେ ସରକାର ଅଖିମୁଠି ଅନୁକୁଳ, କୃଷି ପ୍ରଶିକ୍ଷଣ କାର୍ଯ୍ୟକ୍ରମରେ ଏହି ପ୍ରଚାର ପାଇଁ ୨୦୦କୋଟି ଟଙ୍କାରୁ ଅଧିକା ଖର୍ଚ୍ଚ

ହେବଣି । ଓଡ଼ିଶା ଚାଷୀର ସରଳତା, ଅଶିକ୍ଷା ଓ ସଚେତନତା ଅଭାବର ସୁଯୋଗ ନେଇ ସରକାର ପ୍ୟାକେଜ୍ ଘୋଷଣା ଜାରି ରଖିଛନ୍ତି । ସଂକ୍ଷେପରେ କହିଲେ କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ ଓ ଭାଗଚାଷୀର ଏହି ପ୍ୟାକେଜ୍‌ରେ ପଇସାକର ଫାଇଦା ନାହିଁ । ଏହା ବିଶ୍ୱବ୍ୟାଙ୍କ୍ ନିର୍ଦ୍ଦେଶରେ ବଡ଼ ବଡ଼ ଚାଷୀ, ଠିକାଚାଷୀ ଓ କମ୍ପାନୀଚାଷ ପାଇଁ ହିଁ ଉଦ୍ଦିଷ୍ଟ । ଓଡ଼ିଶାରେ ବିଶ୍ୱବ୍ୟାଙ୍କ ଗ୍ରାଣ୍ଟ୍‌ରେ କାମ କରୁଥିବା ଆତ୍ମା (Agriculture Technology Management Agency) ଖୋଲାଖୋଲି ଭାବେ ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା ଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ବିହନ, ରାସାୟନିକ ସାର ଓ କୀଟନାଶକ ଶିଳ୍ପପତିମାନଙ୍କ ବେପାର ପାଇଁ ସିଞ୍ଚା ଜଳସେଚନ, ବୁନ୍ଦା ଜଳସେଚନ ଭଳି କାର୍ଯ୍ୟକ୍ରମଗୁଡ଼ିକ ତ୍ୱରାନ୍ୱିତ କରିବା ଆତ୍ମାର କାମ । ବାହାରୁ ପ୍ୟାକେଜଟିକୁ ପଢ଼ିଗଲେ ଏତେ ସନ୍ଧିକଥା ବୁଝିହେବ ନାହିଁ । ଭିତରକୁ ଯିବାକୁ ହେବ । ସରକାରଙ୍କୁ ସନ୍ଦେହ କରି ନଜାଣିଲେ ବୁଡ଼ିମରିବା ସାର ।

ପ୍ୟାକେଜ୍ ଘୋଷଣାରେ ଆମ ସରକାର ସିଦ୍ଧହସ୍ତ । ସେପ୍ଟେମ୍ବର ୧୯ରେ ବନ୍ୟା । ୩ଦିନ ଯାଏଁ ରିଲିଫ ପହଞ୍ଚି ପାରୁନାହିଁ । ପୁରୀଠାରୁ ଯାଜପୁର ପର୍ଯ୍ୟନ୍ତ ବ୍ୟାପକ ଜଳମଗ୍ନ ଅଞ୍ଚଳରେ ଉଦ୍ଧାରକାର୍ଯ୍ୟ ପାଇଁ ମାତ୍ର ଦୁଇଗୋଟି ହେଲିକପ୍ଟର । ୨୫ତାରିଖ ବେଳକୁ ରାଜଧାନୀରୁ କୃଷି ପ୍ୟାକେଜ୍ ଘୋଷଣା । କୃଷିପ୍ୟାକେଜ୍‌ରେ ମୋଟାମୋଟି କ'ଣ ଅଛି । ଏକ ହେକ୍ଟର ଧାନଫସଲ କ୍ଷତି ପାଇଁ, ଜଳସେଚିତ ଜମିପାଇଁ ୪ହଜାର ଓ ଅଣଜଳସେଚିତ ଜମି ପାଇଁ ୨ହଜାର । ସରକାରଙ୍କ କୃଷିବିଭାଗ ହିସାବ ଅନୁସାରେ ଏକ ହେକ୍ଟର ଅଧିକ ଅମଳକ୍ଷମ ଧାନଚାଷ ପାଇଁ ୨୦ହଜାର ଟଙ୍କା ଖର୍ଚ୍ଚର ଆବଶ୍ୟକତା ଅଛି । ଚାଷୀ ତ କିଛି ପାଇବ । ତେଣୁ ହେକ୍ଟର ପ୍ରତି ଚାଷୀର ଆୟ ହାରାହାରି ୩୦ହଜାର ହୋଇଥାନ୍ତା । ବଢ଼ିରେ ତା' ଟଙ୍କା ଭାସିଗଲା । ସରକାର ୪ହଜାର ବା ୨ହଜାର ଦେବେ ଚାଷୀକୁ ଉପହାସ କରିବା ନୁହେଁ କି ? ବାଲି କାଢ଼ିବାପାଇଁ ପ୍ୟାକେଜରେ ଘୋଷଣା ହେକ୍ଟରକୁ ୬ହଜାର ଟଙ୍କା । ଏକ ହେକ୍ଟର ଜମି ୧୦ହଜାର ବର୍ଗମିଟର । ଯଦି ହାରାହାରି ୨୦ସେ.ମି. ବାଲି ମାଡ଼ିଯାଇଥାଏ ବାଲିର ପରିମାଣ ୨ହଜାର ଘନମିଟର । ଗୋଟିଏ ଟ୍ରାକ୍ଟର ଥରକେ ୩ଘ.ମି. ବାଲି ବୋହିପାରେ । ଏକ ହେକ୍ଟର ପାଇଁ ୬୬୦ଟ୍ରିପ୍ ଦରକାର । ଗୋଟିଏ ଟ୍ରିପ୍‌କୁ ୨୦୦ଟଙ୍କା ହେଲେ ଏକ ହେକ୍ଟର ବାଲି ଉଠାଇବାକୁ ଦରକାର ଏକଲକ୍ଷ ୩୨ହଜାର ଟଙ୍କା । ସରକାର ବାହାଦୁର ଦେବେ ୬ହଜାର । ହାସ୍ୟାସ୍ପଦ ପୁଣି ଚାଷୀକୁ ଉପହାସ । ଏବେ ପୁଣି ସରକାର କହିଲେଣି ବାଲି ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ କଢ଼ାଯିବ । ଏହା

■ *ଆଉ କେତେ ବିଷ ପିଇଲେ ଚେତିବା... !*

ପୁଣି ଏକ ଅବାସ୍ତବ ପ୍ରସ୍ତାବ। ବାଲି ଉଠାଇ ଜମିଠାରୁ ବହୁଦୂରକୁ ନେବାକୁ ହେବ। ଆମରାଜ୍ୟରେ ନିଶ୍ଚିତ କର୍ମନିଯୁକ୍ତି ଯୋଜନାରେ ଯେପରି ବ୍ୟାପକ ଜାଲିଆତି, ଚାଷୀ କ'ଣ ଏହି ଯୋଜନା ଉପରେ ଭରସା କରିପାରିବ? ରବିଚାଷ ପାଇଁ ବିହନରେ ୫୦ପ୍ରତିଶତ ରିହାତି ଘୋଷଣା କରାଯାଇଛି। ଜାତୀୟ ଖାଦ୍ୟ ନିରାପତ୍ତା ମିଶନ ଓ ଜାତୀୟ ଉଦ୍ୟାନ ମିଶନ ମାଧ୍ୟମରେ ୨୦୦୭ଠାରୁ ଆମ ରାଜ୍ୟର ସମସ୍ତ ଜିଲ୍ଲାରେ ଏହା କାର୍ଯ୍ୟକାରୀ ହେଉଛି। ବିହନରେ ୫୦ପ୍ରତିଶତ ସବ୍‌ସିଡ଼ି ଏହି ଯୋଜନା ପରିସରଭୁକ୍ତ। ମାମୁଁଘର ବଳକୁ ନେଇ ପଟେ କଲାଭଳି କେନ୍ଦ୍ର ସରକାରଙ୍କ ଯୋଜନାର ପ୍ରୋତ୍ସାହନକୁ ବନ୍ୟା ପ୍ୟାକେଜ୍‌ରେ ଦର୍ଶାଇ ଦେଲେ। ଓଡ଼ିଶା ସରକାର ନିଜେ କ'ଣ ଚାଷୀପାଇଁ ଖର୍ଚ୍ଚ କରିବେ ସ୍ପଷ୍ଟ କରିନାହାନ୍ତି। ରହସ୍ୟ ଆହୁରି ଅଛି। ବର୍ତ୍ତମାନ ବଜାରରେ ଦେଶୀ ମୁଗବିହନ୍ ୨୫ଟଙ୍କା କିଲୋ, ବିରି ୨୨ଟଙ୍କା କିଲୋ। ସରକାରୀ ମୁଗବିହନ ୩୨ଟଙ୍କା କିଲୋ, ଚାଷୀକୁ ମିଳିବ ୩୦ଟଙ୍କା କିଲୋ, ବିରି ବିହନ ସରକାରୀ ଦର ୨୭ଟଙ୍କା କିଲୋ, ଚାଷୀର ମୂଲ୍ୟ ୩୦ ଟଙ୍କା କିଲୋ। ସେହିପରି ଚିନାବାଦାମ ବିହନ ବଜାରଦର ୨୦୦୦ ଟଙ୍କା କ୍ୱିଣ୍ଟାଲ। ସରକାରୀ ଧାର୍ଯ୍ୟ ଦର ୨୫୦୦ ଟଙ୍କା କ୍ୱିଣ୍ଟାଲ, ଚାଷୀପାଇଁ ରିହାତି ଦର ୨୩୦୦ ଟଙ୍କା କ୍ୱିଣ୍ଟାଲ। ଏବେ ସରକାର ଚାଷୀକୁ ବୁଝାଇପାରିବେ କି ଚାଷୀକୁ ବିହନରେ ରିହାତି କେତେ ପ୍ରତିଶତ? ଆମ ମୁରୁଖହିସାବରେ ଏହି ରିହାତି ମୋଟାମୋଟି ୧୦ପ୍ରତିଶତରୁ କମ୍। ସରକାରଙ୍କ ପ୍ୟାକେଜ ୫୦ପ୍ରତିଶତ କ'ଣ ଖାଲି ଧୂଆଁବାଣ। ଆମେ ଚାଷୀକୁଳ ଜାଣୁଛୁ ସରକାରଙ୍କର ଆମ ସହିତ ଧୋକ୍କାବାଜ। ଆମ ରାଜ୍ୟରେ କଥାଅଛି 'ନଙ୍ଗ ପଡ଼ିଥିବ ଯେତିକିବେଳେ, ବିଧାଏମାରିବ ସେତିକିବେଳେ'। ଆମ ସରକାର ଚାଷୀ ଓ ଚାଷକୁ ଧ୍ୱଂସ କରିବା ପାଇଁ ସତେଯେପରି ତତ୍ପର! କୃଷି ଯନ୍ତ୍ରପାତିରେ ରିହାତି କମ୍ପାନୀମାନଙ୍କ ସ୍ୱାର୍ଥପାଇଁ ଉଦ୍ଦିଷ୍ଟ। ୪୨ଲକ୍ଷ ବନ୍ୟା ବିପନ୍ନଙ୍କ ମଧ୍ୟରୁ ୮୦ପ୍ରତିଶତ କ୍ଷୁଦ୍ର ଓ ନାମମାତ୍ର ଚାଷୀ ଏବଂ ଭାଗଚାଷୀ। ରାଜସ୍ୱ ବିଭାଗ କ୍ଷୟକ୍ଷତିର ବିବରଣୀ ସଂଗ୍ରହପାଇଁ ଜମିର ପଟ୍ଟାପାଉତି ଦରକାର କରନ୍ତି। ଜମି ମାଲିକ ଚାଷ ନକରି ମଧ୍ୟ ସରକାରୀ ଖାତା ଖତିୟାନ୍‌ରେ ଚାଷୀ। ପଟ୍ଟାପାଉତି ଦେଖାଇ କିଛିହେଲେ ଟଙ୍କା ପାଇବ। ହେଲେ ତା'ହଳିଆ ଯେ ସାଆନ୍ତର ବିଲ ଚାଷକରି ଆଶା କରିଥିଲା ସାଆନ୍ତକୁ ଅଧାଭାଗ ଦେଇକି ୪/୬ମାସ ପାଇଁ ଖାଦ୍ୟଶସ୍ୟ ପାଇପାରିବ। ତା'ର ସବୁ ଗଲା। ସରକାରୀ କାଗଜାତ୍‌ରେ ତା'ର ତ' ନାଁ-ଗାଁ ନାହିଁ। ସେ କି ସାହାଯ୍ୟ ପାଇଲା? ଆନ୍ଧ୍ରପ୍ରଦେଶରେ ନିକଟରେ ଭାଗଚାଷୀମାନଙ୍କୁ ଚିହ୍ନଟ କରି ସେମାନଙ୍କୁ ସାହାଯ୍ୟ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି। ପଶ୍ଚିମବଙ୍ଗ, ତ୍ରିପୁରା

ଓ କେରଳରେ ଭାଗଚାଷୀକୁ ସ୍ୱୀକୃତି ମିଳିଛି । ଆମରାଜ୍ୟରେ ଚାଷ ବାସ୍ତବରେ ଭାଗଚାଷୀ ହାତରେ । ମାତ୍ର ସାଆନ୍ତିଆ ସରକାର ତ' । ସେମାନଙ୍କ ଆଡ଼କୁ ଆଖି ନାହିଁ ।

ଚାଷୀମାନଙ୍କ ମଧ୍ୟରୁ ଅଧିକାଂଶ ଗରିବ ଚାଷୀଙ୍କ ଘର ଭାସିଯାଇଛି ବା ଶୋଇପଡ଼ିଛି । ସେମାନଙ୍କୁ ଘରଭଙ୍ଗା ସାହାଯ୍ୟ ଦିଆଯିବା କଥା ଶୁଣାଯାଉଛି । ହେଲେ ବହୁ ଗରିବ ହରିଜନ ଅଛନ୍ତି ଯେଉଁମାନେ ସରକାରୀ ଅନାବାଦୀ ବା ରକ୍ଷିତ ଜମିରେ ଘରକରି ଦୀର୍ଘଦିନ ହେଲା ବସବାସ କରୁଛନ୍ତି । ରାଜସ୍ୱବିଭାଗକୁ ଜବରଦଖଲ ଖଜଣା ବି ଦିଅନ୍ତି । ମାତ୍ର ରାଜସ୍ୱ ନିରୀକ୍ଷକମାନେ ସେମାନଙ୍କ ଘରଭଙ୍ଗା ବିବରଣୀ ସଂଗ୍ରହ କରୁନାହାନ୍ତି । କାହିଁକି ନା ତାଙ୍କ ନାମରେ ଘରଡ଼ିହ ପଟ୍ଟା ନାହିଁ । ଲୋକପ୍ରିୟ ସରକାରଙ୍କର ଦରିଦ୍ର, ଭୂମିହୀନଙ୍କ ପ୍ରତି ଏ ନିଷ୍ଠୁରତାର ପରିସମାପ୍ତି କେବେ ହେବ ?

ରାଜ୍ୟ ସରକାର ୭ଲକ୍ଷ ଇନ୍ଦିରାଆବାସ ପାଇଁ କେନ୍ଦ୍ର ସରକାର ନିକଟରେ ଦାବୀ କରିଛନ୍ତି । କିନ୍ତୁ ମହାବାତ୍ୟାରେ କେନ୍ଦ୍ର ସରକାର ମଞ୍ଜୁର କରିଥିବା ଇନ୍ଦିରା ଆବାସ ମଧ୍ୟରୁ ୫୦ ପ୍ରତିଶତ ଘର ସରକାରୀ କାଗଜପତ୍ରରେ ଥିଲେ ମଧ୍ୟ ବାସ୍ତବତା ଏହିକି ଯେ ସେଭଳି ଘରଗୁଡ଼ିକ ଚୋରି ହୋଇଯାଇଛି । ନିକଟରେ ନିମାପଡ଼ା ଓ ଗୋପ ବ୍ଲକ୍‌ରେ ସେଇଭଳି ୨ହଜାର ଇନ୍ଦିରା ଆବାସ ଚୋରୀ ଖୋଦ୍ ରାଜ୍ୟ ପଞ୍ଚାୟତିରାଜ ବିଭାଗ ଧରିଛନ୍ତି । ଦୁର୍ନୀତି ନିବାରଣ ବିଭାଗକୁ ତଦନ୍ତ ଦାୟିତ୍ୱ ଦିଆଯାଇଛି । ୪କୋଟି ଟଙ୍କାର ଦୁର୍ନୀତି । ପୁରୀ, ଖୋର୍ଦ୍ଧା, କଟକ ଓ ଜଗତସିଂହପୁର ଜିଲ୍ଲାରେ ବ୍ୟାପକ ଇନ୍ଦିରା ଆବାସ ଦୁର୍ନୀତି ଖବର ନିୟମିତ ପ୍ରକାଶ ପାଏ । ନିର୍ମଳ ଭାବମୂର୍ତ୍ତି ସରକାରଙ୍କ ଅମଳରେ କ'ଣ ଦୁର୍ନୀତି ହୋଇପାରେ ? ତେଣୁ କେନ୍ଦ୍ର ସରକାର ଇନ୍ଦିରା ଆବାସ ପାଇଁ ଅର୍ଥ ବରାଦ କଲାବେଳେ ଏହାର ସଦ୍‌ବିନିଯୋଗ ପାଇଁ ଧ୍ୟାନଦେବା ଜରୁରୀ । ପ୍ରଶାସନିକ ଅଧିକାରୀ ଓ ନିର୍ବାଚିତ ଲୋକ ପ୍ରତିନିଧିଙ୍କ ସହଭାଗିତାରେ ହିଁ ଏଭଳି ବଡ଼ ବଡ଼ ଘୋଟାଲା ହୋଇପାରୁଛି ।

କୃଷି ବିପର୍ଯ୍ୟସ୍ତ ଓ କୃଷକ ବିପନ୍ନ–ଏକଥା ଆମେ କିଛିଟା ଜାଣୁଛେ । ମାତ୍ର ସରକାରଙ୍କର ପ୍ୟାକେଜ୍ କୃଷକ ଓ କୃଷି ଶ୍ରମିକଙ୍କୁ ଭୁଆଁ ବୁଲାଇବ ଯଦି ଏହା ଲୋକଲୋଚନକୁ ନଆସେ କିମ୍ବା ରାଜ୍ୟର ସଚେତନ ନାଗରିକ, ବୁଦ୍ଧିଜୀବୀ ଚାଷୀପାଇଁ ଅଣ୍ଟା ନଭିଡ଼ନ୍ତି; ଆଗକୁ ଚାଷୀ ଦାଣ୍ଡର ଭିକାରୀ ହୋଇଯିବ । କିଲୋ ୨ଟଙ୍କିଆ ଚାଉଳ ହିଁ ତା'ର ଭରସା ହେବ ।

ଯଦି ରାଜ୍ୟସରକାର ପ୍ରକୃତରେ କୃଷକ କଲ୍ୟାଣ ପାଇଁ ଆଗ୍ରହୀ ଥାନ୍ତି, ତେବେ ବନ୍ୟାବିପନ୍ନ ଚାଷୀଙ୍କ ପାଇଁ ନିମ୍ନ ପ୍ରସ୍ତାବଗୁଡ଼ିକ କାର୍ଯ୍ୟକାରୀ ହେବା ଜରୁରୀ ।

୧) ଭାଗଚାଷୀଙ୍କୁ ଚିହ୍ନଟକରି ଫସଲ କ୍ଷତିପାଇଁ ସାହାଯ୍ୟ ସେଇମାନଙ୍କୁ ହିଁ ଦିଅନ୍ତୁ।

୨) ୨୦୦୮-୦୯ବର୍ଷ ପାଇଁ ଖଜଣା ଓ ଜଳକର ଛାଡ଼ କରନ୍ତୁ।

୩) ହେକ୍ଟର ପ୍ରତି ଧାନଜମି ପାଇଁ ୧୦ହଜାର ଟଙ୍କା, ଆଖୁପାଇଁ ୨୦ହଜାର ଟଙ୍କା ଏବଂ ନଳିତା ପାଇଁ ୧୫ ହଜାର ଟଙ୍କା ସାହାଯ୍ୟ ଧାର୍ଯ୍ୟ କରନ୍ତୁ।

୪) ୪୦ବର୍ଷ ତଳେ ବନ୍ୟା, ବାତ୍ୟାରେ ଚାଷୀମାନଙ୍କୁ ଋଣ ଓ ମାଗଣା ବିହନ ଦିଆଯାଇ ପାରୁଥିଲା। ବର୍ତ୍ତମାନ ସରକାର ଭାଗଚାଷୀମାନଙ୍କ ପାଇଁ ଗ୍ୟାରେଣ୍ଟର ରହି ପ୍ରତି ଭାଗଚାଷୀଙ୍କୁ ୧୦ହଜାର ଟଙ୍କା କୃଷିଋଣ ଓ ରବିଚାଷ ପାଇଁ ସମସ୍ତ ଶ୍ରେଣୀର ଚାଷୀଙ୍କୁ ଆବଶ୍ୟକ ବିହନ ମାଗଣା ଯୋଗାଇ ଦିଅନ୍ତୁ।

୫) ଦେଶୀଧାନ ବିହନ ଉତ୍ପାଦନ ଓ ବିତରଣ ଉପରେ ଗୁରୁତ୍ୱ ଦିଆଯାଉ।

୬) ପ୍ରତ୍ୟେକ ଚାଷୀ ପରିବାରକୁ ବଳଦ ସହାୟତା ଦିଆଯାଉ। ଟ୍ରାକ୍ଟର, ପାୱାର ଟିଲର, ସବ୍‌ସିଡ଼୍ ଭଳି ଚାଷୀ ବଳଦ କିଣିଲେ ଶତକଡ଼ା ୭୫ରିହାତି ମିଳୁ।

୭) ମାଛପୋଖରୀ ଥିବା ଚାଷୀମାନଙ୍କୁ ହେକ୍ଟର ପ୍ରତି ୪୦ହଜାର ଟଙ୍କା ସାହାଯ୍ୟ ମଧ କମ୍ ହେବ।

୮) ବନ୍ୟାର ସ୍ଥାୟୀ ପ୍ରତିକାର ପାଇଁ ବିଶେଷଜ୍ଞ, କୃଷକ ଓ ସମାଜକର୍ମୀଙ୍କୁ ନେଇ ମିଳିତ କମିଟିର ମତାମତ ନିଆଯାଉ।

୯) କ୍ଷୟକ୍ଷତିର ସଠିକ ଆକଳନ ପାଇଁ ସର୍ବଦଳୀୟ କମିଟି ଗଠନ କରାଯାଇ ପୂର୍ଣ୍ଣାଙ୍ଗ ମାନଚିତ୍ର ପ୍ରସ୍ତୁତ କରାଯାଉ। ବିପନ୍ନ ଚାଷୀମାନଙ୍କ ମଧ୍ୟରୁ କେତେକଙ୍କୁ ଏଥିରେ ସଭ୍ୟ ଭାବେ ନିଆଯାଉ।

୧୦) କ୍ଷୁଦ୍ରଚାଷୀ ଓ ଭାଗଚାଷୀଙ୍କ କଲ୍ୟାଣ ଲକ୍ଷ୍ୟରେ ଅନ୍ୟାନ୍ୟ ପ୍ରସ୍ତାବ ମଧ ଗ୍ରହଣ କରାଯାଇପାରେ।



# ଆମ ଭାତହାଣ୍ଡିର ମାଲିକ ହେବ ମନ୍‌ସାଣ୍ଟୋ

'ଅନ୍ନ ବିହୁନେ ହଂସା ହାନି - ଯଜ୍ଞ ସାଧିବି କାହା ଘେନି' । ଆମ ଶରୀରକୁ ଅନ୍ନମୟୀ ପିଣ୍ଡ କୁହାଯାଏ । ଆମେ ବଞ୍ଚିବା ଓ କାମ କରିବା ପାଇଁ ଦରକାର ହେଉଥିବା ଶକ୍ତିର ୬୦ରୁ ୭୦ପ୍ରତିଶତ ଭାତରୁ ପାଇଥାଉ । କେବଳ ଏସିଆ ମହାଦେଶ ପୃଥିବୀର ମୋଟ ଧାନ ଉତ୍ପାଦନର ଏକାନବେ ପ୍ରତିଶତ ଅମଳ କରିଥାଏ ଏବଂ ଏହି ଶସ୍ୟରୁ ନବେ ପ୍ରତିଶତ ଖାଦ୍ୟପାଇଁ ବ୍ୟବହାର କରିଥାଏ । ଭାତରେ ଥିଆମିନ୍, ରିବୋଫ୍ଲାବିନ୍, ନିୟାସିନ୍, ଲୌହ ଓ ଦସ୍ତା ଲବଣ ଭଳି ପୁଷ୍ଟିକର ଖାଦ୍ୟ ଉପାଦାନ ଥାଏ । ଭାତରେ ଯଥେଷ୍ଟ ତନ୍ତୁଜାତୀୟ ଖାଦ୍ୟ ଥିବାଯୋଗୁଁ ସହଜରେ ହଜମ ହୋଇ ଖାଇବାର ମାତ୍ର କେତେ ମିନିଟପରେ ଶରୀରକୁ ଶକ୍ତି ଯୋଗାଇଥାଏ ଓ ଆମକୁ କାର୍ଯ୍ୟକ୍ଷମ କରାଏ ।

ଦକ୍ଷିଣ ଓ ପୂର୍ବଭାରତ ପାଇଁ ଭାତ କହିଲେ ସବୁକିଛି ବୁଝାଏ । ଆନ୍ଧ୍ର, ତାମିଲନାଡୁ, କେରଳ, କର୍ଣ୍ଣାଟକ, ଓଡ଼ିଶା, ପଶ୍ଚିମବଙ୍ଗ ଓ ଉତ୍ତରପୂର୍ବ ରାଜ୍ୟମାନଙ୍କରେ ଚାଉଳରୁ ଭାତ ଓ ବହୁ ପ୍ରକାରର ପିଠାପଣା, ଚୁଡ଼ା, ମୁଢ଼ୀ, ଖଇ ଓ ଛତୁ ତିଆରି କରି ଖାଦ୍ୟପାଇଁ ବ୍ୟବହାର କରିଥାନ୍ତି । ଗତ ୧୦,୦୦୦ ବର୍ଷ ଧରି ଆମର ଗ୍ରାମାଞ୍ଚଳ ଜୀବିକା, ଖାଦ୍ୟ, ଜୀବନ ଶୈଳୀ ଓ ସଂସ୍କୃତି ଧାନ ସହିତ ଏପରି ଭାବେ ଜଡ଼ିତ ଯେ ଆମେ ଏହି ମୂଲ୍ୟବାନ ଶସ୍ୟଠାରୁ ନିଜକୁ କେବେ ଅଲଗା କରି ଭାବିପାରିବା ନାହିଁ । ନୂଆଖାଇ, ବିହୁ, ପୋଙ୍ଗଲ ଓ ମକର ଭଳି ପର୍ବପର୍ବାଣି ଗୁଡ଼ିକ ଧାନ ଓ କୃଷି ସଂସ୍କୃତିର ଜୀବନ୍ତ ପ୍ରତୀକ । ଆମେ ଓଡ଼ିଶାବାସୀ ଗର୍ବକରୁ - କୋରାପୁଟର ଜୟପୁର ଧାନର ଜନ୍ମସ୍ଥାନ ।

ଆମ ଦେଶରେ ଏକ ଲକ୍ଷରୁ ଅଧିକ କିସମର ଧାନ ବିହନ ଥିଲା । ଓଡ଼ିଶା ଓ ଛତିଶଗଡ଼ରେ ୫୦ହଜାରରୁ ଅଧିକ କିସମର ଦେଶୀଧାନ ବିହନ ଚାଷୀମାନେ ବ୍ୟବହାର କରୁଥିଲେ । ଚାଷୀ ବିହନର ମାଲିକ ଥିଲା । ଓଳିଆରୁ ବିହନ, ହଳ ଲଙ୍ଗଳ ଓ ଗୁହାଳର

ଖତକୁ ଆଧାର କରି ଆମ ଚାଷୀ ନିରନ୍ତର କୃଷିକୁ ଜୀବିକା କରିଥିଲା । ସ୍ୱାବଲମ୍ବୀ ଓ ସ୍ୱାଭିମାନୀ ମଧ୍ୟ ଥିଲା । ଗାଁର ଭାଗବତ ଘରେ ଚାଷବାସ କଥା ଆଲୋଚନା କରି ଫସଲ ଉତାରୁଥିଲା ।

କୃଷି ବିଜ୍ଞାନୀ, ତଥାକଥିତ ସହରି ଅର୍ଥନୀତିଜ୍ଞ ଓ ରାଜନେତାମାନେ କଥା କଥାକେ 'ଅଧିକ ଉତ୍ପାଦନ' କଥା କୁହନ୍ତି ସେମାନେ ପୋଥି ବାଇଗଣ ତୋଳା ଜାଣନ୍ତି - ବାଡ଼ି ବାଇଗଣ ନୁହେଁ । ଅନେକେ ହୁଏତ ଜାଣିନଥିବେ ଯେ ଅତୀତରେ ଆମ ଦେଶରେ ହେକ୍ଟର ପ୍ରତି ୧୨-୧୮ମେଟ୍ରିକଟନ୍ ଧାନ ଉତ୍ପାଦନ ହେଉଥିବାର ତାମ୍ରଫଳକ ମାନ ତାମିଲନାଡ୍ରୁର ପଞ୍ଜୁର, ଆରମଟ୍, କୋଇମ୍ବାଟୁର ଅଞ୍ଚଳରୁ ମିଳିଛି । ୧୮୦୩ ମସିହାରେ ଆଲ୍ଲାହାବାଦ ଅଞ୍ଚଳରେ ହେକ୍ଟରକୁ ୭.୫ଟନ ଏବଂ ୧୮୦୭ରେ କୋଇମ୍ବାଟୁରରେ ୧୩ଟନ ଧାନ ଉତ୍ପାଦନ ହେଉଥିବା ତଥ୍ୟ ବ୍ରିଟିଶ ଗେଜେଟରୁ ମିଳେ । (ସ୍ଥାନୀୟ ମାପ, ଓଜନକୁ ଏଠାରେ ଟନକୁ ବଦଳକରି ହିସାବ ଦିଆଯାଇଛି) । (ଦି ଅର୍ଗାନିକ ସୋର୍ସ ବୁକ - ଯେ.କେ.ବଜାଜ ଏବଂ ଏମ୍.ଡି. ଶ୍ରୀନିବାସ) । ୧୯୭୫ମସିହାର ଆର. ଏଚ୍. ରିଚାରିଆଙ୍କ (ପୃଥିବୀ ପ୍ରସିଦ୍ଧ ଧାନ ବିଜ୍ଞାନୀ) ଏକ ସର୍ବେକ୍ଷଣରୁ ଜଣାଯାଏ ବସ୍ତରର ମୋକଡ଼ା ଧାନ ବିହନ ହେକ୍ଟରକୁ ୪.୭ମେଟ୍ରିକ ଟନ ଓ ରାୟପୁରର ଚିନାର କିସମ ଧାନ (ବାସନା) ହେକ୍ଟରକୁ ୪.୪ ମେଟ୍ରିକଟନ ଅମଳ ଦେଉଥିଲା । (କ୍ରାଇସିସ୍ ଇନ୍ ମଡ଼ର୍ଣ୍ଣ ସାଇନ୍ସ - ୧୯୮୬- ଆର.ଏଚ୍.ରିଚାରିଆ)

୧୮୮୯ ମସିହାରେ ଜନ୍ ଅଗଷ୍ଟସ ଭୋଲକର ଏବଂ ୧୯୧୩-୩୦ ପର୍ଯ୍ୟନ୍ତ ସାର ଆଲ୍‌ଫ୍ରେଡ୍ ହାୱାର୍ଡ଼ଙ୍କୁ ବିଲାତ ସରକାର ଭାରତ ପଠାଇଥିଲେ ଭାରତୀୟ କୃଷକଙ୍କୁ ରାସାୟନିକ କୃଷି ପ୍ରତି ଆକୃଷ୍ଟ କରିବା ପାଇଁ । ସେମାନେ ଦୀର୍ଘଦିନ ଭାରତରେ କୃଷକମାନଙ୍କ ସହିତ ରହି ଯେଉଁ ବିବରଣୀ ବିଲାତ ସରକାରଙ୍କୁ ଦେଲେ ତାହା ଏହିପରି - ଭାରତର ନିରନ୍ତର କୃଷିର ଉଦାହରଣ ଚିନ୍ ଛଡ଼ା ଅନ୍ୟ କୌଣସି ଦେଶରେ ଥିବା ଆମେ ଜାଣିନାହୁଁ । ଭାରତୀୟ କୃଷକ ଘରେ ସାଇତି ରଖିଥିବା ବିହନ, ହଳ, ଲଙ୍ଗଳ ଓ ବାଡ଼ି ଘରୁ ମିଳୁଥିବା ଖତ ଜମିରେ ପ୍ରୟୋଗ କରି ଯେଉଁ ପରିମାଣର ଫସଲ ଉତ୍ପାଦନ କରନ୍ତି ତାହା ପୃଥିବୀରେ ବିରଳ । ସେମାନଙ୍କୁ ଚାଷ ଶିଖାଇବା ଧୃଷ୍ଟତା ହେବ । ସେମାନେ ଜଣେ ଜଣେ କୃଷିବିଜ୍ଞାନୀ କହିଲେ ଅତ୍ୟୁକ୍ତି ହେବନାହିଁ । ୧୦ହଜାର ବର୍ଷ ଧରି ଏକା ଜମିରେ ଚାଷ ହୋଇଆସୁଥିଲେ ମଧ୍ୟ ଜମିର ଉର୍ବରତା ଅକ୍ଷୁର୍ଣ୍ଣ ଅଛି । (ରିପୋର୍ଟ ଅନ ଇମ୍ପ୍ରୁଭମେଣ୍ଟ ଅଫ୍ ଇଣ୍ଡିଆନ ଏଗ୍ରିକଲଚର- ଲଣ୍ଡନ, ଜନ ଅଗଷ୍ଟସ ଭୋଲକର, ୧୮୯୩ ଏବଂ ଏଗ୍ରିକଲଚରାଲ ଟେଷ୍ଟାମେଣ୍ଟ - ସାର ଆଲଫ୍ରେଡ଼ ହାୱାର୍ଡ଼, ୧୯୪୦)

ଅଧିକ ଉତ୍ପାଦନ ବାହାନାରେ ୧୯୬୬ ମସିହାରୁ ଆମ ଦେଶରେ ସବୁଜ ବିପ୍ଳବ ପ୍ରଚଳନ କରାଗଲା। ୧୯୬୭ ମସିହାରେ ଆନ୍ତର୍ଜାତିକ ଧାନବର୍ଷ ପାଳନ ଅବସରରେ କୁହୁକ ବିହନ ଆଇ.ଆର.-୮ ଚାଷୀମାନଙ୍କ ପାଖରେ ପହଞ୍ଚିଲା। ଦେଶୀ ଚାଷ ପରିବର୍ତ୍ତେ ରାସାୟନିକ କୃଷିର ମୂଳଦୁଆ ପଡ଼ିଲା। ପ୍ରଥମେ ବର୍ଷେ ୨ବର୍ଷ ମାଗଣା ସାର, କୀଟନାଶକ ଓ ବିହନ ଚାଷୀ ଦୁଆରେ ପହଞ୍ଚିଲା। ଶତ କଥାରେ ସତୀ ଭୁଲେ। ସବୁଜ ବିପ୍ଳବର ଜନକ ବୋଲାଉଥିବା ଡଃ.ଏମ୍.ଏସ୍. ସ୍ୱାମୀନାଥନ ଚାଷୀକୁ ଲାଭର ଲୋଭ ଦେଖାଇ ଦେଲେ। ଚାଷୀ ରାସାୟନିକ ଚାଷକୁ ଆଦରି ଦେଶୀ ଚାଷକୁ ହାତଛଡ଼ା କରିଦେଲା। ପୁରାଣ ଯୁଗରୁ ପ୍ରଚଳିତ ଗୁଣମାନ ଅକ୍ଷୁର୍ଣ୍ଣଥିବା ଦେଶୀଧାନ ବିହନ ଚାହୁଁ ଚାହୁଁ ୫/୧୦ବର୍ଷ ଭିତରେ ବୁଡ଼ିଗଲା। ଗୁହାଳରୁ ବଳଦ ବିଦା କରି ଚାଷୀ ଜର୍ସିଗାଈ ବାନ୍ଧିଲା। ଟ୍ରାକ୍ଟରର ରାଜୁତି ଚାଲିଲା। ସବୁ ଫସଲ ଭୁଲି ଚାଷୀ ବର୍ଷକୁ ୨/୩ ଥର ଏକା ଜମିରେ ଧାନଚାଷ ହିଁ କରିଚାଲିଲା। ୨/୩ ବର୍ଷ ପରେ ଆଉ ମାଗଣା କଥା ନାହିଁ। ଅଧିକ ଅମଳକ୍ଷମ ଶଙ୍କର ଧାନ ବିହନ ଅଳ୍ପାୟୁଷ ହୋଇଥିବାରୁ ପ୍ରତି ୨/୩ବର୍ଷରେ ନୂଆ ବିହନ ବଜାରରୁ କିଣିଲା। ରାସାୟନିକ ସାର ଓ କୀଟନାଶକ ପାଇଁ ବଜାରକୁ ଗଲା। କରଜିଆ ହୋଇଗଲା। ପ୍ରଥମ ୫/୧୦ବର୍ଷ କିଛି ଅଧିକ ଉତ୍ପାଦନ ହେଲା ସତ। ମାତ୍ର ଅଧିକରୁ ଅଧିକ ସାର ଓ କୀଟନାଶକ ଦରକାର ହେଲା। ଅମଳ କମିବା ଆରମ୍ଭ ହୋଇଗଲା ୧୯୮୦ ଠାରୁ। ଏଣେ ମାଟି ଖପରା ପାଲଟିଲା। ଜିଆ, ଅଣୁଜୀବ, ଉପକାରୀ କୀଟପତଙ୍ଗ, ମହୁମାଛି, ପକ୍ଷୀ, ଗେଣ୍ଡା, କଙ୍କଡ଼ାଙ୍କ ବଂଶ ନିର୍ମୂଳ ହେଲା। ମାଟି, ପାଣି, ପବନ, ଖାଦ୍ୟ ଦ୍ରବ୍ୟ ସବୁଥିରେ ନଂପୁଷକତା, ଶିଶୁ ଓ ମାଆ ଅକାଳ ମୃତ୍ୟୁ ଭଳି ସ୍ୱାସ୍ଥ୍ୟ ସମସ୍ୟା ମୁଣ୍ଡ ଟେକିଲା। (ସାଇଲେଣ୍ଟ ସ୍ପ୍ରିଙ୍ଗ- ଖ୍ୟାସେଲ କାର - ସନ୍ ଏବଂ ଆଉଆର ସ୍ଟୋଲନ୍ ଫିଉଚର - ଥିଓ କାଲବର୍ଣ୍ଣ ଓ ଅନ୍ୟମାନେ)।

୨୦୦୫ର ଭାରତର ଇକୋନୋମିକ ସର୍ଭେ ହିସାବରୁ ଜଣାଯାଏ ଏବେ ଧାନର ଉତ୍ପାଦନ ହାର ହେକ୍ଟର ପ୍ରତି ମାତ୍ର ୨.୧ ମେଟ୍ରିକ ଟନ ଏବଂ ଓଡ଼ିଶାରେ ଏହି ହାର ୧.୨ଟନ। କୃଷି ଅଭିବୃଦ୍ଧି ହାର ଦ୍ରୁତ ହ୍ରାସ ପାଇ ୧୦ମ ପଞ୍ଚବାର୍ଷିକ ଯୋଜନା କାଳରେ ୧.୮ରେ ପହଞ୍ଚିଛି। କୃଷିକ୍ଷେତ୍ରରେ ବିପର୍ଯ୍ୟୟ ହେତୁ କେବଳ ୨୦୦୪-୦୫ ବର୍ଷ ୭୦ହଜାର ଚାଷୀ ଆତ୍ମହତ୍ୟା କରିଛନ୍ତି। (ଡ୍ରାଫ୍ଟ ନ୍ୟାସନାଲ ପଲିସି ଫର ଫାର୍ମରସ, ଏପ୍ରିଲ ୧୩, ୨୦୦୬) ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ କୃଷିବିଜ୍ଞାନୀମାନଙ୍କ ପାଖରେ ଆଜି ଚାଷୀପାଇଁ କିଛି ଉତ୍ତର ନାହିଁ। ଗତବର୍ଷ (୨୦୦୬) ହାଇଦ୍ରାବାଦ ବିଜ୍ଞାନ କଂଗ୍ରେସରେ ନିଜେ ପ୍ରଧାନ ମନ୍ତ୍ରୀ ସ୍ୱୀକାର କରିଛନ୍ତି 'ସବୁଜ ବିପ୍ଳବର ଉଷ୍ମତା ଆଉ ନାହିଁ। କୃଷି

କ୍ଷେତ୍ରରେ ଜୈବ ପ୍ରଯୁକ୍ତି ବିଦ୍ୟା ପ୍ରୟୋଗ କରିବା ବେଳ ପହଞ୍ଚିଛି।' ରାଷ୍ଟ୍ରପତି ଓ ସ୍ୱାମୀନାଥନ୍ ଦ୍ୱିତୀୟ ସବୁଜ ବିପ୍ଳବ ବା ଜିନ୍ ବିପ୍ଳବ କଥା ଦୃଢ଼ତାର ସହିତ ପ୍ରଚାର କରି ଚାଲିଛନ୍ତି। ଜି.ଏମ୍. ବିହନ ଯୋଗୁଁ ଯେ ଶସ୍ୟଶ୍ୟାମଳା ଭାରତ ୪୦/୫୦ବର୍ଷ ଭିତରେ ବିରାଟ ମରୁଭୂମି ପାଲଟିଯିବ ଏ ହିସାବ ଆମ ରାଷ୍ଟ୍ରପତିଙ୍କ ପାଖେ ଅଛି ତ ?

ଏଣିକି ଭାତ ପାଇଁ ଜେନେଟିକ ମଡ଼ିଫାଏଡ୍ ଧାନ ବିହନ ଚାଷ କରିବାକୁ ପଡ଼ିବ। ବିଜ୍ଞାନାଗାରରେ ପ୍ରସ୍ତୁତ ବିହନ ପ୍ରଚଳନ କରାଯିବ। ପୁଣି କୁହୁଡ଼ି ପହଁରିବ ଚାଷୀ। ସରକାର ତ ମା, ବାପା। ସେ ଯେ ପୁଣି ଏକ ଇନ୍ଦ୍ରଜାଲ ଘେରେଇ ଚାଷୀକୁ ମାରିବା ପାଇଁ ବିଦେଶୀ କମ୍ପାନୀ ସହିତ ଚୁକ୍ତି କରିଛନ୍ତି। ବିଚରା ଚାଷୀ ଏକଥା ଜାଣିବ ବା କେମିତି ? ଏ ନାଟକର ଅଭିନୟକାରୀମାନେ ହେଲେ ବିଶ୍ୱବ୍ୟାଙ୍କ, ବିଶ୍ୱ ବାଣିଜ୍ୟ ସଙ୍ଗଠନ, ଫୋର୍ଡ଼ ଫାଉଣ୍ଡେସନ, ରକ୍ଫେଲର ଫାଉଣ୍ଡେସନ, ମାନିଲାଠାରେ ଥିବା ଆନ୍ତର୍ଜାତିକ ଧାନ ଗବେଷଣା କେନ୍ଦ୍ର ଏବଂ ଭାରତର ଜାତୀୟ କୃଷି କମିସନର ଚେୟାରମ୍ୟାନ ଡଃ ଏମ୍.ଏସ୍. ସ୍ୱାମୀନାଥନ। ମନ୍ସାଣ୍ଟୋ ବହୁରାଷ୍ଟ୍ରୀୟ କମ୍ପାନୀ ଏ ନାଟକର ମୁଖ୍ୟ ଖଳନାୟକ। ସାମ୍ରାଜ୍ୟବାଦୀ ଆମେରିକାର ତାଗିଦ୍ ମନ୍ସାଣ୍ଟୋ ଓ ଏହାର ବନ୍ଧୁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଭାରତରେ ଯେପରି ବିହନ, ରାସାୟନିକ ସାର ଓ କୀଟନାଶକ ବିଷ ବେପାର ବିନା ବାଧାରେ କରିପାରନ୍ତି ସେ ଦାୟିତ୍ୱ ଭାରତ ସରକାରଙ୍କର। ୨୦୦୬ ବୁଶ୍‌ଙ୍କ ଭାରତ ଗସ୍ତ ସମୟରେ ଏପରି ଏକ ଗୁପ୍ତ ଚୁକ୍ତି ଅନୁଷ୍ଠିତ ହୋଇଥିବାର ଖବର ଅଛି। ୧୯୯୧ ଠାରୁ ଆମଦେଶରେ ଜଗତୀକରଣ, ଉଦାରୀକରଣ ଓ ବିଶ୍ୱକରଣ ନୀତି ଜାରି ହେବା ଦିନରୁ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ପାଇଁ ଆମ ବଜାର ଖୋଲି ଦିଆଯାଇଛି। ଭାରତର ବିହନ ବଜାର ଦଖଲକରିବା, ଠିକାଚାଷ ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ସହାୟତା କରି ପ୍ରଚୁର ଲାଭ କରିବା ପାଇଁ ଏହିସବୁ କମ୍ପାନୀମାନଙ୍କୁ ନାଲି ଗାଲିଚା ବିଛାଇ ସ୍ୱାଗତ କରୁଛନ୍ତି ଆମ କେନ୍ଦ୍ର ଓ ରାଜ୍ୟ ସରକାରମାନେ। କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କ ସର୍ବନାଶ ପାଇଁ ଯେପରି ସରକାରଙ୍କୁ ରାତିରେ ନିଦ ନାହିଁ।

ଏ ମନ୍ସାଣ୍ଟୋର ଅସଲ ରୂପ କ'ଣ ? ମନ୍ସାଣ୍ଟୋ ଆମେରିକାର ଗୋଟିଏ ଅତ୍ୟନ୍ତ ବିତ୍ତଶାଳୀ ବହୁରାଷ୍ଟ୍ରୀୟ କମ୍ପାନୀ। ରାସାୟନିକ ସାର, କୀଟନାଶକ ବିଷ, ବିହନ, କୃଷିଜାତ ଦ୍ରବ୍ୟ ଓ ଏବଂ ଔଷଧ ଏହାର ବ୍ୟବସାୟ। ଏହାର ବାର୍ଷିକ ବ୍ୟବସାୟ ପାଞ୍ଚ ଲକ୍ଷ କୋଟିରୁ ଅଧିକ। ପୃଥିବୀର ୧୨୦ ଦେଶରେ ଏହି କମ୍ପାନୀ ବ୍ୟବସାୟ କରେ। ଭିଏତ୍‌ନାମ ଯୁଦ୍ଧରେ ଏଜେଣ୍ଟ ଅରେଞ୍ଜ ଯୋଗୁଁ ଯେଉଁ ନରସଂହାର ଓ କୃଷିକ୍ଷେତ୍ର ଧ୍ୱଂସ ହୋଇଥିଲା, ସେହି

ଉତ୍କଟ ବିଷର ମାଲିକ ମନ୍‌ସାଣ୍ଟୋ। ଆଜି କୃଷିକ୍ଷେତ୍ରରେ ଘାସ ମାରିବାକୁ ଯେଉଁ ୨,୪ଡି ଓ ୨,୪,୫ଟି ବ୍ୟବହାର କରାଯାଉଛି ଏଗୁଡ଼ିକ ଏଜେଣ୍ଟ ଅରେଞ୍ଜରୁ ପ୍ରସ୍ତୁତ ବିଷ। କପା, ସୋୟାବିନ, ମକା, ସୋରିଷ(କ୍ୟାନୋଲା), ଆଳୁ, ବାଇଗଣ, ବିଲାତିବାଇଗଣ ଏବଂ ୨୦୦୧ଠାରୁ ଧାନର ଜେନେଟିକ ମଡ଼ିଫାଏଡ଼ ବିହନ ବିକିବା ଏବଂ ସେଥିପାଇଁ ଆବଶ୍ୟକୀୟ ରାସାୟନିକ ସାର, କୀଟନାଶକ ବିକି ପ୍ରଚୁର ଲାଭ କରିବା ଏହାର ମୂଳମନ୍ତ୍ର। 'କହିବୋଲି ପାରିବ ଯେ ପଚା ଚିଙ୍ଗୁଡ଼ି ବିକିବ ସେ'। ଚାଷୀଙ୍କୁ ମନାଇବା ପାଇଁ ଏହା ବର୍ଷକୁ ୧୦ହଜାର କୋଟି ଡଲାର ଖର୍ଚ୍ଚ କରେ। ଆମ ଦେଶର କୃଷି ବୈଜ୍ଞାନିକ, ପ୍ରଶାସକ ଓ ରାଜନେତାମାନେ ସେଥିରେ ଭାଗିଦାରୀ ଥିବା କଥା ଏଡ଼େଇ ଦିଆଯାଇ ନପାରେ। ୟୁରୋପ ମହାଦେଶରେ ଜେନେଟିକ୍ ମଡ଼ିଫାଏଡ୍ ଖାଦ୍ୟ ଗୋରୁଗାଈ ଏପରିକି ଘୁସୁରୀକୁ ମଧ୍ୟ ଦିଆଯାଏ ନାହିଁ। ୟୁରୋପୀୟ ୟୁନିୟନ ମନସାଣ୍ଟୋକୁ ବାସନ୍ଦ କରିଛି। ମନ୍‌ସାଣ୍ଟୋର ହତ୍ୟାକାରୀ ବିହନ ଓ ଖାଦ୍ୟ ୟୁରୋପୀୟ ଦେଶମାନଙ୍କୁ ପ୍ରବେଶ ନିଷିଦ୍ଧ। ରାସାୟନିକ ବିଷ ବ୍ୟବସାୟ କରି ମଧ୍ୟ ମନସାଣ୍ଟୋ ତାହା ମିଛ କୁହେ 'ଆମେ ରାସାୟନିକ କମ୍ପାନୀ ନୁହଁ। ଆମେ ଗୋଟିଏ ଜୀବ ବିଜ୍ଞାନ କମ୍ପାନୀ'। ପୃଥିବୀରେ ୫ଟି ବଡ଼ ବଡ଼ କମ୍ପାନୀ ଜେନେଟିକ ମଡ଼ିଫାଏଡ୍ ବିହନ ଓ ଆନୁସଙ୍ଗିକ ଦ୍ରବ୍ୟ ବଜାର ନିୟନ୍ତ୍ରଣ କରନ୍ତି। ସେଥିରେ ମନ୍‌ସାଣ୍ଟୋର ଅଂଶ ୮୦ପ୍ରତିଶତ (ଡ଼େନ୍ ଇନ୍‌କରପୋରେଟେଡ୍-୧୯୯୬)। ଏହି କମ୍ପାନୀମାନେ ୨୦୦୪ ମସିହାରେ କେବଳ ଜି.ଏମ୍. ବିହନ ୫୧ହଜାର ୧ଶହ ୨୦କୋଟି ଟଙ୍କାର କାରବାର କରିଛନ୍ତି। (ଇଟିସି ଗ୍ରୁପ ଗ୍ଲୋବାଲ ସିଡ୍ ଇଣ୍ଡଷ୍ଟ୍ରି କନ୍‌ସେଣ୍ଟ୍ରେସନ ରିପୋର୍ଟ-୨୦୦୫)। ୧୯୯୭ରେ ଏହି କମ୍ପାନୀମାନେ ୧ଲକ୍ଷ ୨୧ହଜାର ୬୭ କୋଟି ଟଙ୍କାର ବିଷ (କୀଟନାଶକ) ବେପାର କରିଛନ୍ତି। (ରୁରାଲ ଏଗ୍ରିକଲଚରାଲ ଫାଉଣ୍ଡେସନ ଇଣ୍ଟର ନ୍ୟାସନାଲ - ଆନୁଆଲ ରିପୋର୍ଟ - ୧୯୯୮) କୀଟନାଶକ ଯୋଗୁଁ ଆମ ଦେଶରେ ପ୍ରତିବର୍ଷ ୪୦,୦୦୦ ଚାଷୀ ଓ ଖାଉଟୀ ମୃତ୍ୟୁବରଣ କରିଥାନ୍ତି ଏବଂ ଆଉ ଏକଲକ୍ଷ ଷାଠିଏ ହଜାର ଲୋକ କୀଟନାଶକ ଜନିତ ଏକାଧିକ ଦୁରାରୋଗ୍ୟ ରୋଗରେ ଆକ୍ରାନ୍ତ ହୋଇଥାନ୍ତି। (ଇଣ୍ଟରନ୍ୟାସନାଲ ଡେଭେଲପମେଣ୍ଟ ରିସର୍ଚ୍ଚ ସେଣ୍ଟର, କାନାଡ଼ା)। ଫୋର୍ଡ଼ ଫାଉଣ୍ଡେସନର ଆର୍ଥିକ ସହାୟତାରେ ୨୦୦୬ ମସିହା ଠାରୁ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିସନ ଦେଶସାରା ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ ମାନଙ୍କରେ 'ଗ୍ରାମ୍ୟ କୃଷକ ସେବାରେ ରାସାୟନିକ ବିଦ୍ୟା' ଶୀର୍ଷକ କର୍ମଶାଳା କରି ଜି.ଏମ୍. ବିହନ, ରାସାୟନିକ ସାର ଓ କୀଟନାଶକର ବହୁଳ ପ୍ରୟୋଗ ପାଇଁ ପ୍ରଚାର ଆରମ୍ଭ କରିଛନ୍ତି।

■ *ଆଉ କେତେ ବିଷ ପିଇଲେ ଚେତିବା... !*

ମନ୍‌ସାଣ୍ଟୋ ୨୦୦୨ଠାରୁ ଭାରତରେ ଜି.ଏମ୍. ଧାନ ବିହନ କ୍ଷେତ୍ର ପରୀକ୍ଷା ଆରମ୍ଭ କରିଛି । ଭାରତ ସରକାରଙ୍କ କୃଷି ଅନୁସନ୍ଧାନ ପରିଷଦ, କୃଷି ବିଶ୍ୱବିଦ୍ୟାଳୟ ଏବଂ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ଗୁଡ଼ିକରେ ବର୍ତ୍ତମାନ ମନ୍‌ସାଣ୍ଟୋର ପ୍ରବେଶ ସହଜ ହୋଇଯାଇଛି । କଟକ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ରରେ ଦୁଇ କିସମର ଜି.ଏମ୍. ଧାନର ପରୀକ୍ଷା ୨୦୦୨ଠାରୁ ଆରମ୍ଭ ହୋଇଛି । ଏହି କେନ୍ଦ୍ରର ନିର୍ଦ୍ଦେଶକ ମାତା ପ୍ରସାଦ ପାଣ୍ଡେ ଓଡ଼ିଶାରେ ଧାନ ଉତ୍ପାଦନ ବଢ଼ାଇବା ପାଇଁ ଜୈବ ପ୍ରଯୁକ୍ତି ବିଦ୍ୟା ଦ୍ୱାରା ପ୍ରସ୍ତୁତ ବିହନ ପ୍ରଚଳନ ପାଇଁ ଗୁରୁତ୍ୱ ଦେଇଛନ୍ତି । (ନିଉ ଇଣ୍ଡିଆନ୍ ଏକ୍ସପ୍ରେସ୍ - ନଭେମ୍ବର ୯, ୨୦୦୬) । ଏଥି ସହିତ ରାଜ୍ୟର ୨୦୦୦ ବଛା ବଛା ଚାଷୀଙ୍କୁ ପ୍ରତ୍ୟେକଙ୍କୁ ୨୦୦୦ ଟଙ୍କାର ଗୋଟିଏ ଗୋଟିଏ ପ୍ୟାକେଟ ମାଗଣା ଯୋଗାଇ ଦିଆଯାଇଥିବା ଜଣାପଡ଼ିଛି । ସେଥିରେ ଜି.ଏମ୍. ଧାନ ବିହନ ଥିବାର ଆଶଙ୍କା କରାଯାଏ । ଆମ କୃଷିମନ୍ତ୍ରୀ ଓ ରାଜ୍ୟ କୃଷି ବିଭାଗ ଏହାର ପ୍ରକୃତ ତଥ୍ୟ ସାଧାରଣରେ ପ୍ରକାଶ କରିବା ଜରୁରୀ । ଜାତୀୟ କୃଷକ କମିସନର ଚୁଡ଼ାନ୍ତ ନୀତିରେ ଡଃ ଏମ୍.ଏସ. ସ୍ୱାମୀନାଥନ୍ ମଧ୍ୟ ଜି.ଏମ୍. ଧାନ ବିହନ କଥା ଉଲ୍ଲେଖ କରିଛନ୍ତି ।

ଭାରତରେ ମନ୍‌ସାଣ୍ଟୋର ଯୋଡ଼ିଦାର ମାହିକୋ (ମହାରାଷ୍ଟ୍ର ହାଇବ୍ରିଡ଼ ସିଡ଼ କମ୍ପାନୀ) ଅତ୍ୟନ୍ତ ଗୋପନୀୟ ଭାବେ ୨୦୦୬ ଖରିଫ ବର୍ଷ ହରିୟାନା, ଛତିଶଗଡ଼, ତାମିଲନାଡୁ, ଉତ୍ତର ପ୍ରଦେଶ, କର୍ଣ୍ଣାଟକ ଏପରିକି ପଶ୍ଚିମ ବଙ୍ଗରେ ଗୁଣସୂତ୍ର ଧାନ ବିହନର କ୍ଷେତ୍ର ପରୀକ୍ଷା ଆରମ୍ଭ କରିଥିଲା । ଏଥିପାଇଁ ଜେନେଟିକ ଇଞ୍ଜିନିୟରିଂ ଆପ୍ରୁଭାଲ କମିଟିର ସ୍ୱୀକୃତି ମଧ୍ୟ ହାସଲ ନକରି ଜୁଲାଇ ୧, ୨୦୦୬ ସୁଦ୍ଧା ୧୦ଟି ସ୍ଥାନରେ ଏପରି ପରୀକ୍ଷା ଆରମ୍ଭକଲା । ଗ୍ରାମପଞ୍ଚାୟତ, ଜିଲ୍ଲା ପ୍ରଶାସନ କିମ୍ବା ରାଜ୍ୟ କୃଷି ବିଭାଗ ଏହାର ଟେର ମଧ୍ୟ ପାଇଲେ ନାହିଁ । ବିରୋଧ ଆଶଙ୍କା କରି ଜୁଲାଇ ୧୧, ୨୦୦୬ରେ ଜିଇଏସି ଠାରୁ ଅନୁମତି ପତ୍ର ହାସଲ କଲା । ଜି.ଏମ୍.କୁ ବିରୋଧ କରୁଥିବା ବ୍ୟକ୍ତି ଓ ଅନୁଷ୍ଠାନ ମାନେ ଉଚ୍ଚତମ ନ୍ୟାୟାଳୟ ସହାୟତାରେ ନଭେମ୍ବର ୮, ୨୦୦୬ରେ ମାହିକୋ ଗୁପ୍ତ ଭାବେ ପରୀକ୍ଷା କରୁଥିବା ସ୍ଥାନ ମାନଙ୍କର ସୂଚନା ପାଇଲେ । ସେତବେଳକୁ ହରିୟାନାର ରାମପୁରା ଗ୍ରାମରେ ବିଟିଧାନ କ୍ଷେତକୁ ପୋଡ଼ିଜାଳି ନଷ୍ଟ କରିଦେଇଥିଲେ ।

**ଜି.ଏମ୍. ଧାନ ଚାଷ ବିରୁଦ୍ଧରେ କରାଯାଇଥିବା କାର୍ଯ୍ୟର ବିବରଣୀ :-**

ଅକ୍ଟୋବର ୨୦୦୬- କର୍ଣ୍ଣଲ ଜିଲ୍ଲାର ରାମପୁରା ଗ୍ରାମରେ ଜି.ଏମ. ଧାନ କ୍ଷେତକୁ ଚାଷୀମାନେ ନଷ୍ଟ କରିଦେଇଛନ୍ତି । ନଭେମ୍ବର ୫, ୨୦୦୬ - ଉତ୍ତରପ୍ରଦେଶ ଗୋରଖପୁର

ଜିଲ୍ଲାର ରୁଦ୍ରପୁର ଗ୍ରାମରେ ବି.ଟି.ଧାନ ପରୀକ୍ଷା କରୁଥିବା ମାହିକୋ ବିରୁଦ୍ଧରେ ସେହିସ୍ଥାନର ଗ୍ରାମପଞ୍ଚାୟତ ଏକ ଫୌଜଦାରୀ ମୋକଦ୍ଦମା ରୁଜୁ କରିଛି।

ନଭେମ୍ବର ୧୦, ୨୦୦୬ - ତାମିଲନାଡୁ କୃଷକ ପ୍ରତିଷ୍ଠାନ କୋଇମ୍ବାଟୁରର ରାମନାଥପୁରମ୍ ଗ୍ରାମରେ ବି.ଟି.ଧାନ କ୍ଷେତକୁ ସମ୍ପୂର୍ଣ୍ଣ ନଷ୍ଟ କରିଦେଲେ। ତାମିଲନାଡୁ ସରକାର ସୂଚନା ପାଇ ଜି.ଏମ୍. ଧାନ ଚାଷ ନିଷିଦ୍ଧ କରିବା ପାଇଁ ଏକ ଆଇନ ପ୍ରଣୟନ କରିବାକୁ ସ୍ଥିର କରିଛନ୍ତି।

ନଭେମ୍ବର ୨୩, ୨୦୦୬ - ଛତିଶଗଡ଼ କୃଷିମନ୍ତ୍ରୀଙ୍କ ଉପସ୍ଥିତିରେ ରାମପୁରରେ କ୍ଷେତ୍ର ପରୀକ୍ଷା ହେଉଥିବା ଜି.ଏମ୍. ଧାନ କ୍ଷେତକୁ ଚାଷୀମାନେ ନଷ୍ଟକରି ଦେଲେ।

(ଡାଉନ ଟୁ ଆର୍ଥ, ଜାନୁଆରୀ ୩୧, ୨୦୦୭)

ସଚେତନ କୃଷକ, ଖାଉଟୀ, କୃଷି ଅନୁଷ୍ଠାନ ଓ କେତେକ ସ୍ୱାଧୀନ ବୈଜ୍ଞାନିକଙ୍କ ପ୍ରବଳ ବିରୋଧ ଯୋଗୁଁ ଡିସେମ୍ବର ୧୩, ୨୦୦୬ରେ ଜେନେଟିକ ଇଞ୍ଜିନିୟରିଂ ଆପ୍ରୁଭାଲ କମିଟି ଏକ ଆଦେଶନାମା ଦେଇଛନ୍ତି କି ଏଣିକି ବିହନ କମ୍ପାନୀମାନେ ଗ୍ରାମ ପଞ୍ଚାୟତ ଓ କୃଷି ବିଶ୍ୱବିଦ୍ୟାଳୟର ମଞ୍ଜୁରି ନନେଇ ଜେନେଟିକ ମଡ଼ିଫାଏଡ୍ ଧାନ ବିହନ କ୍ଷେତ୍ର ପରୀକ୍ଷା କରିପାରିବେ ନାହିଁ। ମାତ୍ର ଏପରି ଆଦେଶନାମାର ପ୍ରକୃତ ରହସ୍ୟ ଅନ୍ୟ ସ୍ଥାନରେ। ରିଲାଏନ୍ସ, ୟୁନିଲିଭର, ମହୀନ୍ଦ୍ରା ଆଣ୍ଡ ମହୀନ୍ଦ୍ରା ଭଳି କେତେକ ଦେଶୀ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀ ଇଉରୋପୀୟ ଦେଶମାନଙ୍କୁ  ବାସୁମତୀ ଚାଉଳ ରପ୍ତାନୀ କରି ବେଶ୍ ପଇସା କମାନ୍ତି। ଜି.ଏମ୍. ଧାନ ଚାଷ ବାସୁମତି ଜମି ପାଖରେ କରାଗଲେ ବାସୁମତୀ ସଂକ୍ରମିତ ହେବ। ଏପରି ସଂକ୍ରମିତ ଚାଉଳ ସେଦେଶର ଖାଉଟୀମାନେ କିଣିବେ ନାହିଁ। ବ୍ୟବସାୟ ବନ୍ଦ ହୋଇଯିବ। ତେଣୁ ଏବେ ଭାରତ ସରକାର ଏକ ସଂଶୋଧିତ ଆଦେଶନାମା ଦେଇଛନ୍ତି କି ବାସୁମତୀ ଚାଷ ଅଞ୍ଚଳରେ ଜି.ଏମ୍. ଧାନ ଚାଷ ହୋଇପାରିବ ନାହିଁ। ବିଦେଶର ଖାଉଟୀମାନେ ଦାମିକା ଲୋକ ତ, ଭାରତୀୟ ବେପାରୀମାନେ ବି ଦାମିକା। ବେପାରୀଙ୍କ ସ୍ୱାର୍ଥ ସୁରକ୍ଷା ଓ ସେ ଦେଶର ଖାଉଟୀଙ୍କ ସ୍ୱାସ୍ଥ୍ୟ ରକ୍ଷା ଆମ ସରକାରଙ୍କ କାମ୍ୟ। ଭାରତୀୟ ଖାଉଟୀ ବିଷ ଖାଇଲେ ଚଳିବ।

ମନସାଣ୍ଟୋ - ମାହିକୋଙ୍କୁ ବେଶୀଦିନ ଏପରି ବିରୋଧର ସାମନା କରିବାକୁ ପଡ଼ିବ ନାହିଁ। ସଂସଦର ବିହନ ବିଲ୍ - ୨୦୦୪ ଆଲୋଚନା ହୋଇ ଆଇନ ଅପେକ୍ଷାରେ ଅଛି। ଏହା ଆଇନରେ ପରିଣତ ହେଲେ ବିହନ କମ୍ପାନୀମାନେ ଅବାଧରେ ଆମ ଦେଶରେ

ଜି.ଏମ୍. ବିହନ କ୍ଷେତ୍ର ପରୀକ୍ଷା ଓ ବେପାର କରିବାର ବ୍ୟବସ୍ଥା ଏହି ବିଲରେ ଅଛି। ଅନ୍ୟ ପକ୍ଷରେ ଆମ ଚାଷୀ ଦେଶୀ ବିହନ ଓଲିଆରେ ରଖି ପଡ଼ିଶା ଚାଷୀକୁ ବିହନ ବଦଳ କଲେ, ପୋଲିସ୍ ଚାଷୀର ଘରେ ପଶି ତାକୁ ଗିରଫ କରିବ ଏବଂ ଏହି ଦୋଷ ପାଇଁ ୬ମାସ ଜେଲ ଓ ୫୦୦୦ ଟଙ୍କା ଜୋରିମାନା ବ୍ୟବସ୍ଥା କରିପାରିବ। ଗୋଟିଏ ଗୁଳିରେ ଦୁଇଟି ଶିକାର। ଚାଷୀର ପାରମ୍ପରିକ ଦେଶୀ ବିହନକୁ ନକଲି ବିହନ (ସ୍ପୁରିଅସ୍)ଭାବେ ବିଚାର କରାଯିବ। ଚାଷୀର ବିହନ ଅଧିକାର ଲୋପ ହେବ। ବିଦେଶୀ କମ୍ପାନୀମାନଙ୍କର ପୁଷମାସ ହେବ। ଆମ ଜନ କଲ୍ୟାଣକାରୀ ସରକାରଙ୍କର କି ବିଦେଶ ପ୍ରୀତି। ଝିଣ୍ଟିକା ମାରି ବଣି ପୋଷିବା ପାଇଁ ଯେପରି ସରକାରଙ୍କୁ ନିଦ ନାହିଁ।

ସଂସଦରେ ୨୦୦୪ ବିହନ ବିଲ ପାଇଁ ମାମୁଲି ବିରୋଧ ହୋଇପାରେ। ମାତ୍ର ମନ୍‌ସାଣ୍ଟୋ ପାଉଣା ବ୍ୟବସ୍ଥା କଲେ ସମର୍ଥନ ସହଜ ହୋଇଯିବ। ଖୁବ୍ ବେଶୀରେ ୨୦୦୦ କୋଟି ଟଙ୍କା ଏ କାମ ପାଇଁ ଦରକାର ପଡ଼ିପାରେ। ମନ୍‌ସାଣ୍ଟୋ ପାଇଁ ଏହି ରକମ ଧାନ ହେଁସରୁ କାଉ ଥଣ୍ଟେ ନେବା ସଙ୍ଗେ ସମାନ।

ପ୍ରଶ୍ନ ଉଠିବା ସ୍ୱାଭାବିକ - ଗୁଣସୂତ୍ର ପରିବର୍ତ୍ତିତ ଧାନ ବିହନକୁ ଆମେ କାହିଁକି ବିରୋଧ କରିବା ? ଖାଲିଧାନ ନୁହେଁ ଏଥିସହିତ ମକା, ସୋୟାବିନ, ଆଳୁ, ବାଇଗଣ, ବିଲାତିବାଇଗଣର ଜି.ଏମ୍. ବିହନ କ୍ଷୁଦ୍ର ଓ ନାମମାତ୍ର ଚାଷୀର ସର୍ବନାଶ ପାଇଁ ଉଦ୍ଦିଷ୍ଟ। ଏହା ଏଡ଼ସ୍ ଠାରୁ ଆହୁରି ଭୟଙ୍କର। ଜି.ଏମ୍.ବିହନ ପାର୍ଶ୍ୱବର୍ତ୍ତୀ କ୍ଷେତ୍ରର ଦେଶୀ ବିହନକୁ ସଂକ୍ରମିତ କରିବ। ଜି.ଏମ୍. କ୍ଷେତରେ ତ ସୁପର ଉଇଡ଼ ହେବ। ଯେଉଁ ରାଉଣ୍ଡଅପ ରେଡି ଘାସମରା କୀଟନାଶକ ଜି.ଏମ୍. କ୍ଷେତରେ ପ୍ରୟୋଗ କରାଯିବ ସେ ଜମିରେ ୪/୫ବର୍ଷ ଭିତରେ ଦୁବ କଅଁଳିବ ନାହିଁ, ପାଖ ଜମି ମଧ୍ୟ ବଞ୍ଜର ପାଲଟିଯିବ। କାନାଡ଼ାରେ ଦେଶୀ କ୍ୟାନୋଲା (ଏକ ପ୍ରକାର ସୋରିଷ) ଚାଷୀମାନେ ମନସାଣ୍ଟୋ ଜି.ଏମ୍. କ୍ୟାନୋଲା ଯୋଗୁଁ ବର୍ତ୍ତମାନ କୋର୍ଟରେ ଦୋଷୀ ସାବ୍ୟସ୍ତ ହୋଇଛନ୍ତି। ଫର୍ସି ସିମେସରଙ୍କ ଭଳି ଦୁଇହଜାରରୁ ଅଧିକ ଏପ୍ରକାର ଚାଷୀଙ୍କୁ ମନସାଣ୍ଟୋ କୋର୍ଟ କେସ କରି ଲହୁଲୁହାଣ କଲାଣି। କାନାଡ଼ା, ମେକ୍‌ସିକୋ, ବ୍ରାଜିଲ, ଆର୍ଜେଣ୍ଟିନା ସବୁଠି ଏକା ସମସ୍ୟା। ପରୋକ୍ଷରେ ଏହି ଚାଷୀମାନଙ୍କୁ ଜି.ଏମ୍. ବିହନ ବ୍ୟବହାର କରିବାକୁ ବାଧ କରାଯାଉଛି। ଜି.ଏମ୍. ବିହନ ଯୋଗୁଁ ହଜାର ହଜାର ପ୍ରଜାତି ଉଭିଦ, କୀଟପତଙ୍ଗ, ମହୁମାଛି ଲୋପ ହୋଇଯାଉଛନ୍ତି। ଜି.ଏମ୍. ଧାନବିହନ ଅଳ୍ପାୟୁଷ। ମାତ୍ର ଗୋଟିଏ ଫସଲ ପାଇଁ ଏହାକୁ କମ୍ପାନୀ ଠାରୁ କିଲୋ ପ୍ରତି ୫୦୦ରୁ ୧୦୦୦ କିଣିବାକୁ ପଡ଼ିବ ପ୍ରତିବର୍ଷ। ଏବେ ପୁଣି

ଏହି ବିହନରେ ଟର୍ମିନେଟର ଜିନ୍ ପ୍ରୟୋଗ କରାଯାଉଛି। ଦ୍ୱିତୀୟ ବର୍ଷ ପାଇଁ ଯଦି ଚାଷୀ ଫସଲରୁ ବିହନ ରଖେ ସେଥିରୁ ଗଜା ହେବନାହିଁ। ଯେଉଁ ସ୍ୱର୍ଣ୍ଣଧାନ (ଗୋଲ୍ଡନ୍ ରାଇସ) ଚାଷ ପାଇଁ କମ୍ପାନୀ, ସରକାର ଓ ବୈଜ୍ଞାନିକ ମାନେ ସମସ୍ତ ବଳ ପ୍ରୟୋଗ କରୁଛନ୍ତି ସେ ଧାନର ବିଶେଷତ୍ୱ ସେଥିରେ ବେଟା କ୍ୟାରୋଟିନ (ଭିଟାମିନ - ଏ) ଅଛି। ଡ୍ୟାପୋଡିଲ ଫୁଲରୁ ଜିନ୍ ଆଣି ଦେଶୀଧାନ ବିହନ ସହିତ ମଡ଼ିଫାଏଡ୍ କରାଯାଇଅଛି। ଏହି ଚାଉଳର ଭାତ ଖାଇଲେ ଦୃଷ୍ଟିଶକ୍ତି ବଢ଼ିବ, ଅନ୍ଧତ୍ୱ ଦୂରହେବ। ମିଛ, ଡାହାମିଛ। ଜଣେ ଲୋକ ଦିନକୁ ୧୦ କିଲୋ ସ୍ୱର୍ଣ୍ଣ ଚାଉଳର ଭାତ ଖାଇପାରିଲେ ଆବଶ୍ୟକ ଭିଟାମିନ -ଏ ପାଇବ। ଏହା କ'ଣ ସମ୍ଭବ। ଆମେ କ'ଣ ସମସ୍ତେ କୁମ୍ଭକର୍ଣ୍ଣ ପାଲଟିଯିବା। ପ୍ରତିଦିନ ଖାଦ୍ୟରେ ମାତ୍ର ୧୦୦ଗ୍ରାମ ଶାଗ ବା ଖଡ଼ା (ଅମରାନ୍ଥ) ଖାଇପାରିଲେ ଆବଶ୍ୟକ ଭିଟାମିନ-କ ମିଳିପାରିବ। 'ଜିଏମ୍ ଧାନ ବିହନ ଯୋଗୁଁ ଉତ୍ପାଦନ ବଢ଼ିବ', ଏହା ଏକ ଧୂଆଁବାଣ।

ଛୋଟ ଓ ନାମମାତ୍ର ଚାଷୀଙ୍କୁ ଚାଷରୁ ହଟାଇ ଠିକାଚାଷ ବହୁଳ ପ୍ରବର୍ତ୍ତନ କରିବା, ଭାଗଚାଷୀ ଠାରୁ ଜମି ଛଡ଼ାଇ କମ୍ପାନୀକୁ ଦେବା, ଚାଷୀକୁ ଜମିର ଅଧିକାର ନ ଦେଇ ବହୁରାଷ୍ଟ୍ରୀୟ କମ୍ପାନୀ ହାତକୁ ଟେକିଦେବା ଏ ଜି.ଏମ୍.ର ଲକ୍ଷ୍ୟ। ଦେଶର ୬୦କୋଟି ଲୋକ ସର୍ବହରା ହୋଇ ସହରକୁ ଧାଇଁବେ। ବସ୍ତି ଖୋଜିବେ। ବ୍ରାଜିଲରେ ଫୁଟବଲ ଖେଳ ଓ ସାମ୍ବାନାଚ କରି ପୁଅ ଝିଅ ଜୀବନ ସଂଗ୍ରାମ କଲାଭଳି ଉତ୍କଟ ପରିସ୍ଥିତି ଉପୁଜିବ। ଓଡ଼ିଶାରେ ପାଣି ପଞ୍ଚାୟତ ଆଇନ-୨୦୦୧ ଓ ଠିକାଚାଷ ଆଇନ-୨୦୦୫ ଜି.ଏମ୍. ଓ କମ୍ପାନୀକୁ ସ୍ୱାଗତ କରିବା ପାଇଁ ଅପେକ୍ଷାରେ ଅଛି। ସବୁଠାରୁ ବିପଜ୍ଜନକ ହେବ, ଆମ ଖାଦ୍ୟ ନିରାପତ୍ତା ବିପନ୍ନ ହେବ। ଚାଉଳ କିଲୋ ୫୦ଟଙ୍କା ହେବ। ବିଷ ଭାତ ଖାଇ ରୋଗ ବଢ଼ିବ। ମନ୍‌ସାଣ୍ଟୋ ଡାହାଣୀ ହୋଇ ରୋଗ କରିବ ଏବଂ ଗୁଣିଆ ହୋଇ ଔଷଧ ଦେବ। ଚାଷୀ, ଖାଉଟୀ ଓ ବୁଦ୍ଧିଜୀବୀମାନେ ଏ ଆହ୍ୱାନର ମୁକାବିଲା କିପରି କରୁଛନ୍ତି ତାହାହିଁ ଦେଖିବାକୁ ଏ ଦେଶ ଅପେକ୍ଷା କରୁ। ମନ୍‌ସାଣ୍ଟୋ ହାତକୁ ଭାତହାଣ୍ଡିର ମାଲିକାନା ଦେବା କେତେ ବିପଜ୍ଜନକ ତାହାର ଆକଳନ କରିବା ସମୟ ଆସିଛି।



# ଆଉ କେତେ ବିଷ ପିଇଲେ ଚେତିବା !

ଜାଣତରେ ବା ଅଜାଣତରେ ଆମେ ପ୍ରତିଦିନ ବିଷ ପିଉଛେ। ଘରେ ମଶା, ମାଛି, ଅସରପା, ଉଈ, ପିମ୍ପୁଡ଼ି ବା ମୂଷାମାନଙ୍କୁ ନିପାତ କରିବା ପାଇଁ ଆମେ ରାସାୟନିକ କୀଟନାଶକ ବ୍ୟବହାର କରୁଛେ। କୃଷିକୁ ରୋଗ ଓ ପୋକ ଦାଉରୁ ରକ୍ଷାକରିବା ପାଇଁ କୀଟନାଶକ ବ୍ୟବହାର କରାଯାଉଛି। ରାସାୟନିକ କୀଟନାଶକ ଗୁଡ଼ିକ ବିଷ, ଉଗ୍ରବିଷ, ହଳାହଳ ଜହର। କୀଟନାଶକ ଡବା, ବୋତଲ ବା ପ୍ୟାକେଟ ଉପରେ ଲେଖାଥାଏ 'ଏହା ବିଷ, ସାବଧାନରେ ବ୍ୟବହାର କରିବ'। ବିଷର ମାତ୍ରା ବା ମାନ ଜଣାଇବା ପାଇଁ ପ୍ୟାକେଟ ଉପରେ ନାଲି, ନେଳି, ହଳଦିଆ ସାଙ୍କେତିକ ଚିହ୍ନ ଦିଆଯାଇଥାଏ। ପ୍ୟାକେଟ ଭିତରେ ଖଣ୍ଡିଏ କାଗଜରେ ଏହାର ବ୍ୟବହାର ବିଧି ଏବଂ ବିଷଦ୍ୱାରା ଆକ୍ରାନ୍ତ ହେଲେ ଚିକିତ୍ସା କଥାର ସୂଚନା ଥାଏ। ଏହି ଲେଖା ଇଂରାଜୀରେ ହୋଇଥାଏ। ଅକ୍ଷରଗୁଡ଼ିକ ମାଛ ମଞ୍ଜିଭଳି ଛୋଟ। ୧୦-୧୨ବର୍ଷରୁ ଅଧିକ ବୟସର ବ୍ୟକ୍ତି ଏହାକୁ ପଢ଼ିପାରିବେ ନାହିଁ। ଧର୍ମକୁ ଆଖି ଠାରିବା ଭଳି କମ୍ପାନୀମାନେ ନିଜ ଉପରୁ ଦୋଷ ଛଡ଼ାଇବା ପାଇଁ ଏତକ କରିଥାନ୍ତି।

ଭାରତୀୟ କୃଷି ଅନୁସନ୍ଧାନ ପରିଷଦ (Indian Council of Agricultural Research) ର ତଥ୍ୟାନୁଯାୟୀ ଘରେ ବା କୃଷିକ୍ଷେତ୍ରରେ ପ୍ରୟୋଗ ରାସାୟନିକ କୀଟନାଶକରୁ ମାତ୍ର ଏକ ପ୍ରତିଶତ ଅନିଷ୍ଟକାରୀ କୀଟପତଙ୍ଗ ଗ୍ରହଣ କରିଥାନ୍ତି। ଅବଶିଷ୍ଟ ୯୯ ପ୍ରତିଶତ ଫସଲ ବା ମଣିଷର ଉପକାରୀ କୀଟପତଙ୍ଗ ମାରିବାରେ ଲାଗିଥାଏ। ପୃଥିବୀରେ ୫-୧୦ ନିୟୁତ ପ୍ରଜାତିର କୀଟପତଙ୍ଗ ଅଛନ୍ତି, ସେମାନଙ୍କ ମଧ୍ୟରୁ ମାତ୍ର ୦.୦୩ ପ୍ରତିଶତ ଅନିଷ୍ଟକାରୀ। ୧୯୬୫ ଠାରୁ 'ସବୁଜ ବିପ୍ଳବ'ର ଯୁଗ ଆରମ୍ଭ ହେଲା। ଏହା ପୂର୍ବରୁ ଆମ ଦେଶରେ ରାସାୟନିକ କୀଟନାଶକ କୃଷି କ୍ଷେତ୍ରରେ ପ୍ରାୟ ବ୍ୟବହାର

ହୋଇନଥିଲା। ସେତେବେଳେ ବାର୍ଷିକ ଫସଲ ନଷ୍ଟର ପରିମାଣ ୫-୧୦ ପ୍ରତିଶତ ଥିଲା। ୧୯୬୫ଠାରୁ ଆଜିପର୍ଯ୍ୟନ୍ତ ଫସଲକୁ ରୋଗପୋକ ଦାଉରୁ ରକ୍ଷା କରିବାକୁ ହେକ୍ଟର ପିଛା ୫୫୦ଗ୍ରାମ/ମି.ଲି ବିଷ ପ୍ରୟୋଗ କରାଯାଉଛି। କିନ୍ତୁ ବାର୍ଷିକ ରୋଗପୋକ ଯୋଗୁଁ ଫସଲ ନଷ୍ଟ ଉତ୍ପାଦନର ୩୫ପ୍ରତିଶତକୁ ବୃଦ୍ଧି ପାଇଲାଣି।

୧୯୩୨ରେ ଆମଦେଶରେ କୀଟନାଶକର ବ୍ୟବହାର ୨୦୦ଟନ୍ ଥିଲା। ସେତେବେଳକୁ ସିନ୍ଥେଟିକ ରାସାୟନିକ ବିଷର ଜନ୍ମ ହୋଇନି। ଗନ୍ଧକ, ଚୂନ, ଆର୍ସେନିକ ଓ ପାରଦ ଭଳି କେତେକ ପ୍ରକୃତିଲବ୍ଧ ଜୈବ ବା ଅଜୈବ ପଦାର୍ଥର ଲବଣ କୃଷିକ୍ଷେତ୍ରରେ ପ୍ରୟୋଗ କରାଯାଉଥିଲା। ୧୯୭୫ବେଳକୁ ରାସାୟନିକ କୀଟନାଶକର ବ୍ୟବହାର ୨୫,୦୦୦ ଟନ୍‌ରେ ପହଞ୍ଚିଥିଲା। ୪୦ବର୍ଷ ଭିତରେ ୧୨୫ଗୁଣ ବୃଦ୍ଧି। ୨୦୦୦ ମସିହାକୁ ଏହି ପରିମାଣ ଦୁଇଲକ୍ଷ ଟନ୍‌ରେ ପହଞ୍ଚିଛି। ୭୦ବର୍ଷ ସମୟ ବ୍ୟବଧାନରେ ବିଷର ଅଭିବୃଦ୍ଧି ହାର ୧୦୦୦ ପ୍ରତିଶତ।

ରାଜ୍ୟ ବା କେନ୍ଦ୍ର ସରକାରଙ୍କ କୃଷି ବିଭାଗ, କୃଷି ବିଶ୍ୱବିଦ୍ୟାଳୟ ଓ କୃଷି ବିଜ୍ଞାନୀମାନେ ମନ୍‌ସାଣ୍ଟୋ ଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ବିଷ ସପକ୍ଷରେ ଇଲେକ୍ଟ୍ରୋନିକ ଗଣମାଧ୍ୟମ, ଖବରକାଗଜ ଏବଂ କୃଷକ ତାଲିମ ଶିବିର ମାନଙ୍କରେ ଅଖଣ୍ଡ ନାମଯଜ୍ଞ ଭଳି ପ୍ରଚାର କରିଚାଲିଛନ୍ତି। ହେଲେ ଆମ ଦେଶରେ ବାର୍ଷିକ ରୋଗ ପୋକ ଜନିତ ଖାଦ୍ୟଶସ୍ୟ ନଷ୍ଟ ୧୫,୦୦୦ କୋଟି ଟଙ୍କା ଆକଳନ କରାଯାଇଛି। ଜଣେ ବ୍ୟକ୍ତି ପାଇଁ ବର୍ଷକୁ ହାରାହାରି ୧୫୦ କି.ଗ୍ରା ଖାଦ୍ୟ ଆବଶ୍ୟକ ହେଲେ ୧୦କୋଟି ଲୋକଙ୍କର ଖାଦ୍ୟ କ୍ଷେତରେ ନଷ୍ଟ ହେଉଛି। ୨୦୦୪-୦୫ ନ୍ୟାସନାଲ ସାମ୍ପୁଲ ସର୍ଭେ ରିପୋର୍ଟ ଅନୁସାରେ ସେବର୍ଷ ଭାରତରେ ୧୫କୋଟି ଲୋକ ଅନାହାର ବା ଅର୍ଦ୍ଧାହାରଜନିତ ପୁଷ୍ଟିହୀନତାର ଶିକାର ହୋଇଛନ୍ତି। ରାସାୟନିକ ସାର ଓ କୀଟନାଶକ, କମ୍ପାନି ବିହନର ଏହା ହେଲା ପାରିବାପଣ ଓ କୃଷିବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର କରିସ୍ମା। (Organic Farming - Theory & Practice by Dr. S.P. Palaniappa - Dr.K. Annadurai)

କେବଳ ଆମେରିକାରେ ୧,୦୦,୦୦୦ କିସମର କୀଟନାଶକ ରାସାୟନିକ ପଦାର୍ଥ ପ୍ରସ୍ତୁତ ହୁଏ ଏବଂ ତୃତୀୟ ବିଶ୍ୱକୁ ଏହାର ମୋଟା ଅଂଶ ରପ୍ତାନୀ ହୁଏ। ଆମ ଦେଶରେ ପ୍ରାୟ ୨୦୦୦ କିସମର ଏପରି ବିଷ ପ୍ରସ୍ତୁତ ହୋଇ ଘରେ ଓ ଖେତରେ ବ୍ୟବହାର ହୋଇଥାଏ। ଏତେ ପରିମାଣର ବିଷ ଆମେ ପ୍ରୟୋଗ କରୁଥିଲେ ମଧ୍ୟ ଅନିଷ୍ଟକାରୀ

କୀଟପତଙ୍ଗ ସଂଖ୍ୟା ଅହେତୁକ ଭାବେ ବଢ଼ିଚାଲିଛି। ୧୯୨୦ ବେଳକୁ ଧାନର ୪୦ଟି ଅନିଷ୍ଟକାରୀ କୀଟପତଙ୍ଗ ଥିଲେ। ୧୯୯୨ ବେଳକୁ ଏହି ସଂଖ୍ୟା ବଢ଼ି ୨୦୦ରେ ପହଞ୍ଚିଛି। ଏହି ସମୟ ବ୍ୟବଧାନରେ ଡାଲିଜାତୀୟ ଫସଲରେ ୧୦ରୁ ବଢ଼ି ୨୪୦, ଆଖୁରେ ୨୦ରୁ ୨୨୦, କପାରେ ୩୦ରୁ ୧୫୦ ଏବଂ ଗହମରେ ୧୦ରୁ ୧୨୦କୁ ବୃଦ୍ଧି ପାଇଛି। (ICAR Report - NIEH - 21.01.2005)

୧୯୪୦ ପର୍ଯ୍ୟନ୍ତ ମ୍ୟାଲେରିଆ ମଶାକୁ ନିୟନ୍ତ୍ରଣ ପାଇଁ ପୃଥିବୀସାରା ଦେଶୀ ଜ୍ଞାନକୌଶଳ ଅନୁସରଣ କରୁଥିଲେ। ଲିମ୍ବ ପତ୍ର, କରଞ୍ଜପତ୍ର, କୋଚିଲା ପତ୍ର, ଅରଖ ପତ୍ର ବା ଝୁଣା ଧୂଆଁ ଦେବା, ବେଙ୍ଗ, ଝିଟିପିଟି, ଚେମେଣି (ବାଦୁଡ଼ି ଶ୍ରେଣୀର) ମାନେ ମଶା ଖାଇଯିବା ଭଳି ପ୍ରାକୃତିକ ବ୍ୟବସ୍ଥା, ରୋଗୀକୁ ଗଙ୍ଗଶିଉଳି ପତ୍ର/ଛେଲିର ବ୍ୟବହାର ଘରେ ଘରେ ପ୍ରୟୋଗ ହେଉଥିଲା। ୧୮୮୪ରେ ଜଣେ ଜର୍ମାନ୍ ରସାୟନବିତ୍ ଡି.ଡି.ଟି. (ଡାଇକ୍ଲୋରୋ-ଡାଇଫିନାଇଲ-ଟ୍ରାଇକ୍ଲୋରୋ- ଇଥେନ୍) ବିଜ୍ଞାନାଗାରରେ ପ୍ରସ୍ତୁତ କଲେ। ୧୯୩୯ ମସିହାକୁ ସୁଇଜରଲ୍ୟାଣ୍ଡର ସିବା-ଗିଗି କମ୍ପାନୀରେ କାମ କରୁଥିବା ପଲ୍‌ହର୍ମାନ୍ ମୁଲାର ଡି.ଡି.ଟି.ର କୀଟନାଶକ ଗୁଣ ପ୍ରତିପାଦନ କଲେ। ସୁଇଜରଲ୍ୟାଣ୍ଡର ଆଳୁଚାଷୀ ମାନେ କଲରାଡ଼ୋ ବିଟଲ ଦମନ ପାଇଁ ୧୯୪୦ ମସିହାରେ ଆଳୁ କ୍ଷେତରେ ଡି.ଡି.ଟି. ସିଞ୍ଚନ କଲେ। ପୋକ ଦମନରେ ସଫଳ ହେଲେ। ୧୯୪୨ରେ ସୁଇସ୍ ସୈନ୍ୟବାହିନୀ ସୈନ୍ୟ, ଶରଣାର୍ଥୀ ଏବଂ ବନ୍ଦୀମାନଙ୍କ ଦେହରୁ ଉକୁଣୀ ମାରିବା ପାଇଁ ଡି.ଡି.ଟି ଗୁଣ୍ଡ ସିଞ୍ଚନ କଲେ। ପରେ ପରେ ସ୍ୱାସ୍ଥ୍ୟ ଓ କୃଷି ପାଇଁ ଡି.ଡି.ଟି. ଅମୃତ ପାଲଟିଗଲା। ୧୯୪୫କୁ ପଲ୍‌ହର୍ମାନ୍ ମୁଲ୍ଲାର ଡି.ଡି.ଟି. ଉଦ୍ଭାବନ ପାଇଁ ନୋବେଲ ପୁରସ୍କାର ପାଇଲେ। ପୃଥିବୀର ରାସାୟନିକ କୀଟନାଶକ ବିଷ ବ୍ୟବହାରର ମୂଳଦୁଆ ପଡ଼ିଗଲା। ସାଙ୍ଗେ ସାଙ୍ଗେ ମ୍ୟାଲେରିଆ ନିୟନ୍ତ୍ରଣ ପାଇଁ ଦେଶୀ ବ୍ୟବସ୍ଥା ଅକାମୀ ହୋଇଗଲା। ୧୯୫୦ରେ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା (World Health Organisation) ମଶା ମାରିବା ପାଇଁ ପୃଥିବୀସାରା ଡି.ଡି.ଟି.ଗୁଣ୍ଡ ବା ପାଣି ସ୍ପ୍ରେ କାର୍ଯ୍ୟ ଆରମ୍ଭ କରିଦେଲା। ୧୯୭୬ ସୁଦ୍ଧା ଏହି ପ୍ରକଳ୍ପ ପାଇଁ ୨୦୦୦ କୋଟି ଡଲାର ଅର୍ଥାତ୍ ୯୬,୦୦୦ କୋଟି ଟଙ୍କା ଖର୍ଚ୍ଚ କରାଗଲା। ଡି.ଡି.ଟି. କମ୍ପାନୀମାନେ ତ ମାଲାମାଲ ହେଲେ। ହେଲେ ମ୍ୟାଲେରିଆର ପ୍ରକୋପ ବଢ଼ିଚାଲିଛି। ଆମେରିକାର ଇଲିଅନସ୍ ବିଶ୍ୱବିଦ୍ୟାଳୟର ଉଦ୍ଭିଦବିଦ୍ୟା ପ୍ରଫେସର ରବର୍ଟ ମେଟକାଫ ମ୍ୟାଲେରିଆ ଏବଂ ଡି.ଡି.ଟି ଉପରେ ଗବେଷଣା କରି କୁହନ୍ତି ଏହି ସମୟ ମଧ୍ୟରେ (୧୯୫୦-୧୯୭୬) ୩୦ପ୍ରକାର ନୂତନ ଓ ଭୟଙ୍କର ସୁପରମଶା ଜନ୍ମ

ନେଇଛନ୍ତି ଯେଉଁମାନଙ୍କୁ କୌଣସି ଶକ୍ତିଶାଳୀ କୀଟନାଶକ ମଧ ଦମନ କରିପାରିବେ ନାହିଁ। (International Herald Tribune -19 Feb, 1987)। ଦ୍ରୁତ ବିବର୍ତ୍ତନ (Rapid Evoulation) ଓ ବଂଶବୃଦ୍ଧି ପ୍ରକ୍ରିୟାରେ ପରିବର୍ତ୍ତନ କୀଟନାଶକଜନିତ ପରିବେଶ ପ୍ରଦୂଷଣର କାରଣ। ପ୍ରାଣୀ ଓ କୀଟପତଙ୍ଗମାନଙ୍କ ଶରୀରରେ କୀଟନାଶକ ସହନଶୀଳତା ବୃଦ୍ଧି ଯୋଗୁଁ ମଶା, ମାଛି ବା ଭାଇରସ ପ୍ରଜାତିରେ ପରିବର୍ତ୍ତନ ହୋଇ ନୂଆ ନୂଆ ପ୍ରଜାତିର ରାଜୁତି ଆରମ୍ଭ ହୋଇଗଲାଣି। ଡେଙ୍ଗୁ, ଚିକେନଗୁନିଆ, ମସ୍ତିଷ୍କଜ୍ୱର ଏହିପରି ନୂଆ ପ୍ରଜାତିର ମଶାଙ୍କ ଯୋଗୁଁ ସମ୍ଭବ ହେଉଛି।

ଆଜିବି ଆମ ଦେଶରେ ମ୍ୟାଲେରିଆ ନିରାକରଣ ପାଇଁ ଡି.ଡି.ଟି., ମାଲାଥିଅନ. ବି.ଏଚ୍.ସି. ସ୍ପ୍ରେ କରାଯାଉଛି। ମଫସଲ ଅପେକ୍ଷା ସହରାଞ୍ଚଳରେ ଏହି କାର୍ଯ୍ୟକ୍ରମ ଅଧିକ। ରାତିରେ ମଶାରୁ ରକ୍ଷା ପାଇବା ପାଇଁ ଜେଟ୍, ଗୁଡ୍ଣାଇଟ୍‌ ... ଗୁଷ୍ଟର, କଇଁଚ, ମାକ୍ସୋ ଭଳି ମଶାଧୂଆଁ ବ୍ୟବହାର କରାଯାଉଛି। ଏସବୁରେ ଆଲଥ୍ରିନ୍ ନାମକ ମାରାତ୍ମକ ବିଷଥାଏ। ଏହାଦ୍ୱାରା ଶିଶୁ ଓ ମହିଳାମାନେ ବେଶି ଆକ୍ରାନ୍ତ ହୁଅନ୍ତି। ସେମାନଙ୍କ ମଧ୍ୟରୁ ଅନେକଙ୍କୁ ମସ୍ତିଷ୍କ କର୍କଟ, ଲ୍ୟୁକୋମିଆ, ଅପସ୍ମାର (Epilepsy), ପାଗଳାମି, ବୁଦ୍ଧିହୀନତା, ସ୍ମରଣଶକ୍ତି ହ୍ରାସ, ଶ୍ୱାସ ଓ ଯକ୍ଷ୍ମାଭଳି ଜଟିଳ ରୋଗ ହୋଇଥାଏ। ଜାତୀୟ ଆୟୁର୍ବିଜ୍ଞାନ ପ୍ରତିଷ୍ଠାନ, ଦିଲ୍ଲୀର ପ୍ରଫେସର ଏସ୍.କେ. ଗୁପ୍ତା ୧-୧୨ବର୍ଷ ବୟସର ୨୩୩ଜଣ ଶିଶୁଙ୍କ ଠାରେ କୀଟନାଶକର ପ୍ରତିକ୍ରିୟା ପରୀକ୍ଷା ଦ୍ୱାରା ଏହି ତଥ୍ୟ ଲୋକଲୋଚନକୁ ଆଣିଛନ୍ତି। (Trozan Horses, Toxic Link, Nov-2000)

ଡି.ଡି.ଟି.ର କୁପ୍ରଭାବ ସ୍ତ୍ରୀ ଲୋକମାନଙ୍କ ଶରୀରରେ ଆହୁରି ଉଦ୍‌ବେଗଜନକ। ପନିପରିବା, ମାଛ, ମାଂସ, କ୍ଷୀର, ଚାଉଳ ଓ ଫଳ ମାଧ୍ୟମରେ ଏହା ଶରୀରରେ ପ୍ରବେଶ କରେ। ଏହାର ଗୁଣ ଶରୀରରେ ୫୦ବର୍ଷ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିପାରେ। ଏକ ମିଲିଗ୍ରାମ ଡି.ଡି.ଟି. ଶରୀରରେ ଚର୍ବିକୁ ଗଲେ ତାହା ୧୦୦ଗୁଣ ଅଧିକ ଶକ୍ତିଶାଳୀ ହୋଇଥାଏ। ଫଳରେ ସ୍ତ୍ରୀ ଲୋକମାନେ ସ୍ତନକର୍କଟ, ବନ୍ଧ୍ୟା ଦୋଷ, ଋତୁସ୍ରାବରେ ଯନ୍ତ୍ରଣା ବା ଅଧିକ ସ୍ରାବ, ମୃତ, ଅନ୍ଧ ବା ବିକଳାଙ୍ଗ ସନ୍ତାନ ଜନ୍ମଦେବା, ଗର୍ଭପାତ, ପ୍ରସବ ପୂର୍ବରୁ ବା ପରେ ପରେ ମା, ପିଲାଙ୍କର ମୃତ୍ୟୁ ଭଳି ସମସ୍ୟାର ଶିକାର ହୋଇଥାନ୍ତି। କେବଳ ଆମେରିକାରେ ୧୯୬୨ ବେଳକୁ ସ୍ତନକର୍କଟ ଯୋଗୁଁ ବର୍ଷକୁ ୫୦,୦୦୦ ସ୍ତ୍ରୀ ମୃତ୍ୟୁବରଣ କରୁଥିଲେ। (Silent Spring - Rachel Carson - 1962)

■ *ଆଉ କେତେ ବିଷ ପିଇଲେ ଚେତିବା... !*

ପୃଥିବୀରେ ପ୍ରତିବର୍ଷ ଦୁଇ ନିୟୁତ ଟନ୍‌ରୁ ଅଧିକ କୀଟନାଶକ ବ୍ୟବହାର କରାଯାଏ। ପୃଥିବୀର ଲୋକସଂଖ୍ୟା ପ୍ରାୟ ୬୫୦କୋଟି। ହିସାବ କଲେ ମୁଣ୍ଡପିଛା ଆମେ ବର୍ଷକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ୩୦୦ଗ୍ରାମ/ମି.ଲି. ବିଷ ପିଉନାହୁଁ କି ? ୧୯୫୦ ମସିହାରୁ ରାସାୟନିକ କୀଟନାଶକ ପ୍ରୟୋଗ କରାଗଲା। ଆଜି ୫୦ବର୍ଷରୁ ଊର୍ଦ୍ଧ୍ୱ ଲୋକମାନେ ତାଙ୍କ ଜୀବନ କାଳରେ ୩୦୦ଗ୍ରାମ X ୫୦ = ୧୫ କି.ଗ୍ରା ବିଷର ପ୍ରଭାବରେ ଆସୁନାହାନ୍ତି କି ? ସରକାରୀ ହିସାବ କହୁଛି ରୋଗପୋକ ପାଇଁ ଏତେ ପରିମାଣ ବିଷର ମାତ୍ର ଏକ ପ୍ରତିଶତ ବିନିଯୋଗ ହେଉଛି, ତେବେ ଅବଶିଷ୍ଟ ୯୯ ପ୍ରତିଶତ ଯାଉଛି କୁଆଡ଼େ ? ଏହା ମାଟି, ପାଣି, ପବନ ଓ କୃଷିଲବ୍ଧ ଖାଦ୍ୟଶସ୍ୟରେ ରହି ପରିବେଶକୁ ସମ୍ପୂର୍ଣ୍ଣ ପ୍ରଦୂଷିତ କରୁଛି। ପରୀକ୍ଷା କରି ଜଣାପଡୁଛି ଏହି ବିଷ ୫୦୦ ଫୁଟ ମାଟିତଳେ ଥିବା ପାଣିରେ ମଧ୍ୟ ଅଛି। ଏହି ବିଷ ପ୍ରଭାବରେ ହଜାର ହଜାର ପ୍ରଜାତିର କୀଟପତଙ୍ଗ ଓ ନିମ୍ନ ଉଦ୍ଭିଦ ନିଶ୍ଚିହ୍ନ ହୋଇଯାଉଛନ୍ତି। ସାଧବ ବୋହୂ, ମାଟିରେ ଥିବା ଜିଆ ଓ କୋଟି କୋଟି ଅଣୁଜୀବ, କଙ୍କଡ଼ା, ଗେଣ୍ଡା, ମାଛମାନଙ୍କର ବହୁ ପ୍ରଜାତି; ଗୁଡ଼ଖାଇ, ଶଙ୍ଖଚିଲ, ବାଦୁଡ଼ି, ଶାଗୁଣା, ମହୁମାଛି, ପ୍ରଜାପତି, ଝିଟିପିଟି, ବୁଢ଼ିଆଣୀ ଭଳି ଆମ ଉପକାରୀ ଜୀବମାନେ ଇତିହାସ ପାଲଟୁଛନ୍ତି। ଗୋଟିଏ ବେଙ୍ଗ ପ୍ରତିଦିନ ତାର ଶରୀର ଓଜନର କୀଟପତଙ୍ଗ ଖାଇପାରେ। ଅନିଷ୍ଟକାରୀ କୀଟପତଙ୍ଗ, ମଶା, ମାଛିଙ୍କୁ ନିପାତ କରିବା ତାର କାମଥିଲା। ଏବେ ସେମାନଙ୍କ ସଂଖ୍ୟା କଳ୍ପନାତୀତ ଭାବେ ହ୍ରାସ ପାଇଲାଣି। ଏକ ସମୟରେ ସମୁଦ୍ର ଓ ମଧୁରଜଳରେ ୪୦ହଜାର ପ୍ରଜାତିର ମାଛ ଥିଲେ। ରାସାୟନିକ କୀଟନାଶକ ବ୍ୟବହାର ଦ୍ୱାରା ଏବେ ପ୍ରାୟ ୩୦ହଜାର କିସମର ସମୁଦ୍ର ଓ ମଧୁର ଜଳ ମାଛ ନିଶ୍ଚିହ୍ନ ହୋଇଗଲେଣି। କୋଇଲି, ଶୁଆ, ଶାରୀ, ହଳଦୀବସନ୍ତ ଆଉ ଦେଖିବାକୁ ମିଳୁନାହାନ୍ତି। ଡି.ଡି.ଟି. ଓ ଅନ୍ୟାନ୍ୟ କୀଟନାଶକ ପ୍ରଭାବରୁ ପକ୍ଷୀମାନଙ୍କ ମଧ୍ୟରେ ସଙ୍ଗମ ପ୍ରକ୍ରିୟା କମିଯାଉଛି। ଅଣ୍ଡାର ଆବରଣ ନରମ ହେବା ଦ୍ୱାରା ଅଣ୍ଡାରୁ ଛୁଆ ଜନ୍ମ ହେଉନାହାନ୍ତି। ପକ୍ଷୀମାନଙ୍କର ଥଣ୍ଟ ଚେପଟା, ବଙ୍କା ବା ଅନ୍ୟକିଛି ବିକୃତ ଆକୃତିର ହୋଇଯାଉଛି। ସେମାନେ ଖାଦ୍ୟ ସଂଗ୍ରହ କରିନପାରି ମୃତ୍ୟୁମୁଖରେ ପଡୁଛନ୍ତି। ଡି.ଡି.ଟି.ର କୁପ୍ରଭାବ ଯୋଗୁଁ ମା'ର କ୍ଷୀରରେ ବିଷ। ଏହି ବିଷ ମା' ପେଟରେ ଥିବା ଭ୍ରୁଣକୁ ମଧ୍ୟ ଆକ୍ରମଣ କରିଥାଏ। ଏଥିପାଇଁ ଆମ ଦେଶରେ ଶିଶୁ ମୃତ୍ୟୁହାର ପ୍ରତି ହଜାରରେ ୯୬ଜଣ। (The Atlas of Children Health & Environment, WHO March, 2004)। ମାତ୍ର କ୍ୟୁବାରେ ଏହି ହାର ହଜାର ପ୍ରତି ୧.୫। କ୍ୟୁବାବାସୀଙ୍କ ସ୍ୱାସ୍ଥ୍ୟ ଏବେ ଆମେରିକାବାସୀଙ୍କଠାରୁ

ଉଚ୍ଚମାନର। ସେଠାରେ ହାରାହାରି ବୟସ ସୀମା ୭୮ବର୍ଷ। କାରଣ ୧୯୮୦ ଠାରୁ ଆମେରିକାର ଦୃଢ଼ ଅର୍ଥନୈତିକ ବାସନ୍ଦ ଯୋଗୁଁ କ୍ୟୁବାକୁ ରାସାୟନିକ ସାର ବା କୀଟନାଶକ ଔଷଧ ଆସେନାହିଁ। କ୍ୟୁବାରେ ୧୯୮୦ଠାରୁ ଜୈବକୃଷି ବା ଦେଶୀଚାଷ ପ୍ରଚଳନ ହୋଇଅଛି। (Alternatives to Pesticides in Tropical, Countries - A.T. Durani)

ପୃଥିବୀର ୧୦ଟି ପ୍ରମୁଖ କୀଟନାଶକ କମ୍ପାନୀ ୧୯୯୭ ମସିହାରେ ଏକଲକ୍ଷ ୨୧ ହଜାର ୬୭ କୋଟି ଟଙ୍କାର ବିଷ ବେପାର କରିଛନ୍ତି। ଆମେରିକାର ବହୁରାଷ୍ଟ୍ରୀୟ କମ୍ପାନୀ ମନ୍‌ସାଣ୍ଟୋ ଏହି ଟିମର କ୍ୟାପଟେନ୍। ଅନ୍ୟ ଖେଳାଳୀମାନେ ହେଲେ ଆଭେଣ୍ଟିସ୍, ନୋଭାଟ୍ରିସ୍, ଡୋନିକା ଆଷ୍ଟ୍ରୋ, ଡୁ୍ୟ ପଣ୍ଟ, ବେୟର, ଡୋ ଆଗ୍ରୋ ଓ ଅନ୍ୟାନ୍ୟ। (Rural Agricultrue Foundation International, Canada - Annual Report - 1997)

ଆମଦେଶର ହିନ୍ଦୁସ୍ଥାନ ଇନ୍‌ସେକ୍ଟିସାଇଡ଼ ଲିମିଟେଡ, ଦିଲ୍ଲୀ, ଫାଇକ୍ରନ ଅର୍ଗାନିକସ୍, ଗୁଜୁରାଟ, ଡେନୋସିଲ, ମୁମ୍ବାଇ ଭଳି କେତେକ କମ୍ପାନୀ ମଧ୍ୟ ଏହି ବିଷ ବେପାର କରନ୍ତି। ନିକଟରେ ଆମେରିକାର ଡୋ କେମିକାଲସ୍ ଭାରତରେ ନିଷିଦ୍ଧ ଇଣ୍ଡୋ ସଲଫାନ୍‌କୁ ଆଉ କିଛିଦିନ ବଜାରକୁ ଛାଡ଼ିବା ପାଇଁ ପେଷ୍ଟିସାଇଡ଼୍ ରେଜିଷ୍ଟ୍ରେସନ ଅଫିସର ଅଧିକାରୀମାନଙ୍କୁ ଦଲାଲ ମାଧ୍ୟମରେ ୨ଲକ୍ଷ ଡଲାର ଲାଞ୍ଚ ଦେଇଥିଲା। ଆମେରିକା ସରକାର ଏହାର ପ୍ରମାଣ ପାଇ ଫେବୃୟାରୀ ୧୩,୨୦୦୭ରେ ଡୋ କେମିକାଲସ୍‌କୁ ୩, ୨୫,୦୦୦ ଡଲାର ଜୋରିମାନା କରିଛନ୍ତି। (Down To Earth - March 15, 2007)। ଆମ ଦେଶର ଅମଲାତନ୍ତ୍ର ଓ କୃଷି ବିଜ୍ଞାନୀମାନେ କଳାଟଙ୍କା ଅର୍ଜନ କରି ସଫଳତାର ସହ ନିଜ ଲୋକଙ୍କୁ ବିଷ ପିଆଇଥାନ୍ତି। ସେମାନେ କ'ଣ ଭାବିପାରନ୍ତି ନାହିଁ ଏବିଷ ସେମାନେ ଓ ତାଙ୍କ ପରିବାରବର୍ଗ ମଧ୍ୟ ନିୟମିତ ପିଉଛନ୍ତି।

ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ଏକ ରିପୋର୍ଟ ଅନୁସାରେ ରାସାୟନିକ କୀଟନାଶକ ଯୋଗୁଁ ପୃଥିବୀରେ ବର୍ଷକୁ ୨୦,୦୦୦ ଲୋକ ଅକାଳ ମୃତ୍ୟୁବରଣ କରୁଛନ୍ତି। ଏମାନଙ୍କ ମଧ୍ୟରୁ ଶିଶୁ ଓ ମହିଳାଙ୍କ ସଂଖ୍ୟା ଅର୍ଦ୍ଧାଧିକ। ଆଉ ଦୁଇ ନିୟୁତ ଲୋକ କୀଟନାଶକ ବିଷରେ ଆକ୍ରାନ୍ତ ହୋଇ ଡାକ୍ତରଖାନାରେ ଭର୍ତ୍ତି ହୋଉଛନ୍ତି। ଏମାନଙ୍କ ମଧ୍ୟରୁ ତୃତୀୟ ବିଶ୍ୱର ଭାଗ ୫୦ ପ୍ରତିଶତ। ଭାରତ ତୃତୀୟ ବିଶ୍ୱର ଦେଶ। ପୃଥିବୀରେ ବର୍ଷକୁ ୬୩୦ କୋଟି

■ *ଆଉ କେତେ ବିଷ ପିଇଲେ ଚେତିବା... !*

୩୧ଲକ୍ଷ ଟନ ବିଷ ଘରେ ଓ କୃଷି କ୍ଷେତ୍ରରେ ପ୍ରୟୋଗ ହୁଏ। କେବଳ ଆମେରିକାର ବାର୍ଷିକ ବିଷ ଖର୍ଚ୍ଚ ୧୦ଲକ୍ଷ ଟନ। ତୃତୀୟ ବିଶ୍ୱରେ ୫ଲକ୍ଷ ଟନ ଅର୍ଥାତ୍ ଏକ ଷଷ୍ଠାଂଶ। ଅନ୍ୟ ଏକ ହିସାବରୁ ଜଣାଯାଏ ଆମ ଦେଶରେ ପ୍ରତି ମିନିଟରେ ୫ଜଣ କୀଟନାଶକ ଯୋଗୁଁ ପୀଡ଼ିତ ହୋଇଥାନ୍ତି। ୧୯୯୫ର ଭାରତୀୟ ଭେଷଜ ଗବେଷଣା ପରିଷଦ (ICMR) ରିପୋର୍ଟ କୁହେ ଆମଦେଶରେ ଉତ୍ପାଦିତ ପନିପରିବାର ୫୫.୧ ପ୍ରତିଶତରେ ସରକାରୀ ସ୍ୱୀକୃତ ପରିମାଣ ଠାରୁ ବହୁଗୁଣ ଅଧିକ କୀଟନାଶକ ଅବଶେଷ (Pesticide Residue) ଥାଏ। (Toxic Link - Nov 2000)

ଭାରତୀୟ କୃଷି ଗବେଷଣା ପରିଷଦ (ICAR) ପନିପରିବାରେ କୀଟନାଶକର ମାତ୍ରା ପରୀକ୍ଷା ପାଇଁ ୪୧୧୧ଟି ନମୂନା ୧୬ଟି ରାଜ୍ୟରୁ ସଂଗ୍ରହ କରି ପରୀକ୍ଷା କରିଥିଲେ। ବନ୍ଧାକୋବି, ଫୁଲ କୋବି, ବାଇଗଣ, ଭେଣ୍ଡି, ଆଳୁ, ବିନ୍, କଖାରୁ, ଟମାଟୋ, ଲଙ୍କା, ଗାଜର, କାକୁଡ଼ି ଓ ବରୁଗୁଡ଼ିର ନମୁନା ପରୀକ୍ଷା କରି ୧୫ଟି କୀଟନାଶକରୁ ଏକାଧିକ ଅବଶେଷ ପ୍ରତ୍ୟେକ ନମୁନାରେ ଥିବା ପ୍ରମାଣ ମିଳିଛି। ଏହି କୀଟନାଶକ ଗୁଡ଼ିକହେଲା - ଡେଲଟାମେଥ୍ରିନ, ମାଲାଥିଅନ, ଫସ୍‌ଫା ମାଇଡ଼ନ, ଡି.ଡି.ଟି., କ୍ୟୁନାଫସ୍ ସାଇପରମେଥ୍ରିନ, ଏଚ୍.ସି.ଏଚ୍., ମନୋକ୍ରୋଟଫସ୍, କ୍ଲୋରୋପାଇରିଫ୍‌ସ, ଏଣ୍ଡୋସଲଫାନ୍, ଫ୍ଲୋରେଟ, କାର୍ବୋଫୁରାନ, କାର୍ବାରିଲ, ଲିଣ୍ଡେନ୍, ୨,୪- ଡି ଗ୍ୟାସେଲ କାରସନ କାଉନସିଲ, ମ୍ୟାରିଲ୍ୟାଣ୍ଡ - ଯୁକ୍ତରାଷ୍ଟ୍ର ଆମେରିକା ଏହିସବୁ କୀଟନାଶକର ସୃଷ୍ଟିକର୍ତ୍ତା। ମଣିଷ, ପ୍ରାଣୀ ବା ଉଦ୍ଭିଦ ଉପରେ ଏହାର ଭୟାନକ ପ୍ରଭାବ ରହିଛି ଯାହା ସମୁଦାୟ ଜୀବଜଗତକୁ ଧ୍ୱଂସ କରିବା ପାଇଁ ପରମାଣୁ ବୋମାଠାରୁ ଆହୁରି ଶକ୍ତିଶାଳୀ କାରକ ଭାବରେ କାର୍ଯ୍ୟ କରିଥାଏ। ୧୯୬୨ ଠାରୁ ନିରବଚ୍ଛିନ୍ନଭାବେ ଏହିଭଳି ତଥ୍ୟ ଭାରତୀୟ କୃଷି ଗବେଷଣା ପରିଷଦ (ICAR) ପରିବେଷଣ କରିଆସୁଅଛି। ଏମାନେ ଆମ ଶରୀରରେ କର୍କଟ (ରକ୍ତ, ସ୍ତନ ଓ ଅସ୍ଥି) ଅସ୍ଥି ଦୁର୍ବଳ (osteoporosis), ପକ୍ଷାଘାତ, ଅପସ୍ମାର, ଅନ୍ଧତ୍ୱ, ଚର୍ମରୋଗ, ଯକୃତ(କିଡ୍‌ନି)ରେ ପଥର, ଲିଭର ଡ୍ୟାମେଜ, ନଂପୁସକତା, ବନ୍ଧ୍ୟାତ୍ୱ, ଦୃଷ୍ଟିଶକ୍ତିହୀନତା, ସୋରିଆସିସ, ଡାଇବେଟିସ, ହୃଦରୋଗ ଭଳି ଅସୁମାରୀ ରୋଗର ବାହକ ବୋଲି ବହୁ ପ୍ରମାଣିତ। ଶିଶୁ ଓ ମହିଳାମାନେ ଏହି ବିଷ ଯୋଗୁଁ ସର୍ବାଧିକ ବିପଦଗ୍ରସ୍ତ।

ଆମେ ଖାଉଥିବା ମାଛ, ମାଂସ, ଅଣ୍ଡା ଓ କ୍ଷୀରରେ ପେଷ୍ଟିସାଇଡ଼, ରେସିଡ୍ୟୁ ପରିବା ଠାରୁ ଅଧିକ। କାରଣ ଏ ସମସ୍ତ ଖାଦ୍ୟ ଦ୍ରବ୍ୟରେ ଚର୍ବି ଅଛି। ଏହିସବୁ Toxic ଦ୍ରବ୍ୟ

ଶରୀରକୁ ଯାଇ ଚର୍ବିରେ ପହଞ୍ଚିଲେ, ଏମାନେ ୧୦୦ରୁ ୧୦୦୦ ଗୁଣ ଶକ୍ତିଶାଳୀ ହୋଇପାରନ୍ତି। ୨୦୦୬ ମସିହାରେ ଦିଲ୍ଲୀର ଏକ ସଂସ୍ଥା ସେଣ୍ଟର ଫର ସାଇନ୍ସ ଆଣ୍ଡ ଏନଭିରନ୍‌ମେଣ୍ଟ ପଞ୍ଜାବରେ ୪୦୦ରୁ ଉର୍ଦ୍ଧ୍ୱ ସ୍ତ୍ରୀଲୋକଙ୍କ ରକ୍ତପରୀକ୍ଷା କରାଇଥିଲେ, ପ୍ରତ୍ୟେକଙ୍କ ରକ୍ତରେ ୭ରୁ ୧୩ଟି ପର୍ଯ୍ୟନ୍ତ କୀଟନାଶକ ଥିବାର ପ୍ରମାଣ ମିଳିଲା। ସେଠାରେ ସ୍ତ୍ରୀମାନଙ୍କର ସ୍ତନକର୍କଟ ଓ ବନ୍ଧ୍ୟାତ୍ୱ, ଅପସ୍ମାର ଓ ପକ୍ଷାଘାତ ଭଳି ରୋଗର ପ୍ରାଦୁର୍ଭାବ ଅଧିକ। ସବୁଜ ବିପ୍ଳବର ଏହା ସଦ୍ୟ ଫଳ। ଏବେ ପଞ୍ଜାବବାସୀଙ୍କର ହୋସ୍ ଆସିଲାଣି। ନୋ ଗ୍ରିନ୍ ରିଭଲ୍ୟୁସନ ଡାକରା ଦିଆଗଲାଣି। ଚୌର ଗତେ ବା କିମ୍ ସାବଧାନ! ଭାତହାଣ୍ଡିରୁ ଗୋଟିଏ ଚିପିଲା ଭଳି ମାତ୍ର ତିନିଚାରୋଟି କୀଟନାଶକର ପାରିଲା ପଣ ଏଠାରେ ଉଲ୍ଲେଖ କରାଯାଉଛି।

ଡି.ଡି.ଟି – ପୃଥିବୀରେ ଯେତେଗୁଡ଼ିଏ ଭାଷା ରହିଛି, ତାହା ଏହାର ସଂହାରକାରୀ ଗୁଣ ବର୍ଣ୍ଣନା ପାଇଁ କମ୍ ହେବ। ପ୍ରକୃତି, ପ୍ରାଣୀ ଓ ଉଦ୍ଭିଦ, ଜଳ, ମୃତ୍ତିକା ଓ ବାୟୁରେ ଏହା ବ୍ୟବହାର ଦିନଠାରୁ ୫୦ବର୍ଷ ପାଇଁ କାର୍ଯ୍ୟକ୍ଷମ ରହିପାରେ। ପୂର୍ବରୁ ଡି.ଡି.ଟି. ସମ୍ପର୍କରେ କେତେକ ତଥ୍ୟ ଉଲ୍ଲେଖ ଅଛି। ଯଦି ଏହାର ୨ଟି ପ୍ରଧାନ କ୍ଷତିକାରକ ଗୁଣ ସମ୍ପର୍କରେ କୁହାଯାଏ, ତାହାହେବ ସ୍ତ୍ରୀମାନଙ୍କ ପାଇଁ ବନ୍ଧ୍ୟାତ୍ୱ, ବିକଳାଙ୍ଗ ଶିଶୁଜନ୍ମ, ଗର୍ଭପାତ ଓ ପୁରୁଷମାନଙ୍କ ପାଇଁ ନଂପୁସକତା। ଦ୍ୱିତୀୟଟି କର୍କଟରୋଗ। (silent spring - Rachel Carson)

କାର୍ବାରିଲ୍-କାର୍ବାରିଲ୍ ବା ସେଭିନ୍ ଆମେ ନିୟମିତ ପନିପରିବା ବଗିଚାରେ ସିଞ୍ଚନ କରିଥାଉ। ୧୯୮୪ ଡିସେମ୍ବର ୩ତାରିଖ ମଧ୍ୟରାତ୍ରରେ ଭୋପାଳରେ ୟୁନିୟନ୍ କାର୍ବାଇଡ଼୍ ପ୍ଲାଣ୍ଟ୍‌ରେ ବିସ୍ଫୋରଣ ହୋଇ ଯେଉଁ ବିଭୀଷିକା ସୃଷ୍ଟି କରିଥିଲା ତାହା ଏହି କାର୍ବାରିଲ ବା ସେଭିନର କାମ। ମାତ୍ର କେଇମିନିଟ୍ ମଧ୍ୟରେ ମିଥାଇଲ ଆଇସୋ ସାଇନେଟ୍ ବିଷାକ୍ତବାଷ୍ପ ଭୋପାଳ ସହରରେ ଘନକୁହୁଡ଼ି ଭଳି ଘେରିଗଲା। ମାତ୍ର କେତେଘଣ୍ଟା ଭିତରେ ୫୦୦୦ ଲୋକ ଚିରନିଦ୍ରା ଗଲେ। ଆଉ ଦୁଇଲକ୍ଷ ଲୋକ ଏବେବି ରୋଗରେ ସଢୁଛନ୍ତି ଏବଂ କ୍ଷତିପୂରଣ ପାଇଁ ବାରଦୁଆର ଶୁଣ୍ଢିପିଣ୍ଡା ହେଉଛନ୍ତି। ମୃତକ ବା ରୋଗୀଙ୍କ ମଧ୍ୟରେ ଶିଶୁ ଓ ମହିଳାଙ୍କ ସଂଖ୍ୟା ୬୫ ପ୍ରତିଶତ। ଏବେବି ବାଇଗଣ, ଭେଣ୍ଡି, ଜହ୍ନି, କାକୁଡ଼ି, ପୋଟଳ, କଲରା ଭଳି ପରିବା କିଆରିରେ ପ୍ରତି ୨/୩ଦିନରେ ଥରେ ସିଞ୍ଚନ କରାଯାଉଛି। ଏଥିପାଇଁ କୃଷି ଓ ଉଦ୍ୟାନ ବିଭାଗ ଅଧିକାରୀମାନେ ନିୟମିତ ରେଡ଼ିଓ, ଟିଭିରେ ଚାଷୀମାନଙ୍କୁ

ମନେ ପକାଇଦେଉଛନ୍ତି। ଚକ୍ ଚକ୍ ତଟକା ପରିବା ତରକାରୀ ଖାଇଲା ବେଳେ ଆମେ ପ୍ରତିଦିନ ମିଥାଇଲ ଆଇସୋ ସାଇନେଟ ବିଷ ଖାଉଛୁ। ଏହି ବିଷଯୋଗୁଁ ପକ୍ଷାଘାତ, ଚର୍ମରୋଗ, ଗୋଡ଼ରୁ ବାରମ୍ବାର ବାକୁଲା ବାହାରିବା, Cramps ଆଖିକୁ ଢାଲୁଢାଲୁଆ ଦିଶିବା, ଶ୍ୱାସ ଓ ବ୍ରୋଙ୍କାଇଟିସ୍ ଏବଂ ପେଟମରା ରୋଗ ହୋଇଥାଏ। (Pesticide News 31 March 1996)

ଇଣ୍ଡୋ-ସଲଫାନ୍ - ସୋୟାବିନ୍, ସୂର୍ଯ୍ୟମୁଖୀ, ବନ୍ଧା ଓ ଫୁଲକୋବି, ଆଖୁ, ବାଇଗଣ, କଲରା, ଚିନାବାଦାମ, ଧୂଆଁପତ୍ର ଭଳି ଫସଲରେ ଇଣ୍ଡୋସଲଫାନ୍ ବହୁଳ ଭାବେ ସିଞ୍ଚନ କରାଯାଏ। କାଜୁବଗିଚା ପାଇଁ ଏହାର ବ୍ୟବହାର ଜରୁରୀ। କେରଳର କାସାରଗଡ଼ ଜିଲ୍ଲାରେ ସ୍ୱର୍ଗ ବୋଲି ଗୋଟିଏ ଗାଁ। ଏହାର ଅର୍ଥ ବୈକୁଣ୍ଠପୁରୀ ସହିତ ଏହି ଗ୍ରାମ ତୁଳନୀୟ। ଏହି ଗ୍ରାମରେ ସରକାରୀ ଉଦ୍ୟମରେ ଲଙ୍କାବାଦାମ ବିସ୍ତୃତ ଅଞ୍ଚଳରେ ଚାଷ କରାଗଲା ୧୯୭୫ ବେଳକୁ। ଆକାଶମାର୍ଗରୁ ହେଲିକପ୍ଟରରେ ଇଣ୍ଡୋସଲଫାନ୍ ସିଞ୍ଚନ ନିୟମିତ ଭାବେ କରାଗଲା। ନଦୀ, ନାଳ, ବଣ, ଜଙ୍ଗଲ, ଶସ୍ୟକ୍ଷେତ ସବୁଆଡ଼େ ଇଣ୍ଡୋସଲଫାନ୍ ବିଛାଇ ହୋଇପଡ଼ିଲା। ପ୍ରଥମେ ପ୍ରଥମେ ବିକଳାଙ୍ଗ ବାଛୁରୀ ଜନ୍ମ, ମହୁମାଛି ଲକ୍ଷ ଲକ୍ଷ ସଂଖ୍ୟାରେ ମରିବା, କୁକୁଡ଼ା, ବତକ, ବିଲୁଆ ମରିପଡ଼ିବା ଭଳି ପରିସ୍ଥିତି ଉପୁଜିଲା। ୨୦୦୧ ବେଳକୁ ଜଣାପଡ଼ିଲା ବହୁସଂଖ୍ୟାରେ ଗ୍ରାମବାସୀ ବିକଳାଙ୍ଗ, ଚାଲିବାକୁ ଅସମର୍ଥ, ପାଗଳାମି ବା ବୋକା ବନିଯିବା, ଦୃଷ୍ଟିଶକ୍ତି ହାନୀ, ବିକଳାଙ୍ଗ ଶିଶୁଜନ୍ମ ଏବଂ ଏପରିକି ବହୁ ଯୁବକଯୁବତୀଙ୍କର ସନ୍ତାନ ନହେବା ଭଳି ପରିସ୍ଥିତି ଉପୁଜିଲା। କେରଳ ସରକାର ୨୦୦୨ରୁ ଇଣ୍ଡୋସଲଫାନ୍ ବ୍ୟବହାର ନିଷିଦ୍ଧ କଲେ। ଅସଂଖ୍ୟ ମାଛ, ବେଙ୍ଗ, ପକ୍ଷୀମାନେ ମରିଯିବା ଦ୍ୱାରା ଲୋକମାନେ ଜୀବିକା ହରାଇଲେ। (Endosulfan Poisoning in Kasargod, Kerala, India Romeo F, Quijano, M.D., Professor, Dept of Pharamocology & Toxicoligy, University of Phits, Manila)। ଆମ ରାଜ୍ୟ ଓଡ଼ିଶାରେ କୃଷି ବିଶ୍ୱବିଦ୍ୟାଳୟ, କୃଷି ବିଭାଗ, କେନ୍ଦ୍ରୀୟ ଧାନ ଗବେଷଣାଗାର, କଟକ ଚାଷୀମାନଙ୍କୁ ଫସଲ ସୁରକ୍ଷା ପାଇଁ ଇଣ୍ଡୋସଲଫାନ୍ ସିଞ୍ଚନ ପାଇଁ ଏବେବି ପରାମର୍ଶ ଦିଅନ୍ତି। ପନିପରିବା, ମାଛ, ମାଂସ, କ୍ଷୀର, ମହୁ ଏପରିକି ମା' କ୍ଷୀରରୁ ଇଣ୍ଡୋସଲଫାନ ବିଷ ଆମ ଶରୀରରେ ପ୍ରବେଶ କରିଥାଏ। ବଡ଼ ଲୋକମାନଙ୍କର ଫଳ, ଅଙ୍ଗୁର, ନାସପାତି, ସେଓରେ ଇଣ୍ଡୋସଲଫାନର ମାତ୍ରା ସର୍ବାଧିକ। ପିଲାମାନେ ଗେଡ଼ା ବା ବାମନ ହେବାର କାରଣ ଇଣ୍ଡୋସଲଫାନ।

୨,୪ -ଡି,୨,୪,୫-ଟି, Roundup Ready, Atrazin ଭଳି କୀଟନାଶକ ଗୁଡ଼ିକ ଘାସମରା ପାଇଁ ଆଖୁ, ଚିନାବାଦାମ, କପା, ସୂର୍ଯ୍ୟମୁଖୀ, ଧାନ, ଗହମ ଓ ପନିପରିବା କ୍ଷେତରେ ବୁଣାଯାଇଥାଏ। ଭିଏତନାମ ଯୁଦ୍ଧରେ ୧୯୬୨ ଠାରୁ ୧୯୭୧ ପର୍ଯ୍ୟନ୍ତ ଆମେରିକା ସୈନ୍ୟମାନେ ଏହାକୁ Agent Orange ନାମରେ ଜଳ, ସ୍ଥଳ ଓ ଆକାଶପଥରୁ ଜଙ୍ଗଲ ଓ ଧାନ କ୍ଷେତରେ ସ୍ପ୍ରେ କରିଥିଲେ। ଜଙ୍ଗଲ ଓ ସବୁଜ ଧାନକ୍ଷେତ ପୋଡ଼ି ଧୂସର ହୋଇଗଲା। ଗରିଲାମାନଙ୍କୁ ପରାସ୍ତ କରିବା ପାଇଁ ଏଭଳି ନାରକୀୟ ଓ ନୃଶଂସ କାମ ଯୁକ୍ତରାଷ୍ଟ୍ର ଆମେରିକା କଲେ ମଧ ଭିଏତନାମ ଯୁଦ୍ଧରେ ପରାସ୍ତ ହେଲା। ଏଜେଣ୍ଟ ଅରେଞ୍ଜ ବିଷ ଯୋଗୁଁ ଲକ୍ଷ ଲକ୍ଷ ଭିଏତନାମବାସୀ ମୃତ୍ୟୁବରଣ କଲେ। ଗର୍ଭବତୀମାନେ ବିକଳାଙ୍ଗ, ଅନ୍ଧ, ଅକର୍ମଣ୍ୟ, ଶିଶୁ ଜନ୍ମକଲେ। ହଜାର ହଜାର ଗର୍ଭପାତ ହେଲା। ଆମେରିକା ସୈନ୍ୟମାନେ ଏ ବିଷରୁ ବା କିପରି ରକ୍ଷା ପାଇଥାନ୍ତେ? ଆଜିବି ବୃଦ୍ଧ, ରୋଗଗ୍ରସ୍ତ ସୈନ୍ୟମାନେ ମୃତ୍ୟୁସହିତ ସଂଗ୍ରାମରତ। କ୍ଷତିପୂରଣ ପାଇଁ ଆମେରିକା, କାନାଡ଼ା, ଅଷ୍ଟ୍ରେଲିଆର ଅଦାଲତର ଆଶ୍ରୟ ନେଉଛନ୍ତି। ୨,୪-ଡି ରେ Dioxin ଭଳି ମାରାତ୍ମକ ବିଷ ଅଛି। ଯାହାକି ଯୁବକମାନଙ୍କୁ ନଂପୁସକ ଓ ଯୁବତୀମାନଙ୍କୁ ବନ୍ଧ୍ୟା କରିଦେଉଛି। ଏହା ଏପରି ମାରାତ୍ମକ ଯେ ହୁଏତ ଆଉ ୨୦/୨୫ବର୍ଷ ପରେ ପୃଥିବୀରେ ଲୋକସଂଖ୍ୟା ଅହେତୁକ ଭାବେ କମିଯିବା ପାଇଁ ସହାୟକ ହେବ। (Our stolen Future - Theocolborn, Dianne Dumanoski & John Peteson Myers - 1996)। ଅଧିକ ଉତ୍ପାଦନ ଆଳରେ ଆଜିବି କୃଷି ବିଜ୍ଞାନୀମାନେ ୨,୪-ଡି ବ୍ୟବହାର ପାଇଁ ସୁପାରିଶ କରନ୍ତି। କିନ୍ତୁ ଅଧିକ ଉତ୍ପାଦନ କାହାପାଇଁ? ଭବିଷ୍ୟତରେ ମଣିଷ ତ ଉତ୍ପାଦନ ହେବନି। ଅନୁମାନ କରାଯାଏ ଯଦି କେବଳ ମନ୍‌ସାଣ୍ଟୋର ଏହି ସବୁ କୀଟନାଶକକୁ ଯଥାକ୍ରମେ ନିଷିଦ୍ଧ କରାନଯାଏ ଏମାନେ ପୃଥିବୀକୁ ଆସନ୍ତା ୫୦ବର୍ଷ ଭିତରେ ମଙ୍ଗଳ ଗ୍ରହ ଭଳି ଜୀବ ଶୂନ୍ୟ କରିଦେବେ। (Man has lost the capacity to forsee and to forestall. He will end by destroying the earth' - Albert schweitzer)

ଖଜୁରିଗଛର କିସ ବାହୁନିବି ମୂଳରୁ ପାହାଚ ପାହାଚ। ରାସାୟନିକ ସାର ଓ କୀଟନାଶକର ଗୁଣାବଳୀ ବର୍ଣ୍ଣନା କଲେ ୭ଖଣ୍ଡ ମହାଭାରତ ଠାରୁ ଅଧିକ ପୃଷ୍ଠା ହେବ। କୁମ୍ଭୀର ନେଇ ମଝି ନଈରେ କଲାଣି। ସବୁଜ ବିପ୍ଳବର ଯୁଗ ସରିଗଲା। ଖୋଦ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ସବୁଜ ବିପ୍ଳବର ଜନକ ବୋଲାଉଥିବା ଏମ୍.ଏସ୍. ସ୍ୱାମୀନାଥନ ସ୍ୱୀକାର

■ *ଆଉ କେତେ ବିଷ ପିଇଲେ ଚେତିବା... !*

କଲେଣି ଅଧିକ ଅମଳକ୍ଷମ ବା ହାଇବ୍ରିଡ଼ ବିହନର ଆଉ ଉଷ୍ଣତା ନାହିଁ। ଏଥର ଦ୍ୱିତୀୟ ସବୁଜ ବିପ୍ଳବ ବା ଜିନ୍ ବିପ୍ଳବର ଯୁଗ ଆରମ୍ଭ ହେବ ବୋଲି ଘୋଷଣା କରାହେଉଛି। ଗୁଣସୂତ୍ର ପରିବର୍ତ୍ତିତ ବିହନ ଚାଷ ହେବ। ଏଥିରେ ତିନିଗୁଣ ରାସାୟନିକ ସାର ଓ କୀଟନାଶକ ଆବଶ୍ୟକ ପଡ଼ିବ। ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ବେପାର ବଢ଼ିବ। ବିଚରା ଚାଷୀ ସର୍ବସ୍ୱାନ୍ତ ହେବ ଓ ଖାଉଟି ବିଷ ଜ୍ୱାଳାରେ ଛଟପଟ ହେବେ। କୁଳନାଶ ବେଳକୁ ଘୋଡ଼ାମୁହାଁ ପୁଅ ଜନ୍ମ। ଆମ ରାଜନେତା, ବୈଜ୍ଞାନିକ, ଅମଲାତନ୍ତ୍ର ଯେଉଁ ରଙ୍ଗିନ ଚଷମା ପିନ୍ଧିଛନ୍ତି ସେଥିରେ ଚାରିଆଡ଼େ ଖାଲି ସାମ୍ରାଜ୍ୟବାଦୀ ଆମେରିକା, ମନସାଣ୍ଟୋ ଭଳି ବହୁରାଷ୍ଟ୍ରୀୟ କମ୍ପାନୀ ଦେଖାଯାଉଛନ୍ତି। ଆସନ୍ନ ବିପଦରୁ ରକ୍ଷା ପାଇବାର ଗୋଟିଏ ମାତ୍ର ବିକଳ୍ପ ସାର, ଔଷଧ, କମ୍ପାନୀବିହନ ମାୟା ଛାଡ଼ି ଦେଶୀଚାଷକୁ ଆପଣେଇଲେ ଉଜୁଡ଼ା ଖେତ ସଜାଡ଼ି ହୋଇଯିବ। ସୁସ୍ଥ ଓ ସବଳ ଶିଶୁ ଜନ୍ମ ହେବେ। ପ୍ରକୃତି, ପରିବେଶ, ନଦୀ, ସମୁଦ୍ର, ମାଟି ମା' ସମସ୍ତେ ନୂତନ ଜୀବନ ପାଇବେ, ଉତ୍ପାଦନ ମଧ୍ୟ ଅଧିକ ହେବ। ବୃକ୍ଷ ଆୟୁର୍ବେଦ ଫସଲ ସୁରକ୍ଷା ପାଇଁ ରକ୍ଷାକବଚ ହେବ। ବୈଜ୍ଞାନିକ ମାନେ ମାଛ, ବେଙ୍ଗ, ଚେମେଣି, ଝିଟିପିଟି ଓ ସାପ ପରି ଜୀବମାନଙ୍କର ବଂଶବୃଦ୍ଧି ପାଇଁ ଲାଗିଲେ ଏମାନେ ମଶା, ମାଛି ନିୟନ୍ତ୍ରଣ କରିବେ। ପୁନେ ବା ନନ୍ଦନକାନନ ଚିଡ଼ିଆଖାନାରେ କେତେକାଳ ଶାଗୁଣା ରଖି ବଂଶବୃଦ୍ଧି କରାଇପାରିବା ? ଦେଶୀଚାଷ ବିପ୍ଳବ ପାଇଁ ଜାତୀୟ ବିତର୍କ ଆରମ୍ଭ ହେଉ। ଛୋଟ ଓ ନାମମାତ୍ର ଚାଷୀ, ଗାଁର ୬୦/୭୦ ବର୍ଷର ବୁଢ଼ାବୁଢ଼ୀ ହିଁ ଠିକ୍ ବାଟ ଦେଖାଇ ପାରିବେ। ସେମାନଙ୍କୁ ଆଲୋଚନାରେ ଆଗ୍ରାଧିକାର ଦେଲେ ଦେଶ ବଞ୍ଚିଯିବ।



# ସୁନା ହରିଣ ବନାମ ସୁନେଲି ଧାନ

ରାବଣ ସୀତାଙ୍କୁ ବିମୋହିତ କରିବା ପାଇଁ ମାୟାରେ ସୁନାହରିଣ ପଠାଇଥିଲେ। ସୀତାଙ୍କ ଜିଦ୍‌ରେ ରାମ ସୁନାହରିଣ ଧରିବା ପାଇଁ ଦୌଡ଼ିଲେ ଏବଂ ପରେ ପରେ ଛଦ୍ମବେଶୀ ରାବଣ ସୀତାଙ୍କୁ ଅପହରଣ କଲା। ମାତ୍ର ସୁନାହରିଣ ଯେ ରାକ୍ଷସ ଥିଲା ଏହା ଜାଣିଲାବେଳକୁ ଲେଡ଼ିଗୁଡ଼ କହୁଣୀକୁ ବୋହିଗଲାଣି। ଆମଦେଶରେ ଏବେ 'ସୁନେଲି ଧାନ' ଚାଷୀ, ଖାଉଟୀ ଓ ବୁଦ୍ଧିଜୀବୀ ମହଲରେ ସେହିପରି ଏକ ଭେଳିକି ଦେଖାଇଲାଣି। କେନ୍ଦ୍ର ଓ ରାଜ୍ୟ ସରକାରମାନେ ଦେଶସାରା 'ସୁନେଲି ଧାନ' (golden rice)ର ଡେଙ୍ଗୁରା ପିଟୁଛନ୍ତି। କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର, କଟକରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଚାଷୀ ଓ ବୈଜ୍ଞାନିକମାନଙ୍କୁ ଉଦ୍‌ବୋଧନ ଦେଇ ବୈଜ୍ଞାନିକମାନେ ଚାଉଳରେ ଜୀବସାର 'କ', ଲୌହ ଓ ଦସ୍ତା ଭଳି ଧାତୁର ଲବଣ ସ୍ଥାପନ କରିବାକୁ ସମର୍ଥ ହୋଇଥିବାରୁ ବଧେଇ ଦେଇଛନ୍ତି। ଆମ ରାଜ୍ୟରେ କୃଷକସମ୍ପର୍କ ମେଳା, କୃଷକ କ୍ଷେତ୍ର ବିଦ୍ୟାଳୟରେ ଚାଷୀମାନେ 'ସୁନେଲି ଧାନ' ଚାଷ କରିବା ପାଇଁ କୃଷି ଅଧିକାରୀମାନେ ପ୍ରଶିକ୍ଷଣ ଦେଲେଣି। ସୁନେଲି ଧାନ ଏକରକୁ ୪୦/୪ କ୍ୱିଣ୍ଟାଲ ଫଳିବ। ରୋଗପୋକ ହେବନାହିଁ ଏବଂ 'ସୁନେଲି ଚାଉଳ'ର ଭାତ ଖାଇଲେ କେହି ଅନ୍ଧ ବା ରୋଗିଣା ହେବେନାହିଁ। ଆନ୍ତର୍ଜାତୀୟ ଧାନ ଗବେଷଣାକେନ୍ଦ୍ରର ମହାନିର୍ଦ୍ଦେଶକ ଏବଂ ଭାରତୀୟ କୃଷି ବିକାଶ ପରିଷଦର ନିର୍ଦ୍ଦେଶକ ଦେଶସାରା କହି ବୁଲୁଛନ୍ତି, 'ସୁନେଲି ଧାନ'ରୁ ଭାତ ଖାଇଲେ ଆଉ ଅନ୍ଧଶିଶୁ ଜନ୍ମ ହେବେନାହିଁ, ଅନ୍ଧାରକଣା, ଦୃଷ୍ଟିହୀନତା ଓ ପୁଷ୍ଟିହୀନତା ରହିବ ନାହିଁ।' ବାଙ୍ଗାଲୋର୍ କୃଷି ବିଶ୍ୱବିଦ୍ୟାଳୟରେ 'ସୁନେଲି ଧାନ'ର କ୍ଷେତ୍ରପରୀକ୍ଷା ୨୦୦୪ମସିହାଠାରୁ ଆରମ୍ଭ ହୋଇଯାଇଛି। ଗାଁ ଗଣ୍ଡାରେ ଲୋକେ କଥାହେଲେଣି- 'ଆରେ ନୂଆଧାନ ଆସୁଛି, ସୁନେଲି ଧାନ। ଏହାର ଭାତଖାଇଲେ ଅନ୍ଧର ଆଖି ଫିଟିଯିବ, ଛୋଟା ଦୌଡ଼ିବ, ଆମପିଲାଙ୍କ

ଦେହରେ ରକ୍ତ ପିଚିକିବ। ସମସ୍ତେ ବଲୁଆ ହୋଇଯିବା। ରୋଗ ବୈରାଗ ରହିବ ନାହିଁ। ବିଜ୍ଞାନ କ'ଣ ନକରୁଛି କିରେ ଭାଇ' ଏହା ଜାଣ ଗୋଟେ ସରକାରୀ ହୁକୁମ୍!

୧୯୬୬ରେ ପାଳନ କରାଯାଏ ପ୍ରଥମ ଆନ୍ତର୍ଜାତିକ ଧାନବର୍ଷ। କୁହୁକ ବିହନ ଆଇ.ଆର୍-୮ର ଜନ୍ମ। ଦେଶୀ ବିହନ ବଦଳରେ ଅଧିକ ଅମଳକ୍ଷମ ବିହନ (ଲୋକେ ଏହାକୁ ପେଟୁଆ ବିହନ କୁହନ୍ତି) ଚାଷୀଦୁଆରେ ପହଞ୍ଚିଲା। ରାସାୟନିକ ସାର, କୀଟନାଶକ ବିଷ ଓ କେନାଲ ପାଣିର ବହୁଳ ପ୍ରୟୋଗ। ବଡ଼ ବଡ଼ ଚାଷୀମାନଙ୍କର ଅଣ୍ଟା ଦମ୍ଭ। ପାଣିଭଳି ଖର୍ଚ୍ଚ କରି ନୂଆଚାଷରେ ମାଡ଼ିଗଲେ। ସବୁଜ ବିପ୍ଳବ ନାଁ ଦେଶସାରା ବ୍ୟାପିଗଲା। ୧୦/୧୫ବର୍ଷ ଅଧିକ ଉତ୍ପାଦନ ମିଳିଲା। ଅଧିକ ଅମଳକ୍ଷମ ଧାନ ଓ ଗହମ ବିହନ ଉଦ୍‌ଭାବନ କରିଥିବା ଯୋଗୁଁ ୧୯୭୦ରେ ନର୍ମାନ ବୋଲଗ ନୋବେଲ ପୁରସ୍କାର ପାଇଗଲେ। ୧୦ହଜାର ବର୍ଷରୁ ଅଧିକ ସମୟ ଧରି ଗୁଣମାନ ଅକ୍ଷୁଣ୍ଣ ରଖିଥିବା ଆମଦେଶର ଏକଲକ୍ଷ କିସମର ଧାନବିହନ ବୁଡ଼ିଗଲା। ଲଙ୍ଗଳ, ବଳଦ ବଦଳରେ ଟ୍ରାକ୍ଟରର ରାଜୁତି ଚାଲିଲା। ଅଚଳ ଦୋଅଣି ଚଞ୍ଚଳ ଚଳେ। ଛୋଟ ଚାଷୀ, ନାମମାତ୍ର ଚାଷୀ ଓ ଭାଗଚାଷୀମାନେ ମଧ୍ୟ ନୂଆଚାଷ ଦୌଡ଼ରେ ସାମିଲ ହୋଇଗଲେ। ଆମ ଦେଶର ୭୦ପ୍ରତିଶତ ଚାଷୀ ଛୋଟଚାଷୀ। ବିହନ, ସାର, କୀଟନାଶକ ଓ ପାଣିକିଣିବା ପାଇଁ ପଇସା ନାହିଁ। ଗାଁ ମହାଜନଠାରୁ କରଜକରି ଚାଷରେ ଖର୍ଚ୍ଚକଲେ ଆଶା ଅଧିକ ପାଇବେ। ୧୯୮୦-୮୨ଠାରୁ ଉତ୍ପାଦନ କମିବାକୁ ଆରମ୍ଭ କଲା। କୁହୁକ ବିହନ ଏକରକୁ ୨୫-୩୦କ୍ୱିଣ୍ଟାଲ ଉତ୍ପାଦନର ପ୍ରତିଶ୍ରୁତି ଦେଇଥିଲା। ୨୦୦୫ର ଅର୍ଥନୈତିକ ସର୍ଭେରୁ ଜଣାପଡ଼େ ଆମ ଦେଶରେ ଧାନର ଉତ୍ପାଦନ ଏକରକୁ ୭/୮କ୍ୱିଣ୍ଟାଲ। ଓଡ଼ିଶାର ଏହି ହାର ୫/୬ କ୍ୱିଣ୍ଟାଲ ମାତ୍ର। ଏବେ ଆଉ ଚାଷର ଖର୍ଚ୍ଚ ଉଠୁନାହିଁ। ଚଲାଖିଆ ଜମି-ମାଲିକ ନିଜେ ଚାଷ ନକରି ଜମି ଭାଗଚାଷକୁ ଦେଉଛନ୍ତି।

ମାଟି ମା' ବିଷ ପିଇ ପିଇ କୋମା। ମାଟିର ଆଉ ବଳନାହିଁ, ଖପରା ପାଲଟିଗଲାଣି। ମାଟିରେ ଥିବା କୋଟି କୋଟି ଅଣୁଜୀବ, ଜିଆ, ଗେଣ୍ଡା, କଙ୍କଡ଼ା ଓ ବେଙ୍ଗର ବଂଶ ନିପାତ ହୋଇଗଲାଣି। ପରିବେଶ ପ୍ରଦୂଷିତ, ଖାଦ୍ୟ ଓ ପାଣିରେ ବିଷ। ପଞ୍ଜାବର ଭଟିଣ୍ଡାଠାରୁ ଅମୃତସର ପ୍ରତିଦିନ ଗୋଟିଏ ରେଳଗାଡ଼ି ଚାଲୁଛି ଯାହାକୁ ଲୋକେ କ୍ୟାନସର ଏକ୍ସପ୍ରେସ୍ ବୋଲି କୁହାକୁହି ହୁଅନ୍ତି। ପଞ୍ଜାବ ପ୍ରଥମେ ଦେଶରେ ସବୁଜ ବିପ୍ଳବ ବାନା ଉଡ଼ାଇଥିଲା। କୀଟନାଶକ ବିଷର ପ୍ରଭାବରେ ସେଠାରେ କର୍କଟରୋଗୀ ଅଧିକ। ଗତ ୧୦ବର୍ଷ ଭିତରେ ଆମଦେଶରେ ରାସାୟନିକ କୃଷି ଯୋଗୁଁ ଦେଢ଼ଲକ୍ଷ ଚାଷୀ ଆତ୍ମହତ୍ୟା କରିଛନ୍ତି।

ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ସବୁଜ ବିପ୍ଳବର ଜନକ ବୋଲାଉଥିବା ଡଃ ଏମ୍.ଏସ୍. ସ୍ୱାମୀନାଥନ ଏବେ କହି ବୁଲୁଛନ୍ତି, 'ସବୁଜ ବିପ୍ଳବର ଉଷ୍ମତା ଆଉ ନାହିଁ। ଏଣିକି ଦ୍ୱିତୀୟ ସବୁଜ ବିପ୍ଳବ ବା ଚିରସବୁଜ ବିପ୍ଳବର ସମୟ ଆସିଛି। ଅଧିକ ଅମଳକ୍ଷମ ବା ଶଙ୍କରଜାତୀୟ ବିହନ ଆଉ ନୁହେଁ। ଜୈବ ପ୍ରଯୁକ୍ତି ବିଦ୍ୟା (Bio Technology) ଏବଂ ଜେନେଟିକ୍ ଇଞ୍ଜିନିୟରିଂ ପ୍ରୟୋଗରେ ବିଟି ବା ଜି.ଏମ୍ (Genetic Modified) ବିହନ କମ୍ପାନୀମାନେ ବାହାର କଲେଣି। ଏହି ବିହନରୁ ଏକରକୁ ୪୦-୫୦କ୍ୱିଣ୍ଟାଲ ଧାନ ଅମଳ ହେବ। ରୋଗପୋକ ନାହିଁ। ଚାଉଳରେ ପୁଷ୍ଟିସାର, ଜୀବସାର-କ, ଦସ୍ତା ଓ ଲୌହ ଭରପୁର ରହୁଥିବାରୁ ଲୋକେ ସୁସ୍ଥସବଳ ହେବେ।' କୌଶଳ ପ୍ରୟୋଗ (Knowledge Initiative in Agriculture)। ଚାଷୀ ଦିବାସ୍ୱପ୍ନ ଦେଖିବା ପାଇଁ, ଖାଉଟୀକୁ ପ୍ରଲୋଭିତ କରିବା ପାଇଁ ଏବଂ ବୁଦ୍ଧିଜୀବୀମାନଙ୍କୁ ବିଭ୍ରାନ୍ତ କରିବାପାଇଁ ପୁଣି ଏହା ଏକ ଇନ୍ଦ୍ରଜାଲ। ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ବେୟର, ଡୋ, ବେୟରକ୍ରପ ସାଇନ୍ସ ଭଳି ବହୁରାଷ୍ଟ୍ରୀୟ କମ୍ପାନୀ ମାନଙ୍କର ପୁଣି ଏକ ଷଡ଼ଯନ୍ତ୍ର। ଚାଷୀ, ଖାଉଟୀ ଓ ବୁଦ୍ଧିଜୀବୀମାନେ 'ସୁନେଲି ଧାନ' ପଛରେ ଦୌଡ଼ା ଆରମ୍ଭ କରିଦେଲେଣି। ଆୟୋଡ଼ିନ୍‌ଯୁକ୍ତ ଲୁଣର ପ୍ରହେଳିକା ପରେ 'ସୁନେଲି ଧାନ'ର ଭେଳିକି।

୨୦୦୪ବର୍ଷଟିକୁ 'ଦ୍ୱିତୀୟ ଆନ୍ତର୍ଜାତିକ ଧାନ ବର୍ଷ' ଭାବେ ଏସିଆ ମହାଦେଶର ଦେଶମାନଙ୍କରେ ବେଶ୍ ଜାକଯମକରେ ପାଳିତ ହୋଇଯାଇଛି। ବହୁରାଷ୍ଟ୍ରୀୟ ବିହନ କମ୍ପାନୀମାନଙ୍କ ପଇସାରେ ବିଶ୍ୱ ଖାଦ୍ୟ ସଂସ୍ଥା, ରକ୍‌ଫେଲର ଫାଉଣ୍ଡେସନ, ଫୋର୍ଡ଼ ଫାଉଣ୍ଡେସନ୍ ଏବଂ ଆନ୍ତର୍ଜାତିକ ଧାନ ଗବେଷଣା କେନ୍ଦ୍ର, ଫିଲିପାଇନ୍ସ ଏବଂ ଭାରତର ଭାରତୀୟ କୃଷି ଗବେଷଣା ପ୍ରତିଷ୍ଠାନ ମିଳିତ ଉଦ୍ୟମରେ ଏହି ଧାନବର୍ଷର ଧମାକା। 'ସୁନେଲି ଧାନ'ର ଶୁଭ ମହୁରତ। ଡ୍ରିମ ରାଇସ୍, ପ୍ରୋଟିନ୍ ରାଇସ, ଫର୍ମାସ୍ୟୁଟିକାଲ ରାଇସ, ଲିବର୍ଟି ଲିଙ୍କ୍ ରାଇସ, ହର୍ବସାଇଡ଼ ରେଜିଷ୍ଟାଣ୍ଟ ରାଇସ୍ ଭଳି ବହୁକିସମର ବିଟି ବା ଜି.ଏମ୍ ଧାନ ବିହନ 'ସୁନେଲି ଧାନ' ପଛକୁ ଧାଡ଼ି ବାନ୍ଧିଛନ୍ତି। କମ୍ପାନୀମାନେ ଏହିସବୁ କିସମ ବିହନର ମାଲିକ।

ବହୁଚର୍ଚ୍ଚିତ 'ସୁନେଲି ଧାନ' (Golden Rice)ର ରହସ୍ୟ କ'ଣ? ଏହାର ଜନ୍ମବୃତ୍ତାନ୍ତ କ'ଣ? ଏହା ପଛରେ ସାମ୍ରାଜ୍ୟବାଦୀ ଶକ୍ତି ଓ ସେହି ଦେଶର ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଷଡ଼ଯନ୍ତ୍ର କ'ଣ? ଛୋଟ ଓ ନାମମାତ୍ର ଚାଷୀଠାରୁ ଚାଷ ଛଡ଼ାଇ ନେଇ

■ *ଆଉ କେତେ ବିଷ ପିଇଲେ ଚେତିବା... !*

କର୍ପୋରେଟ ଚାଷ ପ୍ରବର୍ତ୍ତନ ପାଇଁ ଆମ ସରକାରଙ୍କର ଏହା ଏକ ଗୁପ୍ତମସୁଧା ନୁହେଁ ତ ? ଠିକାଚାଷ ବା କମ୍ପାନୀଚାଷ ପାଇଁ ଏହା ପଥ ପରିଷ୍କାର କରିବ ନାହିଁ ତ ? ଆମ ସ୍ୱାସ୍ଥ୍ୟ ଉପରେ ସୁନେଲି ଚାଉଳର ପ୍ରଭାବ କ'ଣ ? ସ୍ୱାସ୍ଥ୍ୟ ପାଇଁ ନିରାପଦ ତ ? ଏହି ପ୍ରଶ୍ନଗୁଡ଼ିକ ଯେକୌଣସି ଦେଶପ୍ରେମୀ ଚିନ୍ତାଶୀଳ ବ୍ୟକ୍ତି ମନକୁ ଆସିବ । ଉତ୍ତର ଖୋଜିବାର ସମୟ ଆସିଛି ।

ଭାରତୀୟ କୃଷି, ସାମ୍ରାଜ୍ୟବାଦୀ ଆମେରିକା ଓ କେତେକ ପୁଞ୍ଜିବାଦୀ ପଶ୍ଚିମଦେଶମାନଙ୍କ ନିୟନ୍ତ୍ରଣରେ ଆମେରିକାର ଫୋର୍ଡ୍ ଫାଉଣ୍ଡେସନ୍, ରକଫେଲର୍ ଫାଉଣ୍ଡେସନ ଓ ମାନିଲାଠାରେ ଥିବା ଆନ୍ତର୍ଜାତିକ ଧାନ ଗବେଷଣାକେନ୍ଦ୍ର(ଇରି) ବହୁରାଷ୍ଟ୍ରୀୟ ବିହନ କମ୍ପାନୀ ମାନଙ୍କର ଦଲାଲି କରିବାକୁ ଠିକା ନେଇଛନ୍ତି । ଆମ ଦେଶରେ ଆଇସିଏଆର (ICAR), ସିଆରଆରଆଇ (CRRI) ଓ କୃଷି ବିଶ୍ୱବିଦ୍ୟାଳୟ କମ୍ପାନୀ ବିହନ, ସାର ଓ କୀଟନାଶକର ପ୍ରଚାର ଓ ପ୍ରସାର ପାଇଁ ବିଶ୍ୱ ବ୍ୟାଙ୍କ ଓ ବିଶ୍ୱବାଣିଜ୍ୟ ପ୍ରତିଷ୍ଠାନ ପାଖରେ ଅଙ୍ଗୀକାରବଦ୍ଧ । ପ୍ରଶାସନ, କୃଷିବିଜ୍ଞାନ ଓ ରାଜନୈତିକ ବଡ଼ପଣ୍ଡାମାନଙ୍କୁ ପ୍ରଭାବିତ କରିବା ପାଇଁ ମନ୍‌ସାଣ୍ଟୋ ବର୍ଷକୁ ୩୦ହଜାରକୋଟି ଟଙ୍କା ଖର୍ଚ୍ଚ କରିଥାଏ ।

ପୃଥିବୀରେ ପ୍ରାୟ ୩୨୦କୋଟି ଲୋକଙ୍କର ପ୍ରଧାନ ଖାଦ୍ୟ ଭାତ । ପୃଥିବୀରେ ୧୧୩ଟି ଦେଶରେ ଧାନଚାଷ ହୁଏ । ଏସିଆ ମହାଦେଶରେ ଧାନ ପ୍ରଥମେ ଚାଷ କରାଯାଇଥିଲା । ଏସିଆ ଓ ଆଫ୍ରିକାର ଛୋଟ ଚାଷୀମାନେ ପୃଥିବୀର ମୋଟ ଧାନ ଉତ୍ପାଦନର ୮୦ ପ୍ରତିଶତ ଉତ୍ପାଦନ କରିଥାନ୍ତି । ଭାରତ, ଚୀନ୍ ଏବଂ ଇଣ୍ଡୋନେସିଆ ମୋଟ ଉତ୍ପାଦିତ ଧାନର ୬୦ପ୍ରତିଶତ ଖାଦ୍ୟ ପାଇଁ ବ୍ୟବହାର କରିଥାନ୍ତି । ଏହି କାରଣରୁ ଧାନର ବିହନ, ରାସାୟନିକ ସାର, କୀଟନାଶକ ବିଷ ଓ ପାଣି କମ୍ପାନୀମାନଙ୍କ ନିୟନ୍ତ୍ରଣକୁ ଆସିଗଲେ ସେମାନେ ଭାରତୀୟ କୃଷିକ୍ଷେତ୍ରରେ ଅଖଣ୍ଡ ପ୍ରଭୁତ୍ୱ ହାସଲ କରିପାରିବେ । ଏହାହିଁ ଆମ କୃଷିର ରାଜନୈତିକ ଅର୍ଥନୀତି । ୧୯୮୫ବେଳକୁ ସବୁଜ ବିପ୍ଳବର ନିଶା କମିଆସିଲାଣି । ଚାଷୀ ବିକଳ୍ପ ଚିନ୍ତା ଆରମ୍ଭ କଲା । ପୁଣି ଦେଶୀଧାନ ବିହନ, ହଳ ଲଙ୍ଗଳ ଓ ଦେଶୀ ଖତ ଆଡ଼କୁ ମୁହାଁଇବା ସୁରାକ କମ୍ପାନୀମାନେ ପାଇଗଲେ । ବେପାର ତ' ଭୁଷୁଡ଼ି ପଡ଼ିବ । ସେମାନେ ବି ବ୍ୟବସାୟ ଚାଲୁ ରଖିବାପାଇଁ ନୂତନ ଉପାୟ ଖୋଜିଲେ । କୃଷି ବୈଜ୍ଞାନିକମାନଙ୍କୁ କାମରେ ଲଗାଇଲେ । କୃଷି ବୈଜ୍ଞାନିକମାନଙ୍କ ମଧ୍ୟରୁ ଅଧିକାଂଶ କମ୍ପାନୀ ପଇସାରେ ପାଠପଢ଼ନ୍ତି । ଭାରତବର୍ଷର ସବୁ କୃଷି ବିଶ୍ୱବିଦ୍ୟାଳୟ ଓ କୃଷି

ଗବେଷଣା କେନ୍ଦ୍ର ଆଜିକାଲି ମୁଖ୍ୟତଃ କମ୍ପାନୀ ପଇସାରେ ଚାଲୁଛି । ବୈଜ୍ଞାନିକମାନଙ୍କୁ ବରାଦ କଲେ 'ନୂଆ କିସମ ଧାନ ବିହନ ଉଦ୍ଭାବନ କର' । ସୁଇସ୍ ଫେଡ଼େରାଲ ଇନଷ୍ଟିଚ୍ୟୁଟ ଅଫ ସାଇନ୍ସର ବୈଜ୍ଞାନିକ ଡଃ ପୋଟ୍ରିକସ୍ ୧୯୯୫ବେଳକୁ ଗୁଣସୂତ୍ର ପରିବର୍ତ୍ତିତ (BT Rice) ଧାନବିହନ ଉଦ୍ଭାବନ କରିବାକୁ ସକ୍ଷମ ହେଲେ । ସିବା ଗିଗି (ବର୍ତ୍ତମାନର ନୋଭାରଟିସ୍) ଠାରୁ ଗୋଟିଏ ଜିନ୍ (gene) ସଂଗ୍ରହ କରି ଏହାକୁ ଇଣ୍ଡିକା ରାଇସ୍ ସହିତ ବିଜ୍ଞାନାଗାରରେ ମଡ଼ିଫିକେସନ୍ କଲେ । ୧୯୯୫ଏପ୍ରିଲମାସରେ ଡଃ ପୋଟିକ୍ରସ୍ ଏହି ବିଟି ଧାନ ବିହନର ନମୁନାର କ୍ଷେତ୍ରପରୀକ୍ଷା କରିବା ପାଇଁ ଇରିକୁ ପଠାଇଲେ । ପରିବେଶ ସୁରକ୍ଷାପାଇଁ କାମ କରୁଥିବା ଗ୍ରୀନ୍‌ପିସ୍ ହାତରେ ଧରାପଡ଼ିଲେ । ଜି.ଏମ୍. ବିହନ ରପ୍ତାନୀ ପାଇଁ ଆବଶ୍ୟକ ପରମିଟ୍ ନଥିଲା । ତେବେ ସପ୍ତାହକ ମଧ୍ୟରେ ଏହି ବିହନର ଏକାଧିକ ପ୍ୟାକେଟ୍ କୂଟନୈତିକ ବାଟରେ ଫିଲିପାଇନ୍ସକୁ ପଠାଗଲା । ଫିଲିପାଇନ୍ସର ଚାଷୀ ସଙ୍ଗଠନ ଏପରିକି ଇରିର ପ୍ରକୃତିପ୍ରେମୀ ବୈଜ୍ଞାନିକମାନେ ଏହି ବିଟି ଧାନର କ୍ଷେତ୍ରପରୀକ୍ଷାର ଦୃଢ଼ ବିରୋଧ କଲେ ।

ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା ଓ ବେୟର କ୍ରପ ସାଇନ୍ସ ପୁଣି ଏକ ଅଭିନବ ଚାଲ୍ କଲେ । ସେମାନେ ଜାଣିଥିଲେ ଭାତରୁ ମଣିଷ ୩୦ପ୍ରତିଶତ କ୍ୟାଲୋରୀ ପାଇଥାଏ । ଭାତରେ ଥିଆମିନ୍, ରିବୋଫ୍ଲାବିନ, ନିଆସିନ ଏବଂ ତନ୍ତୁ ଜାତୀୟ ଖାଦ୍ୟ ଯଥେଷ୍ଟ ପରିମାଣରେ ଥାଏ । ଦେଶୀ ନାଲି ଚାଉଳରେ ଲୌହ ଓ ଦସ୍ତା ମଧ ଥାଏ, ମାତ୍ର ଜୀବସାର 'କ' ବା ବେଟାକ୍ୟାରୋଟିନ୍ ନଥାଏ । ଚାଉଳରେ ଜୀବସାର 'କ' ଅଭାବକୁ ପୁଞ୍ଜି କରି ଏହି ବହୁରାଷ୍ଟ୍ରୀୟ ବିହନ କମ୍ପାନୀମାନେ ଏକ ନୂଆ କିସମର ଧାନ ଉଦ୍ଭାବନ ପାଇଁ ବୈଜ୍ଞାନିକମାନଙ୍କୁ ବରାଦ ଦେଲେ । ପୁଣି ଷଡ଼ଯନ୍ତ୍ର । ଗତ ୪୦ବର୍ଷ ରାସାୟନିକ କୃଷିଯୁଗରେ ଚାଷୀ କେବଳ ଧାନ-ଧାନ-ଧାନ ବା ଧାନ - ଗହମ - ଧାନ ଏହିପରି ଗୋଟିଏ ବା ଦୁଇଟି ଫସଲ ଚାଷ କରିଚାଲିଲେ । ୧୯୬୬ପୂର୍ବରୁ ନିରନ୍ତର କୃଷି ସମୟରେ ଜଣେ ଚାଷୀ ବର୍ଷକ ଭିତରେ ସର୍ବନିମ୍ନ ୪୦ପ୍ରକାରର ଫସଲ ବା ପନିପରିବା ଚାଷ କରୁଥିଲା । ସବୁଜ ବିପ୍ଳବ ଯୋଗୁଁ ପନିପରିବା ବା ଶାଗଜାତୀୟ ଚାଷ ପ୍ରାୟ ଲୋପ ପାଇଗଲା । ଏଥିଯୋଗୁଁ ଖାଦ୍ୟରେ ଭିଟାମିନ୍ - 'ଏ' ବା ବେଟାକ୍ୟାରୋଟିନ ଅଭାବ ପଡୁଛି । ୧୯୬୬ ପରେ ଅନ୍ଧ, ଦୃଷ୍ଟିଶକ୍ତି ଊଣା ବା ପୁଷ୍ଟିହୀନତା ରୋଗର ଏସିଆ ଓ ଆଫ୍ରିକୀୟ ଦେଶମାନଙ୍କରେ ଉତ୍କଟ ରୂପ ନେଇଛି । ଧାନ କିସମରେ ଭିଟାମିନ୍-ଏ ରଖିପାରିଲେ ପ୍ରଚାର ଓ ପ୍ରସାର ମାଧ୍ୟମରେ ଏହାର ଚାଷ ବଢ଼ାଇ ଦିଆଯାଇ ପାରିବ ।

ବେପାର ଭଲ ହେବ। ବହୁରାଷ୍ଟ୍ରୀୟ କମ୍ପାନୀମାନେ କିପରି ପୃଥିବୀରେ ଜିଏମ୍ ବିହନ, କୀଟନାଶକ ଓ ଖାଦ୍ୟ ଦ୍ରବ୍ୟ ବଜାର ନିୟନ୍ତ୍ରଣ କରୁଛନ୍ତି ନିମ୍ନରେ ବର୍ଣ୍ଣିତ ସାରଣୀ (୧,୨,୩)ରୁ ଅନୁମାନ କରାଯାଇପାରିବ।

୨୦୦୫ ମସିହାରେ ଏହି କମ୍ପାନୀମାନେ ୧୭୦୦କୋଟି ଡଲାର ଅର୍ଥାତ୍ ୬୮,୦୦୦ କୋଟି ଟଙ୍କାର ଜି.ଏମ୍. ବିହନ ବେପାର କରିଥିଲେ। (Green Peace Report on G.M- Seed - 2006) କମ୍ପାନୀମାନେ ବେପାର ଜାରି ରଖିବା ପାଇଁ ଭିଟାମିନ୍-ଏ ଥିବା ଧାନବିହନ ଉଭାବନ ପାଇଁ ବୈଜ୍ଞାନିକମାନଙ୍କୁ ପୁଣି ପୁଞ୍ଜି ଯୋଗାଇଦେଲେ।

ସୁଇସ୍ ଫେଡ଼େରାଲ୍ ଇନଷ୍ଟିଚ୍ୟୁଟ ଅଫ ଟେକ୍ନୋଲୋଜିର ବୈଜ୍ଞାନିକ ଡଃ ଇନ୍‌ଗୋ ପୋଟ୍ରିକ୍ସ ଓ ଜର୍ମାନର ଫ୍ରେବର୍ଗ ବିଶ୍ୱବିଦ୍ୟାଳୟର ବୈଜ୍ଞାନିକ ଡଃ ପିଟର ବେୟର ଭିଟାମିନ୍ - ଏ ଯୁକ୍ତ ଧାନ ବିହନ ବାହାର କରିବାକୁ ଲାଗିପଡ଼ିଲେ। ଡଃ ପୋଟ୍ରିକସ୍ ଡ୍ୟାଫୋଡ଼ିଲ ଫୁଲରୁ ଜୀବସାର-କ ବା ବେଟା-କ୍ୟାରୋଟିନ ଥିବା ୨ଟି ଜିନ୍‌ସହିତ ପିଟର ବେୟରଙ୍କର ସଏଲ ବ୍ୟାକ୍ଟିରିଅମ୍‌ରୁ (Soil Bacterium) ବ୍ୟାସିଲସ୍ ଥୁରିଞ୍ଜେସିସ୍ ନାମକ ଗୋଟିଏ ଜିନ୍ ନେଲେ । ଏହାକୁ ତାଇପେ-୩୦୯ ଜାପାନିକା ଧାନ କିସମ ସହିତ ମିଶାଇ ଗୁଣସୂତ୍ର ପରିବର୍ତ୍ତନ ପ୍ରକ୍ରିୟାରେ (Genetic Modification Technology) ଏକ ନୂତନ କିସମର ଜିଏମ୍ ଧାନ ବିହନ ଉଭାବନ କଲେ। ୧୯୯୯ ଅଗଷ୍ଟ ମାସରେ ଗବେଷଣାଗାରରେ ଏହି କାର୍ଯ୍ୟ ସମ୍ପାଦନା କରାଗଲା। ଏହି ନୂଆ କିସମ ଧାନର ନାମ ରଖିଲେ 'ସୁନେଲି ଧାନ' (Golden Rice)। ଏହା ଗୋଟିଏ କିସମର ବିଟି/ ଜିଏମ୍ ଧାନ। ଜୀବସାର-କ' ସହିତ ବ୍ୟାସିଲସ୍ ଥୁରିଙ୍ଗସିସ୍ ଥିବା ଯୋଗୁଁ 'ସୁନେଲି ଧାନ' କ୍ଷେତରେ କନ୍ଦକଟା ରୋଗ (Stem Borer) ରହିବ ନାହିଁ। କାରଣ ଥୁରିଙ୍ଗସିସ୍‌ର ବିଷ ସମୁଦାୟ ଧାନ ଗଛଟିକୁ ବ୍ୟାପିଯିବ। କନ୍ଦକଟା କୀଟ ଏହି ବିଷ ପ୍ରଭାବରେ ମରିଯିବ। ଏଠାରେ ପ୍ରଶ୍ନ ଉଠେ ଭିଟାମିନ୍- ଏ' ପାଇବା ସହିତ ସୁନେଲି ଧାନ ଚାଉଳରେ ଥୁରିଙ୍ଗସିସ୍ ବିଷର ମାତ୍ରା ରହିବ ନାହିଁକି ?

ସୁନେଲି ଧାନ ବିହନର ନମୁନା ୨୦୦୧ ଜାନୁଆରୀ ୧୯ତାରିଖ ଶୁକ୍ରବାର ଦିନ ଇରିରେ ପହଞ୍ଚିଲା। ଇରିର ବୈଜ୍ଞାନିକମାନେ 'ସୁନେଲି ଧାନ' କ୍ଷେତ୍ର ପରୀକ୍ଷା କରି ଏହାର ଭିଟାମିନ୍-ଏ ଅଭାବ ପୂରଣ କରିବା କ୍ଷମତା ନିର୍ଣ୍ଣୟ କରିବେ। ଭିଟାମିନ୍ - ଏ

ଅଭାବରୁ ପୃଥିବୀରେ ବାର୍ଷିକ ୫ଲକ୍ଷ ଅନ୍ଧ ଶିଶୁ ଜନ୍ମ ନେଉଛନ୍ତି। ୧୦-୧୨ଲକ୍ଷ ଲୋକ ପୁଷ୍ଟିହୀନତା କାରଣରୁ ମୃତ୍ୟୁବରଣ କରୁଛନ୍ତି। ସୁନେଲି ଧାନ ଭାତ ଖାଇଲେ ଏହି ଭୟାନକ ସ୍ୱାସ୍ଥ୍ୟ ସମସ୍ୟା ସମ୍ପୂର୍ଣ୍ଣ ଦୂରୀଭୂତ ହୋଇପାରିବ।

(IRRI Press Releases 2001- 'Golden Rice' Arrives in Asia) (Friday March 23, 2001 - Issued Jointly by IRRI, Rockefeller Foundation and Syngenta AG)

ଇରିର ତତ୍କାଳୀନ ଡାଇରେକ୍ଟର ଜେନେରାଲ ଡଃ ରୋନାଲ୍ଡ ପି. କାଣ୍ଟ୍ରେଲ ସୁନେଲି ଧାନ ଉପରେ ନିଜର ମନ୍ତବ୍ୟ ରଖନ୍ତି ଯେ 'ସୁନେଲି ଧାନ' ଉପରେ ଅଧିକ ଗବେଷଣା କରି ଏହାକୁ ପୃଥିବୀର କୋଟି କୋଟି ଗରିବ ଚାଷୀ ଓ ଖାଉଟୀମାନଙ୍କ ନିକଟରେ ପହଞ୍ଚାଇବା ପାଇଁ ଇରି ପ୍ରତିଶ୍ରୁତିବଦ୍ଧ।' ଇରିର ଡାଇରେକ୍ଟର ଜେନେରାଲ ସୁନେଲି ଧାନର ପ୍ରଚାର ଓ ପ୍ରସାର ପାଇଁ ବାରମ୍ବାର ଭାରତ ଆସି ଭାରତୀୟ କୃଷି ଗବେଷଣା ପରିଷଦ (ICAR) ସହାୟତାରେ ଦିଲ୍ଲୀ ଓ ବଡ଼ ବଡ଼ ସହରରେ 'ସୁନେଲି ଧାନ' ପାଇଁ ନିରନ୍ତର ଓକିଲାତି କରିଛନ୍ତି। ୨୦୦୪ବେଳକୁ 'ସୁନେଲି ଧାନ' ନମୁନା କ୍ଷେତ୍ର ପରୀକ୍ଷା ପାଇଁ ବାଙ୍ଗାଲୋର କୃଷି ବିଶ୍ୱବିଦ୍ୟାଳୟରେ ପହଞ୍ଚି ସାରିଛି। ଏଥିପାଇଁ ଇରି ସହିତ ବିଶ୍ୱବିଦ୍ୟାଳୟର ଏମ୍ ଓ ୟୁ ସ୍ୱାକ୍ଷରିତ ହୋଇଛି।

*(Deccan Herald, Friday, January 02, 2004)*

ବୌଦ୍ଧିକ ଶକ୍ତି ଅଧିକାର ଆଇନ ବଳରେ 'ସୁନେଲି ଧାନ'ର ବିହନ ବେପାର, ଉତ୍ପାଦନ, ଶସ୍ୟ କିଣାବିକା ପାଇଁ ଆବଶ୍ୟକୀୟ ଜ୍ଞାନକୌଶଳର ସର୍ବମୟ କର୍ତ୍ତାମାନେ ହେଲେ ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ଡୋ, ବେୟର ଓ କ୍ରପସାଇନ୍ସ ଭଳି ବହୁରାଷ୍ଟ୍ରୀୟ କମ୍ପାନୀ ମାନେ। ଏଥିସହିତ କମ୍ପାନୀମାନେ 'ସୁନେଲି ଧାନ' ବିହନ ବେପାର କରିବାପାଇଁ ୧୯୬୬ ବିହନ ଆଇନରେ ଯେଉଁସବୁ ଅଙ୍କୁଶ ଥିଲା, ପ୍ରସ୍ତାବିତ ବିହନ ବିଲ୍-୨୦୦୪ରେ ସେଗୁଡ଼ିକ ଉଠାଇଦେଇ ମୁକ୍ତ ବ୍ୟବସାୟ ପାଇଁ ଅନୁକୂଳ ନିୟମମାନ ଖଞ୍ଜାଯାଇଛି। ପେଟେଣ୍ଟ ଆଇନ ସଂଶୋଧନ କରି କମ୍ପାନୀମାନଙ୍କୁ ବିହନ ଉପରେ ମାଲିକାନାର ସମ୍ପୂର୍ଣ୍ଣ ଅଧିକାର ଆମ ସରକାର ଦେଇଛନ୍ତି। ଚାଷୀମାନେ କେବଳ କମ୍ପାନୀ ବିହନ କିଣିବାକୁ ବାଧହେବେ। ନିଜ ପାରମ୍ପରିକ ବିହନ ରଖିପାରିବେ ନାହିଁ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

'ସୁନେଲି ଧାନ' ଉପରେ ସାର୍ବଭୌମ କ୍ଷମତା କମ୍ପାନୀମାନଙ୍କ ହାତରେ ରହିବ। ଏଥିପାଇଁ ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା ଭଳି ୬ଟି ବଡ଼ ବଡ଼ କମ୍ପାନୀ 'ସୁନେଲି ଧାନ'ର ପେଟେଣ୍ଟ ନିଜ ନିୟନ୍ତଣରେ ରଖିଛନ୍ତି। 'ସୁନେଲି ଧାନ'ର ଜ୍ଞାନକୌଶଳ ହସ୍ତାନ୍ତର, ଚାଷୀଠାରୁ ରୟାଲ୍‌ଟି ଆଦାୟ ପାଇଁ କୋହଳ ନୀତି ଏବଂ ଏହାକୁ ଖାଦ୍ୟପାଇଁ ବ୍ୟବହାର ସୁଗମ କରିବା ପାଇଁ ଗୋଟିଏ ମାନବିକ ପରିଷଦ (Humanitarian Board) ଗଠନ କରାଯାଇଛି। ମାତ୍ର ଏହି ପରିଷଦରେ ଇରି, ରକ୍‌ଫେଲର ଫାଉଣ୍ଡେସନ, ଫୋର୍ଡ଼ ଫାଉଣ୍ଡେସନ, ଯେନିକା ଆଗ୍ରୋକେମିକାଲସ୍‌, ବିଶ୍ୱବ୍ୟାଙ୍କ ଓ ସିଞ୍ଜେଣ୍ଟାର ପ୍ରତିନିଧିମାନେ ସଭ୍ୟ ରହିଛନ୍ତି। ସିଞ୍ଜେଣ୍ଟା ଏହି ବୋର୍ଡ଼ର ସମ୍ପାଦକ। ଭାରତୀୟ ଜୈବ ପ୍ରଯୁକ୍ତି ବିଦ୍ୟା ବିଭାଗ (Department of Bio-Technology) ଏବଂ ସୁଇସ୍ ଡେଭେଲପ୍‌ମେଣ୍ଟ ଏଜେନ୍ସି (SDC) 'ସୁନେଲି ଧାନ'କୁ ଲୋକପ୍ରିୟ କରିବା ପାଇଁ ଅର୍ଥ ସହାୟତା କରିବ। କମ୍ପାନୀମାନେ ଗରିବ ଚାଷୀମାନଙ୍କର ସ୍ୱାର୍ଥ ସୁରକ୍ଷା ପାଇଁ ମାନବିକ ପରିଷଦ ମଧ୍ୟ ଲକ୍ଷ୍ୟ ରଖିବ। ଚୋରହାତରେ ଚାବିକାଠି। ଭକ୍ଷକକୁ ରକ୍ଷକ ଦାୟିତ୍ୱ। ଆମଦେଶର ଜଣେ ହେଲେ ଚାଷୀ ବା ଚାଷୀ ସଙ୍ଗଠନ ବା ସରକାରୀ ସଂସ୍ଥା ଏହି ମାନବିକ ପରିଷଦର ସଭ୍ୟ ହେବାପାଇଁ କ'ଣ ଯୋଗ୍ୟ ନୁହନ୍ତି ?

'ସୁନେଲି ଧାନ' ଏକ ସ୍ୱତନ୍ତ ଗୁଣଥିବା ଜିଏମ୍ ଧାନକିସମ। ଏହି ବିହନର ମୂଲ୍ୟ କିଲୋପ୍ରତି ୫୦୦ରୁ ୧୦୦୦ଟଙ୍କା ହେବ। ଗରିବ ଚାଷୀପାଇଁ ଏହା ସମ୍ପୂର୍ଣ୍ଣ ଅପହଞ୍ଚ। ଅଧିକ ଅମଳକ୍ଷମ ଧାନଠାରୁ 'ସୁନେଲି ଧାନ'ର ଚାଷ ୨ଗୁଣ ରାସାୟନିକ ସାର ଓ କୀଟନାଶକ ଦରକାର କରିବ। ପ୍ରଥମେ ବର୍ଷେ, ୨ବର୍ଷ ରିହାତି ଦରରେ ଚାଷୀକୁ ମନେଇବା ପାଇଁ ବିହନ, ସାର ଓ କୀଟନାଶକ ଏହି କମ୍ପାନୀମାନେ ଯୋଗାଇବେ। ଚାଷୀ ପ୍ରତିବର୍ଷ କମ୍ପାନୀଠାରୁ ବିହନ କିଣିବାକୁ ବାଧ୍ୟ। କାରଣ ବିହନର ଭ୍ରୁଣକୁ ମାରିଦେବା ପାଇଁ ଏଥିରେ ଅନ୍ୟ ଏକ ବିଷ-ଜିନ୍ ସଂଯୋଗ କରାଯାଇଥାଏ। ଏହାକୁ ଟର୍ମିନେଟର ଟେକ୍ନୋଲଜି କୁହାଯାଏ। ଉତ୍ପନ୍ନ ଶସ୍ୟ କେବଳ ଖାଦ୍ୟ ପାଇଁ ବ୍ୟବହାର କରାଯାଇପାରିବ। ସେଥିରୁ ବିହନ ବୁଣିଲେ ଗଛ ହେବନାହିଁ। ଛୋଟ ନାମମାତ୍ର ଚାଷୀଙ୍କ ପାଇଁ ଚାଷ ବ୍ୟୟବହୁଳ ହେବ ଓ ସେମାନେ କରଜିଆ ହୋଇଯିବେ। ଚାଷ ଛାଡ଼ିବେ। କମ୍ପାନୀମାନେ ଠିକାଚାଷ କରିବା ପାଇଁ କ୍ଷେତ୍ର ଉନ୍ମୁକ୍ତ ହୋଇଯିବ। କର୍ପୋରେଟ୍ ଫାର୍ମିଂ ଲକ୍ଷ ଲକ୍ଷ ଚାଷୀଙ୍କଠାରୁ ଜୀବିକା ଛଡ଼ାଇନେବ। ସେମାନେ ସହରକୁ ଦୌଡ଼ କରିବେ। ଖାଦ୍ୟ ନିରାପତ୍ତା ବିପନ୍ନ

ହେବ। କର୍ପୋରେଟରମାନେ ଫୁଲ, ଫଳ, ବାଇଗବା, କପା ଭଳି ଅର୍ଥକାରୀ ଫସଲ ଚାଷ କରିବେ। ଲାଭ ଦରକାର ତ !

ସୁନେଲି ଧାନରେ ଜିନ୍‌ର ଅସ୍ଥାୟୀ ସଂଯୋଗ ଯୋଗୁଁ ପଡ଼ୋଶୀ କ୍ଷେତକୁ ଜିନ୍ ସଂକ୍ରମଣ ହେବ। ଦେଶୀ ଧାନବିହନ ଏପ୍ରକାର ସଂକ୍ରମଣର ଶିକାର ହେବାଦ୍ୱାରା ଗୁଣମାନ ହରାଇବ। ଘାସମରା ବିଷର ବହୁଳ ବ୍ୟବହାର ଯୋଗୁଁ ନୂଆ ନୂଆ ଜଙ୍ଗଲି ଘାସ ଉଦ୍‌ବର୍ଜିଆ ହୋଇ ମାଡ଼ିଯିବ, ଭବିଷ୍ୟତରେ ଏହାକୁ ନିୟନ୍ତ୍ରଣ କରିବା ଅସମ୍ଭବ ହେବ। ବିହନ ବିବିଧତା ଲୋପ ପାଇଯିବ। ଗୋଟିଏ ଦୁଇଟି କିସମର ବିହନ କ୍ରମାଗତ ଚାଷ କଲେ ଭବିଷ୍ୟତରେ ଭୟାବହ ପରିସ୍ଥିତି ସୃଷ୍ଟି ହୋଇପାରେ। ଏପରିକି ଖାଦ୍ୟଶସ୍ୟ ହାନୀ ଯୋଗୁଁ ଦୁର୍ଭିକ୍ଷ ମଧ୍ୟ। ଏହାର ଉଦାହରଣ ଆୟର୍ଲାଣ୍ଡ। ଆୟର୍ଲାଣ୍ଡ ଲୋକଙ୍କର ପ୍ରଧାନ ଖାଦ୍ୟ ଆଳୁ। ପେରୁରୁ ଆଳୁ ବିହନ ଆଣି ସେମାନେ ବହୁତ କିସମର ଆଳୁ ଚାଷ କରନ୍ତି। ଅଧିକ ଲାଭ ଆଶାରେ ଗୋଟିଏ ବର୍ଷ ଦେଶସାରା ଅଧିକ ଅମଳକ୍ଷମ ଗୋଟିଏ କିସମର ଆଳୁ ଚାଷକଲେ। ବ୍ଲାଇଟ ଯୋଗୁଁ ଫସଲ ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା। ଦୁର୍ଭିକ୍ଷରେ ୧୫ଲକ୍ଷରୁ ଅଧିକ ଲୋକ ମଲେ। ବ୍ରାଜିଲ ମକାର ଜନ୍ମସ୍ଥାନ । ମକା ସେମାନଙ୍କର ପ୍ରଧାନ ଖାଦ୍ୟ। ସେଠାରେ ବିଶ୍ୱବ୍ୟାଙ୍କ ସହାୟତାରେ ଜିଏମ୍ ମକାଚାଷ କରାଗଲା। ୫ବର୍ଷ ପରେ ମକାର ଉତ୍ପାଦନ ୨୫ପ୍ରତିଶତକୁ ଖସିପଡ଼ିଲା। ଏବେ ବ୍ରାଜିଲ ବିଦେଶରୁ ଖାଦ୍ୟ ଆମଦାନୀ କରୁଛି। ଆନ୍ତର୍ଜାତିକ ଜୈବ ବିବିଧତା ନିୟମ କୁହେ ଶସ୍ୟର ଜନ୍ମସ୍ଥାନ ଦେଶରେ ଜି.ଏମ୍. ପ୍ରବର୍ତ୍ତନ କରାଯିବ ନାହିଁ। ଧାନ ଭାରତର ଜନ୍ମସ୍ଥାନ। ସମସ୍ତପ୍ରକାର ନିୟମ ଓ କଟକଣାକୁ ଭ୍ରୂକ୍ଷେପ ନକରି 'ସୁନେଲି ଧାନ' ଭାରତରେ ଚାଷ ପାଇଁ ଆମ ସରକାରଙ୍କୁ ନିଦ ନାହିଁ। ଆମେରିକା, ବିଶ୍ୱବ୍ୟାଙ୍କ, ବିଶ୍ୱ ବାଣିଜ୍ୟ ସଙ୍ଗଠନର ଚାପ। ଦୁର୍ଭିକ୍ଷକୁ ନିମନ୍ତ୍ରଣ ହେବନାହିଁ ତ ?

ବୈଜ୍ଞାନିକମାନେ ଦାବୀ କରନ୍ତି 'ସୁନେଲି ଧାନ'ରେ ଭିଟାମିନ୍-'ଏ' ବା ବେଟାକ୍ୟାରୋଟିନ୍ ଅଛି। ମାତ୍ର ଜଣେ ବ୍ୟକ୍ତିର ଭିଟାମିନ୍ -ଏ' ଚାହିଦା ପୂରଣ ପାଇଁ ଦୈନିକ ୧୦କିଲୋ ସୁନେଲି ଚାଉଳ ଭାତର ଆବଶ୍ୟକତା ପଡ଼ିବ। ପ୍ରୋଟିନ୍‌ଯୁକ୍ତ ଆଳୁ ପ୍ରୋଟାଟେ କ୍ଷେତ୍ରରେ ମଧ୍ୟ ଏକାକଥା। ପୁଷ୍ଟିସାର ଅଭାବ ପୂରଣ ପାଇଁ ଦୈନିକ ୧୦କିଲୋ ଆଳୁ ଖାଇବା ଦରକାର। (Green Peace - Genetic Engineering Briefing Pack - Oct.2004)। କି ଅବାସ୍ତବ, ଅସମ୍ଭବ କଳ୍ପନା। ବୈଜ୍ଞାନିକମାନେ ବୋଧେ

■ *ଆଉ କେତେ ବିଷ ପିଇଲେ ଚେତିବା... !*

ଭବିଷ୍ୟତରେ ଶ୍ରୀଲଙ୍କା ମଶାଣିରୁ କୁମ୍ଭକର୍ଣ୍ଣର ଜିନ୍ ସନ୍ଧାନ କରି ମଣିଷ ଜିନ୍ ସହିତ ଜେନେଟିକ୍ ମଡ଼ିଫିକେସନ୍ କରିବାର ଯୋଜନା ରଖିଛନ୍ତି ! ନୂଆ ମଣିଷ କୁମ୍ଭକର୍ଣ୍ଣ ଭଳି ଖାଇପାରିବ। ହେଲେ ଏଣେ ବିଶ୍ୱବ୍ୟାଙ୍କ ନିର୍ଦ୍ଦେଶରେ ପୃଥିବୀରେ ଧାନଚାଷ କ୍ରମାଗତ କମିବାରେ ଲାଗିଛି।

ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ, ଶିଳ୍ପାୟନ, ଚିଙ୍ଗୁଡ଼ିଚାଷ, ଆଖୁ, ବାଇଗବା (Jatropha), କପା ଭଳି ଅର୍ଥକାରୀ ଫସଲ ଯୋଗୁଁ ଧାନ ଓ ଅନ୍ୟାନ୍ୟ ଖାଦ୍ୟଶସ୍ୟ ପାଇଁ ଜମି କମି କମି ଯାଉଛି। 'ସୁନେଲି ଧାନ'ର ଅଧିକ ଉତ୍ପାଦନ ଖାଦ୍ୟ ସୁରକ୍ଷା ପାଇଁ ସହାୟକ ହେବ-ଏହି ଆଳରେ କମ୍ପାନୀମାନଙ୍କୁ ଅଧିକରୁ ଅଧିକ ଧାନଚାଷ ଜମି ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ ପାଇଁ ଦେଇପାରିବେ; ଏପରି ଏକ ମନ୍ଦ ପ୍ରୟାସ ଆମ ସରକାର କରୁଛନ୍ତି। ପୋସ୍କୋ, କଳିଙ୍ଗନଗର, ନନ୍ଦିଗ୍ରାମ ବା ସିଙ୍ଗୁର ଏହାର ଜ୍ୱଳନ୍ତ ଉଦାହରଣ। ସୁନେଲି ଧାନରେ ଭିଟାମିନ୍-ଏ'ଥିବା ଯାହା କୁହାଯାଉଛି ତାହା ପରୀକ୍ଷା ସାପେକ୍ଷ। ଯଦିବା ତାହା ସତ୍ୟ ହୁଏ, ଶରୀରରେ ଭିଟାମିନ୍ - ଏ' ର ଉପକାର ପାଇବାକୁ ହେଲେ ଚର୍ବିଜାତୀୟ ଖାଦ୍ୟର ଆବଶ୍ୟକତା ଜରୁରୀ। ଏସିଆ ମହାଦେଶର ଚାଉଳ ଉତ୍ପାଦନକାରୀ ଗରିବ ଚାଷୀମାନଙ୍କ ଦୈନିକ ଆୟ ଏକ ଡଲାର ବା ୪୦ଟଙ୍କାରୁ କମ୍। ସେଥିରେ ସେ ମାଛ, ମାଂସ, ଅଣ୍ଡା ବା କ୍ଷୀର ଭଳି ଚର୍ବିଜାତୀୟ ଖାଦ୍ୟ କ୍ୱଚିତ ପାଇଥାନ୍ତି। ୧୦୦ଗ୍ରାମ ଖାଇବା ତେଲ ଗୋଟିଏ ପରିବାରରେ ୫/୭ଦିନର ରୋଷେଇ ଚଳାଏ। ତୃଣମୂଳ ସ୍ତରରେ ବାସ୍ତବ ସ୍ଥିତି ସମ୍ପର୍କରେ ଆମ ରାଜନେତାମାନେ ସମ୍ପୂର୍ଣ୍ଣ ଅଜ୍ଞ। ଅନ୍ୟପକ୍ଷରେ ସବୁଜ ପରିବା, ବିଭିନ୍ନପ୍ରକାର ଶାଗ ଓ ଖଡ଼ା (Amaarunth /ଅମରାନ୍ଥ)ରେ ଭିଟାମିନ୍ - କ ବା ବେଟାକ୍ୟାରୋଟିନ ଭରପୁର ଅଛି। ଯଦି ଜଣେ ବ୍ୟକ୍ତି ଦିନକୁ ୨୦୦ଗ୍ରାମର ପନିପରିବା/ ଶାଗ ଖାଇପାରନ୍ତି, ତାଙ୍କର ଭିଟାମିନ୍ -ଏ' ଆବଶ୍ୟକତା ପୂରଣ ହୋଇପାରିବ। ୧୯୬୬ ପୂର୍ବରୁ ଭାରତୀୟ କୃଷକ ହାରାହାରି ୪୦ରୁ ଉର୍ଦ୍ଧ୍ୱ କିସମର ଫସଲ ଚାଷ କରୁଥିଲା। ପନିପରିବା, ଶାଗ ନିଜ ବାଡ଼ିବଗିଚାରୁ ପାଉଥିଲା। ଆଜିବି ଗୋଟିଏ ପରିବାର ୨୦ଫୁଟX୧୦ଫୁଟର ଅଗଣାରେ ଯଦି ଶାଗ ଓ ଋତୁକାଳୀନ ପନିପରିବା ଚାଷକରନ୍ତି ୫ଜଣିଆ ପରିବାରର ଆବଶ୍ୟକତା ମେଣ୍ଟାଇ ପାରିବେ। କ୍ୟୁବାରେ ହାଭାନା ସହରରେ ଫୁଲବଗିଚା ପରିବର୍ତ୍ତେ ହଜାର ହଜାର ପରିବା ବଗିଚା ଭିଟାମିନ୍ -ଏ' ଯୋଗାଏ। ଆମର ମହିଳାମାନେ ଗାଁ ଓ ସହରରେ ବାଡ଼ିବଗିଚା ଆନ୍ଦୋଳନ ଆରମ୍ଭ କଲେ 'ସୁନେଲି ଧାନ' ମାୟାରୁ ରକ୍ଷା ପାଇପାରିବେ।

ଆମଦେଶର ଉତ୍କଟ ଦାରିଦ୍ର୍ୟ ଓ ସାମନ୍ତବାଦୀ ଶାସନ ବ୍ୟବସ୍ଥାର ସୁଯୋଗ ନେଇ ୩୦୦ରୁ ଅଧିକ ବହୁରାଷ୍ଟ୍ରୀୟକମ୍ପାନୀ କୃଷିକ୍ଷେତ୍ରରେ ପ୍ରବେଶ କଲେଣି। ସରକାରଙ୍କ ଜେନେଟିକ୍ ଇଞ୍ଜିନିୟରିଂ ଆପ୍ରୁଭାଲ କମିଟି, କେନ୍ଦ୍ର ପରିବେଶ ବିଭାଗ ଏପରିକି ଉଚ୍ଚତମ ନ୍ୟାୟାଳୟ ମଧ୍ୟ ସୁନେଲି ଧାନ ଓ ବିଟି ବାଇଗଣ ଭଳି ଜିଏମ୍ ବିହନ ଚାଷ ପାଇଁ କୋହଳ ନୀତି ପ୍ରଦର୍ଶନ କରୁଛନ୍ତି। କେବଳ ଚାଷୀ ସୁନେଲି ଧାନ ଯୋଗୁଁ ସର୍ବସ୍ୱାନ୍ତ ହେବନାହିଁ, ଖାଉଟି ଅଧିକ ପ୍ରଭାବିତ ହେବେ। ସୁନେଲି ଧାନର ଚାଉଳ କିଲୋପ୍ରତି ସର୍ବନିମ୍ନ ୫୦ଟଙ୍କା ହେବ। ସ୍ୱାସ୍ଥ୍ୟପାଇଁ ଏହାର ବିଷମୟ ପରିଣାମସ୍ୱରୂପ ଆଲର୍ଜି, ଚର୍ମରୋଗ, ପୁରୁଷମାନଙ୍କ ରକ୍ତରେ ଶ୍ୱେତରକ୍ତ କଣିକା ବୃଦ୍ଧି, ମହିଳାମାନଙ୍କ ରକ୍ତରେ ଅପରିପକ୍ୱ ଲୋହିତ ରକ୍ତକଣିକା ବୃଦ୍ଧି ଏବଂ ଶର୍କରା ବୃଦ୍ଧି ତଥା ପୁରୁଷମାନଙ୍କ କିଡ୍‌ନୀ ସଂକ୍ରମଣ ଭଳି ସ୍ୱାସ୍ଥ୍ୟ ସମସ୍ୟା ଦେଖାଦେବ। ଅଷ୍ଟ୍ରେଲିଆରେ ମୂଷାକୁ ଜି.ଏମ୍ ମଟର ଖାଇବାକୁ ଦେବାରୁ ତା'ର ଫୁସ୍‌ଫୁସ୍ ସଂକ୍ରମଣ ଓ ଶୁକ୍ରାଣୁ କମିଯିବା ପ୍ରମାଣିତ ହୋଇଛି।

ପରିବେଶ ଉପରେ 'ସୁନେଲି ଧାନ'ର (Golden Rice) ପ୍ରତିକ୍ରିୟା ଅତ୍ୟନ୍ତ ମାରାତ୍ମକ। ଏହି ଧାନର କେଶର (Pollen) ପ୍ରସିଦ୍ଧ ମୋନାର୍କ ପ୍ରଜାପତି, ହଜାର ହଜାର ଆର୍ଥ୍ରୋପଡ୍‌ସ୍, ଗ୍ରୀନଲେସ୍ ଉଇଙ୍ଗ ଭଳି ଉପକାରୀ କୀଟପତଙ୍ଗମାନଙ୍କୁ ମାରିବାରେ ସହାୟକ ହେବ। ଅନାବନା ଘାସ, ଜଙ୍ଗଲି ଘାସ (Wild Grass) ବିଲରେ ମାଡ଼ିଯିବା ଦ୍ୱାରା ଧାନଚାଷ ପୁରାପୁରି ନଷ୍ଟ ହୋଇଯିବାର ମଧ୍ୟ ସମ୍ଭାବନା ଅଛି। ଜୀବିକା ବଞ୍ଚାଇବାକୁ ହେଲେ 'ସୁନେଲି ଧାନ' ଇନ୍ଦ୍ରଜାଲରେ ନଭୁଲି ନିରନ୍ତର କୃଷିକୁ ଫେରିବାର ବେଳ ଆସିଛି। ବିହନର ଅଧିକାର ଚାଷୀର ଅଧିକାର। ଚାଷରେ ଅଳ୍ପଖର୍ଚ୍ଚ ହେବ ଏବଂ ରୋଗପୋକ ମଧ୍ୟ ରହିବନାହିଁ। ଉତ୍ପାଦନ ମଧ୍ୟ ଏକରକୁ ୧୫/୨୦କ୍ୱିଣ୍ଟାଲ ନିଶ୍ଚୟ ହେବ। ବିହନ ପାଇଁ ବଜାରକୁ ଯିବାକୁ ପଡ଼ିବ ନାହିଁ। କୃଷିକ୍ଷେତ୍ରରେ ଆସନ୍ନ ବିପର୍ଯ୍ୟୟକୁ ଟାଳିବାକୁ ହେଲେ 'ସୁନେଲି ଧାନ' ନୁହେଁ 'ଦେଶୀଧାନ' ହିଁ ଏକମାତ୍ର ବିକଳ୍ପ। 'ସୁନେଲି ଧାନ' (Golden Rice)ର ବିରୋଧ ଜାରି ରଖିବାକୁ ହେବ।



# ବାଇଗଣ ଭରତାର ଦିନକାଳ ସରିଆସୁଛି

ବାଇଗଣର ଜନ୍ମସ୍ଥାନ ଭାରତ । ରୋଷେଇଶାଳରେ ବାଇଗଣର ଆଦର ପୁରାଣରୁ ଜାଣିବାକୁ ମିଳେ । ରାବଣ ପ୍ରତ୍ୟେକଦିନ ମଧ୍ୟାହ୍ନ ଭୋଜନରେ ଲିମ୍ବ ବାଇଗଣ ପିତା ଖାଇବାକଥା ଉଲ୍ଲେଖ ଅଛି । ଶାମ୍ବଦଶମୀ ଦିନ ସାତଟି ବାଇଗଣପତ୍ରରେ ସୂର୍ଯ୍ୟଙ୍କୁ ଭୋଗ ବଢ଼ାଯାଏ । ଅଗିଜଳା ପୂର୍ଣ୍ଣିମା (ମାଘ ପୂର୍ଣ୍ଣିମା) ଦିନ ଅଗିକୁ ବାଇଗଣ ପକାଇବା ଏକ ସାଂସ୍କୃତିକ ନିଦର୍ଶନ । ବାଦଶାହା ଆକବରଙ୍କ ରୋଷେଇ ଘରେ ବି ବାଇଗଣର ପ୍ରବେଶ ଥିଲା । ଆକ୍‌ବର ଓ ବୀରବଲ୍ଲଙ୍କ ବାଇଗଣ ଗପ ବେଶ୍ ଉପଭୋଗ୍ୟ । ୪ହଜାର ବର୍ଷ ହେବ ଆମଦେଶରେ ବାଇଗଣ ଚାଷହେଉଛି । ଏକ ସମୟରେ ଆମଦେଶରେ ୨୦୦୦ରୁ ଅଧିକ କିସମର ବାଇଗଣ ଚାଷ ହେଉଥିଲା । ଏହା ବ୍ୟତୀତ ବହୁ ଜଙ୍ଗଲୀ ପ୍ରଜାତିର ବାଇଗଣ ଗଛ ଏବେମଧ୍ୟ ଅଛି ।

ବାଇଗଣ ପୋଡ଼ା, ଭରତା, ଭଜା, ସନ୍ତୁଳା, ଡାଲମାରେ ବାଇଗଣ, ଦହି ବାଇଗଣ ଖଟା, କଅଁଳିଆ ଲିମ୍ବ ପତ୍ର ବାଇଗଣ ପିତା ଏହିପରି ଅନେକ ସୁଆଦିଆ ରୋଷେଇ ବାଇଗଣରୁ ହୋଇଥାଏ । ଦକ୍ଷିଣ ଭାରତରେ କାଥିରିକାଇ ପୋରିୟାଲ ବା ବଡ଼ନେକେଇ ସମ୍ଭର ଖୁବ୍ ଲୋକପ୍ରିୟ । ବାଇଗଣ ଦୁଇଟା ପୋଡ଼ି ସେଥିରେ ଘଣା ସୋରିଷ ତେଲ ଓ କଞ୍ଚାଲଙ୍କା ପକାଇ ଚକଟି ଦେଲେ ତା'ର ସ୍ୱାଦରେ କଂସାଏ ପଖାଳ ଭାତ ପେଟକୁ ଚାଲିଯାଏ । ବେଳେବେଳେ ବାଇଗଣ ସିଝାଇ କରେଇରେ ଛୁଙ୍କକରି ଖିଆଯାଏ । ଏହାକୁ ବାଇଗଣ ଭରତା କୁହାଯାଏ । ଜ୍ୱାଇଁ କୁଣିଆ ଘରକୁ ଆସିଲେ ଶାଶୁମାନେ ବାଇଗଣକୁ ବେସନ ଦେଇ ଛାଣନ୍ତି - ବାଇଗଣି ଜ୍ୱାଇଁଙ୍କୁ ଖୁଆନ୍ତି । କି ସୁଆଦିଆ ସେ । ଗାଁର ସାଧାରଣ ଲୋକ ବିଶେଷକରି କୃଷି, ଶ୍ରମିକମାନଙ୍କ ପାଇଁ ବାଇଗଣ ମାଛ, ମାଂସଠାରୁ ଅଧିକ ।

ବାଇଗଣର ଔଷଧୀୟ ଗୁଣ ଯୋଗୁଁ ଏହା ବହୁମୂତ୍ର ରୋଗୀଙ୍କ ପାଇଁ ଅତ୍ୟନ୍ତ ଉପାଦେୟ । ପୋଖତୀ ସ୍ତ୍ରୀ ଲୋକମାନଙ୍କ ପଥିପାଇଁ ବାଇଗଣ ଖୋଜାଯାଏ । ବାଇଗଣରେ ଯଥେଷ୍ଟ ତନ୍ତୁଜାତୀୟ ଖାଦ୍ୟ ଥିବା ଯୋଗୁଁ ଏହା ସହଜରେ ହଜମ ହୋଇଯାଏ । ପ୍ରତି ୧୦୦ଗ୍ରାମ ବାଇଗଣରେ ପୁଷ୍ଟିସାର-୧.୪ଗ୍ରାମ, ସ୍ନେହସାର-୦.୩ ଗ୍ରାମ, ଶ୍ୱେତସାର-୪.୦ଗ୍ରାମ, ତନ୍ତୁଜାତୀୟ ଖାଦ୍ୟ-୧.୩ ଗ୍ରାମ ଥାଏ । ଏଥିସହିତ ଲୌହ, ଜୀବସାର-କ', ଥିଆମିନ, ରିବୋଫ୍ଲାବିନ ଓ ଜୀବସାର -ଖ' ଓ ଅନ୍ୟାନ୍ୟ ଆବଶ୍ୟକୀୟ ଧାତବ ଲବଣ ଥାଏ । ୧୦୦ ଗ୍ରାମ ବାଇଗଣର କ୍ୟାଲୋରୀ ମୂଲ୍ୟ (ଶକ୍ତିପାଇଁ) - ୨୪କ୍ୟାଲୋରୀ । (Vegetables - Biswajit Chaudhury - NBT)

ଓଡ଼ିଶାରେ ଚାଷ ହେଉଥିବା ପାରମ୍ପରିକ ବାଇଗଣ କିସମରେ ଅଛି ଖୁଆପେଡ଼ିଆ, ଧଳାଜହରୀ, କଳାଜହରୀ, ଗେଣ୍ଡି, ନୁଡୁକି, ଗୋଲକଳା, ଲମ୍ବା ବାଇଗେଣି, ପାଳୁଆ ଏହିପରି ଅନେକ ଅନେକ। ଭାରତୀୟ କୃଷି ଅନୁସନ୍ଧାନ ପରିଷଦ (IARA), ପୁଷା ଦେଶୀ କିସମର ବିହନରୁ କେତେକ ଉନ୍ନତମାନର ବିହନ କିସମ ବାହାର କରିଥିଲେ । ସେଗୁଡ଼ିକ ଭିତରେ ପୁଷା ଲମ୍ବା ବାଇଗେଣି, ପୁଷା ଗୋଲ ବାଇଗେଣି, ପୁଷା ବାଇଗେଣି ପେଣ୍ଡି, ପୁଷା କ୍ରାନ୍ତି, ପୁଷା ଭୈରବୀ, ପୁଷା ଅନ୍ନପୂର୍ଣ୍ଣା କିସମଗୁଡ଼ିକ ପ୍ରଧାନ। ନୁଡୁକି ବାଇଗଣ ସବୁଠାରୁ ଛୋଟ ଆକାର। ଓଜନ ୧୦ଗ୍ରାମ ଭିତରେ ହେବ। ବନାରସ କଳା ବାଇଗଣ ଖୁବ୍ ବଡ଼। ଗୋଟିଏ ବାଇଗଣର ଓଜନ ୫୦୦-୭୦୦ଗ୍ରାମ ହେବ। ୧୯୬୬ରେ ସବୁଜ ବିପ୍ଳବର ରାଜୁତି ଆରମ୍ଭ ହୁଏ। ସେତେବେଳକୁ ଆମଦେଶରେ ୫୦,୦୦୦ ହେକ୍ଟରରୁ ଅଧିକ ଜମିରେ ପାରମ୍ପରିକ ବାଇଗଣ ଚାଷ ହେଉଥିଲା।

## ବାଇଗଣ ଓ ଜୀବନ ଜୀବିକା:

ସବୁଜ ବିପ୍ଳବ ପୂର୍ବରୁ ଅର୍ଥାତ୍ ୧୯୬୬ପୂର୍ବରୁ ପନିପରିବା ଚାଷ ପାରିବାରିକ ପରିବା ଖର୍ଚ୍ଚ ତୁଲାଇବା ସହିତ ବଳକା ହାଟବଜାରରେ ବିକ୍ରି କରାଯାଉଥିଲା। ତେଣୁ ବଡ଼-ସାନ ଚାଷୀ ଭେଦରେ ସର୍ବାଧିକ ଗୋଟିଏ ପରିବାର ୫୦ଡେସିମିଲଠାରୁ ଆରମ୍ଭ କରି ୨/୩ ଡେସିମିଲ ପର୍ଯ୍ୟନ୍ତ ଜମିରେ ବାଇଗଣ ଚାଷ ହେଉଥିଲା। ଛୋଟ ଓ ନାମମାତ୍ର ଚାଷୀ, ଭାଗଚାଷୀ ଏପରିକି କୃଷି ଶ୍ରମିକମାନେ ମଧ୍ୟ ପରିବାର ପିଛା ୨/୩ ଗୁଣ୍ଠ ଜମିରେ ବାଇଗଣ ଚାଷ କରୁଥିଲେ। ଭୂମିହୀନ ମାନେ ଜମିମାଲିକଠାରୁ ଜମି ସଞ୍ଜାରେ ଆଣି ଚାଷ କରୁଥିଲେ। ଜମି ମାଲିକକୁ ପ୍ରତି ହାଟପାଳି ବାଇଗଣ ତୋଳିଲା ବେଳେ ବିଶାଏ/୨ବିଶା

(ଏକ ବିଶା - ୨କିଲୋ ପ୍ରାୟ) ବାଇଗଣ ଦେଉଥିଲେ। ଆଜି ଶଙ୍କର ଜାତୀୟ ବାଇଗଣ ଗୁଣ୍ଠକୁ ସର୍ବାଧିକ ୪/୫କ୍ୱିଣ୍ଟାଲ ଅମଳ ହେଉଛି। ମାତ୍ର ବିଶ୍ୱାସ କରିହେବନି ସେତେବେଳେ ସେଇ ଗୁଣ୍ଠେ ବାଇଗଣ ବିଲରୁ ଗୋଟିଏ ଋତୁରେ ୧୦କ୍ୱିଣ୍ଟାଲରୁ ଅଧିକ ଅମଳ ମିଳୁଥିଲା। ଚାଷୀ ନିଜର ରୋଷେଇ ଖର୍ଚ୍ଚ ତୁଲାଇ ଦୋକାନ ସଉଦା, ପିଲାଙ୍କ ପାଠପଢ଼ା, ଲୁଗାପଟା ଓ ଔଷଧ ଖର୍ଚ୍ଚର ମୋଟା ଅଂଶ ବାଇଗଣରୁ ମେଣ୍ଟାଉଥିଲା। ରାସାୟନିକ ସାର ବା କୀଟନାଶକର ରାଜୁତି ନଥିଲା। ଖତ, ଗଡ଼ିଆ ପଙ୍କ, ପାଉଁଶ ଭଳି ନିଜ ହାତ ପାହାନ୍ତାରେ ମିଳୁଥିବା ଉପାଦାନ ବ୍ୟବହାର କରି ଚାଷ କରୁଥିଲା। ବର୍ଷେ ଛାଡ଼ି ବର୍ଷେ ଗୋଟିଏ ଜମିରେ ବାଇଗଣ ଚାଷ ହେଉଥିଲା। ଫସଲ ପର୍ଯ୍ୟାୟ ପାରମ୍ପରିକ କୃଷିବିଜ୍ଞାନ ଉପରେ ଆଧାରିତ ଥିଲା। ବାଇଗଣରେ କାଣ୍ଡ ବିନ୍ଧା, ଫଳବିନ୍ଧା ପୋକ, ପତ୍ରକଟା ପୋକ, ଝାଉଁଳା ବା ଗଛ ଅଣ୍ଡିରା ହେବା ଭଳି ରୋଗ ଖୁବ୍ କମ୍ ଥିଲା। ଆକ୍ରାନ୍ତ କାଣ୍ଡକୁ କାଟି ଫୋପାଡ଼ି ଦିଆଯାଉଥିଲା। ଅନୁଭବୀ ଚାଷୀ କୁହନ୍ତି କାଣ୍ଡବିନ୍ଧା ପୋକଯୋଗୁଁ ଗଛ ଉଚ୍ଚାରେ ନବଢ଼ି ଚେକେଇ ଯାଉଥିଲା। ଅଧିକ ଫଳ ମିଳୁଥିଲା, ପତ୍ରକଟା ପାଇଁ ଘସି ପାଉଁଶ ବେଶ୍ କାମ ଦେଉଥିଲା। ଝାଉଁଳା ବା ଅଣ୍ଡିରା (ପତ୍ର ମୁକୁଚିଆ ହେବା)ରୋଗ ଦେଖା ନଯିବା ପାଇଁ ବାଇଗଣ କିଆରିରେ ଗୁଣ୍ଠକୁ ୮/୧୦ଟି ଗେଣ୍ଡୁଫୁଲ ଗଛ ଲଗାଇଦେଲେ ଚାଷୀ ନିରାପଦ, ଫସଲ ନିରାପଦ। ଆଜି କୃଷିବିଜ୍ଞାନୀମାନେ ଏହି ପାରମ୍ପରିକ ବିଜ୍ଞାନକୁ କିଛିଟା ସ୍ୱୀକାର କଲେଣି।

## ବାଇଗଣ ଚାଷ ଉପରେ ସବୁଜ ବିପ୍ଳବର ପ୍ରଭାବ :

୧୯୬୬ପରେ ଆମଦେଶରେ ଅଧିକ ଅମଳ ଓ ଲାଭ ପାଇଁ କେବଳ ଧାନ ଓ ଗହମ ଚାଷ ହିଁ ପ୍ରଭୁତ୍ୱ ବିସ୍ତାର କଲା। ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ରାସାୟନିକ ସାର ଓ କୀଟନାଶକ ବିଷର ବେପାର ବଢ଼ିଚାଲିଲା। ପାରମ୍ପରିକ କୃଷି ବା ନିରନ୍ତର କୃଷି ଚାଷୀର ହାତଛଡ଼ା ହୋଇଗଲା। ଡାଲି, ତୈଳବୀଜ ଓ ପନିପରିବା ଚାଷ କମିଗଲା। ୧୯୭୦ବେଳକୁ ଶଙ୍କର ଜାତୀୟ (ହାଇବ୍ରିଡ଼୍) ପନିପରିବା ବିହନର ରାଜତ୍ୱ ଆରମ୍ଭ ହେଲା। ଆମେରିକାର ବହୁରାଷ୍ଟ୍ରୀୟ କମ୍ପାନୀ ମନ୍‌ସାଣ୍ଟୋ ଓ ମହାରାଷ୍ଟ୍ର ହାଇବ୍ରିଡ଼୍ କମ୍ପାନୀ ଯୋଡ଼ି, ଇଣ୍ଡୋ ଆମେରିକାନ୍ ହାଇବ୍ରିଡ଼୍, ପ୍ରୋ ଆଗ୍ରୋ ଭଳି ବିହନ କମ୍ପାନୀମାନେ ଆମଦେଶରେ ଶଙ୍କର ଜାତୀୟ ପନିପରିବା ବିହନ ବେପାର ଜମେଇଲେ। ବିହନର ଆକାଶ ଛୁଆଁ ମୂଲ୍ୟ ଯୋଗୁଁ ଛୋଟ ଓ ନାମମାତ୍ର ଚାଷୀ, ଭାଗଚାଷୀ ଏ ପ୍ରକାର ବିହନ

କିଣି ଚାଷ କରିବାକୁ ସକ୍ଷମ ହେଲେନି। ପୁଣି ଶଙ୍କରଜାତୀୟ ବିହନର ଆୟୁଷ ମାତ୍ର ଗୋଟିଏ ବର୍ଷ। ପ୍ରତିବର୍ଷ କମ୍ପାନୀଠାରୁ ନୂଆ ବିହନ କିଣିବାକୁ ପଡ଼ିଲା। ଶଙ୍କର ପନିପରିବା ଚାଷପାଇଁ ରାସାୟନିକ ସାର ଓ କୀଟନାଶକର ଆବଶ୍ୟକତା ପଡ଼ିଲା। ବେଡ଼ି ଉପରେ କୋରଡ଼ା। କେବଳ ବଡ଼ ବଡ଼ ଚାଷୀ, ଠିକାଚାଷୀ ଶଙ୍କର ଜାତୀୟ ବିହନରେ ବାଇଗଣ ଚାଷ କଲେ। ଖାଲି ବାଇଗଣ ନୁହେଁ କଲରା, ବିଲାତି ବାଇଗଣ, ଜହ୍ନି, କାକୁଡ଼ି, ବିନ୍ ଓ ଭେଣ୍ଡି ଭଳି ବହୁ ପନିପରିବାର ଶଙ୍କର ଜାତୀୟ ବିହନ ହିଁ ବଜାରକୁ ଆସିଲା। ଚାଷୀଘରର ସ୍ତ୍ରୀ ଲୋକମାନଙ୍କ ପାରମ୍ପରିକ ବିହନ ସଂରକ୍ଷଣ ଜ୍ଞାନକୌଶଳ ଅକାମୀ ହୋଇଗଲା। ଏହି ପରିବର୍ତ୍ତନ ପ୍ରକ୍ରିୟା ଦେଶୀ ବାଇଗଣ ଚାଷର ଗୁରୁତ୍ୱ କମାଇ ନେଲା। ଦେଶୀ ବାଇଗଣ କିସମ କମି କମି ଗଲା। ଖାଉଟୀ ବିଷ ବାଇଗଣ ଖାଇବାକୁ ଆଗ୍ରହ କଲେ। ଛୋଟ ଓ ନାମମାତ୍ର ଚାଷୀମାନେ ଶଙ୍କର ବାଇଗଣ ଯନ୍ତାରେ ବି ପଡ଼ିଗଲେ। କେତେକ ବେପାରୀ ଶସ୍ତାଦରରେ ଶଙ୍କର ବିହନ ବିକିଲେ। ଚାଷୀ ଶସ୍ତା ବିହନ ନେଇ ଚାଷକଲେ। ଗଛ ବଢ଼ିଲା, ଫୁଲ ବି କାଁ ଭାଁ ହେଲା। ଫଳ ନାହିଁ। ଚାଷୀମୁଣ୍ଡରେ ହାତ ଦେଇ କର୍ମକୁ ଧିକ୍କାର କଲା। ବିହନ ବେପାରୀ ଯେ, ତାଙ୍କୁ ଦ୍ୱିତୀୟ ପିଢ଼ି ବିହନ (Second Generation - Fi) ବିକିଛି, ଏକଥା ବିଚରା ଚାଷୀ ଜାଣିବ କେମିତି ?

ଶଙ୍କର ଜାତୀୟ ବିହନଯୋଗୁଁ ଦେଶୀ ବିହନ ସଂକ୍ରମିତ ହେଲା। ଫଳ କମ୍ ହେଲା। ରୋଗ ପୋକର ଦୌରାତ୍ମ୍ୟ ମଧ୍ୟ ବଢ଼ିଗଲା। ହାଇବ୍ରିଡ଼ ବାଇଗଣ କିଆରୀରେ ରୋଗ ପୋକ ବସା ବାନ୍ଧିଗଲେ। ସକାଳ ସଞ୍ଜରେ କୀଟନାଶକ ପ୍ରୟୋଗ କରାଗଲା। ମିଥାଇଲ ଆଇସୋ ସାଇନାଇଡ଼ ବିଷ ପ୍ରଭାବରେ ଭୋପାଳ ଗ୍ୟାସ ଦୁର୍ଘଟଣାରେ ୨୩,୦୦୦ଲୋକ ଅକାଳ ମୃତ୍ୟୁବରଣ କଲେ ଏବଂ ବର୍ତ୍ତମାନ ଏକଲକ୍ଷରୁ ଊର୍ଦ୍ଧ୍ୱ ପୁରୁଷ, ସ୍ତ୍ରୀ ଓ ଶିଶୁବିକଳାଙ୍ଗ ବା ବିଭିନ୍ନ ରୋଗ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି। କାର୍ବାରିଲ କୀଟନାଶକରେ ଏହି ବିଷ ଭରପୁର ଥାଏ। ବାଇଗଣ କିଆରୀରେ ଆଜି ଏହି କୀଟନାଶକ ସିଞ୍ଚନ ହେଲା ତ' କାଲି ସେ କିଆରୀର ବାଇଗଣ ବଜାରକୁ ବିକ୍ରିପାଇଁ ଗଲା। ଚକ୍‌ଚକ୍ , ଲୋଭନୀୟ ଚେହେରା ଦେଖି ବାବୁମାନେ ଘରକୁ କିଣିନେଲେ। ବାଇଗଣ ତ' ଖାଇଲେ। ବିଷ ବି ଖାଇଲେ। ହାଇବ୍ରିଡ଼ ବାଇଗଣର ସ୍ୱାଦ ନାହିଁ। ଏହାକୁ ଦିନକୁ ଦିନ ସାଇତି ରଖାଯାଇ ପାରୁନାହିଁ। ଚାଷୀ ଓ ଖାଉଟୀଙ୍କର ଚେତନା ଆସିଲାଣି। ଚାଷୀ ହାଇବ୍ରିଡ଼ରୁ ମୁହଁ ବୁଲାଇ ଦେଶୀ ବିହନ ଖୋଜିଲେଣି। ଖାଉଟୀ ଆଜିକାଲି ହାଟବଜାରରେ ଦେଶୀ ବାଇଗଣ ଖୋଜୁଛନ୍ତି।

କମ୍ପାନୀ କ'ଣ ଏତେ ସହଜରେ ବେପାର ହାତଛଡ଼ା କରିଦେବ ? ପୁଣି ନୂଆ କିସମର ବାଇଗଣ ବିହନ ବଜାରକୁ ଆସୁଛି । ଗୁଣସୂତ୍ର ପରିବର୍ତ୍ତିତ ବା ଜେନେଟିକ ମଡ଼ିଫାଏଡ୍ ବିହନ । କେନ୍ଦ୍ର ଓ ଆମ ରାଜ୍ୟ ସରକାର ମନ୍‌ସାଣ୍ଟୋ-ମାହିକୋ ଯୋଡ଼ିକୁ ୪କିସମର ଜି.ଏମ୍/ବିଟି ବାଇଗଣ କ୍ଷେତ୍ର ପରୀକ୍ଷା ପାଇଁ ଅନୁମତି ଦେଇଛନ୍ତି ।

## ଜି.ଏମ୍. ବା ବିଟି ବିହନ କ'ଣ ?

ଆଧୁନିକ ରାଜନୀତି, ଅର୍ଥନୀତି ଓ ବିଜ୍ଞାନ ଦାବୀ କରନ୍ତି ଏକବିଂଶ ଶତାବ୍ଦୀରେ ଜେନେଟିକ ଇଞ୍ଜିନିୟରିଂ ଓ ବାୟୋ-ଟେକ୍ନୋଲୋଜି ହିଁ ରାଜତ୍ୱ କରିବ । ସେମାନେ ଏହାକୁ ଦ୍ୱିତୀୟ ଶିଳ୍ପବିପ୍ଳବର ମାନ୍ୟତା ଦେଉଛନ୍ତି । ପ୍ରଥମ ଶିଳ୍ପବିପ୍ଳବ ପଦାର୍ଥ ବିଜ୍ଞାନର ପ୍ରୟୋଗ ଉପରେ ଆଧାରିତ ଥିଲା । ଏହା ଉପନିବେଶବାଦର ବାର୍ତ୍ତା ବହନ କରିଥିଲା । ଜେନେଟିକ ଇଞ୍ଜିନିୟରିଂ ଜୈବ ବିବିଧତାକୁ ଧ୍ୱଂସ କରି ଉଦ୍ଭିଦ ଓ ପ୍ରାଣୀଜଗତରେ ନୂତନ ପ୍ରଜାତି ସୃଷ୍ଟି କରିବ । ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦର ପୁଷ୍ଟିସାଧନ କରିବାରେ ସଫଳ ହେବ । ବିଶ୍ୱ ବାଣିଜ୍ୟ ପ୍ରତିଷ୍ଠାନର ନିର୍ଦ୍ଦେଶରେ ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ ପ୍ରକ୍ରିୟାକୁ ଏସିଆ, ଆଫ୍ରିକା ଓ ଦକ୍ଷିଣ ଆମେରିକାର ବିକାଶଶୀଳ ବା ଦରିଦ୍ର ଦେଶମାନଙ୍କରେ ପ୍ରୟୋଗ ପାଇଁ ଏହା ପରମାଣୁ ଅସ୍ତ୍ର ଭଳି କାମ କରିବ । ସାମ୍ରାଜ୍ୟବାଦୀ ଓ ପୁଞ୍ଜିବାଦୀ ଶକ୍ତିମାନେ ବିକାଶଶୀଳ ଓ ଗରିବ ଦେଶମାନଙ୍କର କୃଷି ଓ ଖାଦ୍ୟଉପରେ ନିୟନ୍ତ୍ରଣ ଜାହିର କରିବେ । କ୍ଷୁଧାମୁକ୍ତ ବିଶ୍ୱର ଦ୍ୱାହିଦେଇ କୃଷିକ୍ଷେତ୍ରରେ ନୂତନ ଜ୍ଞାନକୌଶଳ ବାହାନାରେ ଏହିସବୁ ଦେଶର ଖାଦ୍ୟ ନିରାପତ୍ତା ବିପନ୍ନ ହେବ । ଜି.ଏମ୍., ବିଟି, ଟ୍ରାନ୍ସଜେନିକ ଓ ଟର୍ମିନେଟର ଜିନ୍ ଭଳି ବିହନ ପ୍ରଚଳନ କରିବେ । ଜି.ଏମ୍. ବାଇଗଣ ଏହିଭଳି ଏକ ମାୟା ମରୀଚିକା । ଏହାଦ୍ୱାରା ପ୍ରକୃତି ଓ ପରିବେଶ ବିପର୍ଯ୍ୟସ୍ତ ହେବ । ଅର୍ଥନୈତିକ ସ୍ୱାଧୀନତା ଓ ନୂତନ ଉପନିବେଶବାଦ ଜନ୍ମ ନେବ ।

ପ୍ରତ୍ୟେକ ଉଦ୍ଭିଦ ତା'ର ଗୁଣସୂତ୍ର (ଜିନ୍)ର ସ୍ୱତନ୍ତ୍ର ଧର୍ମ ଦ୍ୱାରା ଚିହ୍ନିତ ହୁଏ । ଏହା ବଂଶଜ ଏବଂ ଯୁଗଯୁଗ ଧରି ଅକ୍ଷୁଣ୍ଣ ଅଛି । ଜେନେଟିକ୍ ଇଞ୍ଜିନିୟରିଂ ଓ ବାୟୋ-ଟେକ୍ନୋଲୋଜି ପ୍ରକୃତିର ଏହି ମୂଳଧର୍ମକୁ ପ୍ରଭାବିତ କରିବ । ଗୁଣସୂତ୍ର ପରିବର୍ତ୍ତନ ପ୍ରକ୍ରିୟାରେ ନୂତନ ପ୍ରଜାତିର ଉଦ୍ଭିଦ ଓ ପ୍ରାଣୀ ସୃଷ୍ଟି କରାଯିବ । ଏମାନଙ୍କର ମୌଳିକ ଧର୍ମ / ଗୁଣ ସମ୍ପୂର୍ଣ୍ଣ ନଷ୍ଟ ହୋଇ ଏକ ନୂତନ ଧର୍ମ ପ୍ରକାଶ କରିବ । ଯେପରିକି ସୁନେଲି ଧାନ (Golden Rice) ଚାଉଳରେ ଜୀବସାର 'କ' ଓ ବେଟା କ୍ୟାରୋଟିନ୍ ମିଳିବ । ପ୍ରୋଟାଟୋ

(ପୁଷ୍ଟିସାର ଥିବା ଆଳୁକିସମ)ରେ ପୁଷ୍ଟିସାର ମିଳିବ। ପିଆଜ କାଟିଲେ ଆଖିରୁ ଲୁହ ବୋହିବ ନାହିଁ, ବାଇଗଣରେ କାଣ୍ଡବିନ୍ଧା ବା ଫଳ ବିନ୍ଧା ପୋକ ଲାଗିବ ନାହିଁ ଇତ୍ୟାଦି ଇତ୍ୟାଦି। ଅଧିକ ଉତ୍ପାଦନ ଓ କମ୍ ଖର୍ଚ୍ଚ ଏହିସବୁ ବିହନର ନୂତନ ଗୁଣ ବୋଲି ମନ୍‌ସାଣ୍ଟୋ ଓ ତାହାର ସହଯୋଗୀ ବହୁରାଷ୍ଟ୍ରୀୟ ବିହନ କମ୍ପାନୀମାନେ ଢେଙ୍ଗୁରା ପିଟନ୍ତି। ମାତ୍ର ଏହି ନୂତନ କିସମର ବିହନ ଯୋଗୁଁ ଚାଷୀ, ଖାଉଟୀର ସ୍ୱାସ୍ଥ୍ୟ, ପରିବେଶ ଓ କୃଷି ଅର୍ଥନୀତି ବିପର୍ଯ୍ୟସ୍ତ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ।

ପ୍ରକୃତିରେ ମଧ ବିବର୍ତ୍ତନ ପ୍ରକ୍ରିୟାରେ ପ୍ରଜାତି ପ୍ରଜାତି ମଧ୍ୟରେ ଜିନ୍‌ର ବଦଳ ବା ପରିବର୍ତ୍ତନ ହୋଇ ନୂତନ ପ୍ରଜାତିର ଉଦ୍ଭିଦ ବା ପ୍ରାଣୀ ସୃଷ୍ଟି ହୋଇଥାନ୍ତି। ୨୦୦ ବର୍ଷ ପୂର୍ବରୁ ଡାରଓ୍ୱିନ୍ ଏହି ତଥ୍ୟ ଉପସ୍ଥାପିତ କରିଛନ୍ତି (Origin of Species)। ଏ ପ୍ରକାର ପରିବର୍ତ୍ତନ ପାଇଁ ହଜାର ହଜାର ବର୍ଷ ଲାଗିଥାଏ। ମାତ୍ର ଗୁଣସୂତ୍ର ପରିବର୍ତ୍ତନ ଏବେ ଗବେଷଣାଗାରରେ ଖୁବ୍ କମ୍ ସମୟରେ (୫-୧୦ବର୍ଷ)ସମ୍ଭବ ହେଉଛି। କମ୍ପାନୀ ପଇସାରେ ବୈଜ୍ଞାନିକମାନେ ଏପରି କରିସ୍ପା ଦେଖାଉଛନ୍ତି ଯାହାର ଦୀର୍ଘମିଆଦି ଫଳ ବିଷମୟ।

ଗୁଣସୂତ୍ର (ଜିନ୍) ସଂଯୋଗ କରିବା, ପରିବର୍ତ୍ତନ କରିବା, ବିଯୋଗ କରିବା ବା ଅକର୍ମଣ୍ୟ କରିବା (ଟର୍ମିନେମଟର ଜିନ୍ ଦ୍ୱାରା ବିହନକୁ ୨ୟ ବର୍ଷ ଚାଷ ପାଇଁ ଅଯୋଗ୍ୟ କରାଯାଉଛି) ଏବେ ପରୀକ୍ଷାଗାରରେ ଖୁବ୍ ଅଳ୍ପ ସମୟଭିତରେ ସମ୍ଭବ ହେଉଛି। କମ୍ପାନୀର ପର୍ଯ୍ୟାପ୍ତ ଲାଭପାଇଁ ଉଦ୍ଭିଦ, ଅଣୁଜୀବ ଏପରିକି ପଶୁପକ୍ଷୀର ଗୁଣସୂତ୍ର (ଜିନ୍) ପରସ୍ପର ମଧ୍ୟରେ ବଦଳ ଉଦଳ କରାଯାଇ ପାରୁଛି। ଏହି ପରିବର୍ତ୍ତନ ଯେ ସମ୍ପୂର୍ଣ୍ଣ ଅସ୍ଥାୟୀ (Un-sustainable) ଏକଥା ଜାଣିଲାବେଳକୁ ଲେଡ଼ି ଗୁଡ଼ କହୁଣୀକୁ ବୋହିଗଲାଣି। ପ୍ରକୃତି, ପରିବେଶ, ଚାଷୀ ଓ ଖାଉଟିର ସ୍ୱାସ୍ଥ୍ୟକୁ ଧ୍ୱସ୍ତବିଧ୍ୱସ୍ତ କରି ଏହି ନୂତନ କୌଶଳ ଏଗ୍ରି-ବାୟୋଟେକ୍ ବ୍ୟବସାୟ ନାମରେ ପୃଥିବୀ ସାରା ବିସ୍ତାର ଲାଭକଲାଣି।

ପୃଥିବୀର ୯୦ପ୍ରତିଶିତ ଜି.ଏମ୍. ବିହନର ମାଲିକାନା ଆମେରିକାର ବହୁରାଷ୍ଟ୍ରୀୟ କମ୍ପାନୀ ମନ୍‌ସାଣ୍ଟୋ ହାତରେ। ବାକି ୧୦ପ୍ରତିଶତ ସିଞ୍ଜେଣ୍ଟା, ବେୟରକ୍ରପ୍ ସାଇନ୍ସ, ଡୋ କେମିକାଲ୍ସ ଓ ଡୁପଣ୍ଟ ଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନେ ନିୟନ୍ତ୍ରଣ କରନ୍ତି। ସୋୟାବିନ,ମକା,କପା, କ୍ୟାନୋଲା (ସୋରିଷ ଜାତୀୟ ତୈଳବୀଜ), ବିଲାତି ବାଇଗଣ, ଆଳୁ (ପ୍ରୋଟାଟୋ), ଗହମ, ଧାନ (Golden Rice), ଭେଣ୍ଡି ଭଳି ଅନେକ ଫସଲ

ଏବେ ଜି.ଏମ୍ ବିହନ ପ୍ରୟୋଗରେ ଚାଷ ହେଉଛି। ଏଗୁଡ଼ିକମଧ୍ୟରୁ ପ୍ରଥମ ୪ଟି ଫସଲ ବ୍ୟବସାୟିକ କୃଷି ପାଇଁ ଖୁବ୍ ଉପଯୋଗୀ ବୋଲି ଏହି ମୁନାଫାଖୋର କମ୍ପାନୀମାନେ କହିବୁଲୁଛନ୍ତି। କେବଳ ବିଟି କପା ଚାଷ ଯୋଗୁଁ ଭାରତରେ ପ୍ରତି ୩୦ମିନିଟରେ ଜଣେ ଚାଷୀ ଆତ୍ମହତ୍ୟା କରୁଛି। ଗତ ସାତବର୍ଷ ମଧ୍ୟରେ ଭାରତରେ ୧,୫୦,୦୦୦ କୃଷକ ଆତ୍ମହତ୍ୟା କରିଥିବା ସରକାରୀ ହିସାବରୁ ଜଣାଯାଏ। କମ୍ପାନୀର ପୁଷମାସ ବେଳକୁ ଚାଷୀର ସର୍ବନାଶ।

## ବିଟି/ ଜି.ଏମ୍. ବାଇଗଣର ରହସ୍ୟ କ'ଣ ?

ବିଟି/ଜିଏମ୍ ବାଇଗଣ ମନ୍‌ସାଣ୍ଟୋ-ମାହିକୋ ଯୋଡ଼ିର ଏକ ଭେଳିକି। ଖୁବ୍ ଅଧିକ ଉତ୍ପାଦନ, ରୋଗ ପୋକରୁ ମୁକ୍ତି, ରାସାୟନିକସାର ଓ କୀଟନାଶକ ପ୍ରୟୋଗ ମାତ୍ରା କମ୍ ବିଟି ବାଇଗଣର ବିଶେଷତ୍ୱ ବୋଲି କମ୍ପାନୀ ଦାବୀ କରେ। ବାଇଗଣ ଫସଲରେ କାଣ୍ଡ ଓ ଫଳବିନ୍ଧା ପୋକର ଦୌରାତ୍ମ୍ୟ ଅଧିକ। ୧୯୬୬ପୂର୍ବରୁ ଦେଶୀ ବାଇଗଣ କିଆରୀରେ କାଣ୍ଡ ବିନ୍ଧା ଓ ଫଳବିନ୍ଧା ପୋକ ଦେଖାଯାଉଥିଲେ, ମାତ୍ର ଏମାନଙ୍କର ସଂଖ୍ୟା କମ୍ ଥିଲା। ଗାଈର ମୂତ, ଲିମ୍ବ, କରଞ୍ଜ ଓ ଅରଖପତ୍ରର ରସପାଣିରେ ମିଶାଇ ସିଞ୍ଚନ କଲେ ଏହି ରୋଗ ନିୟନ୍ତ୍ରଣ ହୋଇ ପାରୁଥିଲା। ଶଙ୍କରଜାତୀୟ ବାଇଗଣ ଚାଷ ହେବା ଦିନ ଠାରୁ ୫୦କିଲୋ ବାଇଗଣ କିଆରୀରୁ ତୋଳାହେଲେ ସେଥିରେ ୪୦କିଲୋ ପର୍ଯ୍ୟନ୍ତ ପୋକା ବାଇଗଣ ରହୁଛି। ଗୁଣ୍ଠେ ବାଇଗଣ କିଆରୀରେ ରୋଗ ପୋକ ନିୟନ୍ତ୍ରଣ ପାଇଁ ପ୍ରାୟ ୧୦୦୦ଟଙ୍କା ଖର୍ଚ୍ଚ ହେଉଛି। ମାତ୍ର କାଣ୍ଡବିନ୍ଧା ପୋକକୁ ଦମନ କରାଯାଇ ପାରୁନାହିଁ। ଏମାନେ ନିୟମିତ କୀଟନାଶକ ବିଷପିଇ ପିଠେଇ ଗଲେଣି। ଆଉ ବିଷ କାମକରୁନି। ତେଣୁ ଜି.ଏମ୍/ବିଟି ବାଇଗଣ ଚାଷ କଲେ ରୋଗ/ପୋକ ଭୟ ରହିବ ନାହିଁ।

ମାଟିରେ ଗୋଟିଏ ବୀଜାଣୁ ଅଛି ଯାହାର ନାମ ବାସିଲସ୍ ଥୁରିଙ୍ଗିନସିସ୍ (Bacillas Thuringi-ensis)ବା ସଂକ୍ଷେପରେ ବିଟି। ଏହି ବୀଜାଣୁର ଗୋଟିଏ ଗୁଣସୂତ୍ର (ଜିନ୍) ଉତ୍କଟ ବିଷ ପ୍ରସ୍ତୁତ କରେ। ଏହି ବୀଜାଣୁକୁ ମାଟିରୁ ସଂଗ୍ରହ କରି ଏହାର ବିଷ ପ୍ରସ୍ତୁତ କରୁଥିବା ଜିନ୍‌କୁ ବାଇଗଣ ସହିତ ବିଜ୍ଞାନାଗାରରେ ସଂଯୋଗ କରାଯାଇଛି। ତେଣୁ ଏହାର ନାମ ବିଟି ବାଇଗଣ ଠିକ୍ ଯେପରି ବିଟିକପା, ବିଟି ବିଲାତି ବାଇଗଣ, ବିଟି ମକା, ବିଟିଧାନ ବା ବିଟିଆଳୁ ଇତ୍ୟାଦି। ଏହି ଜିନ୍‌ର ପ୍ରଭାବରେ ବାଇଗଣ ଗଛର ଶାଖା, କାଣ୍ଡ, ପତ୍ର, ଫୁଲ ଓ ଫଳରେ ବିଟି ବିଷ ପ୍ରସ୍ତୁତ ହୋଇପାରିବ। ଅର୍ଥାତ୍ ସମୁଦାୟ ଗଛଟି

ବିଷ ପାଲଟିଯିବ। କାଣ୍ଡବିନ୍ଧା ପୋକ ଗଛ ବା ଫଳରେ ପ୍ରବେଶ କରିବା ମାତ୍ରେ ବିଟି ବିଷ ଯୋଗୁଁ ମରିଯିବ। ଚାଷୀପାଇଁ ଏପ୍ରକାର ବିହନ ଲାଭଜନକ ମନେ ହେଉନାହିଁ କି ?

ମନ୍‌ସାଣ୍ଟୋର ଏହା ଏକ ଇନ୍ଦ୍ରଜାଲ। ଏହାର ପ୍ରମାଣ ବିଟିକପା। ବିଟିରେ ଦେଶୀକପାଠାରୁ ଅଧିକ ୨ଗୁଣ ବୋଲଓର୍ମ ଆକ୍ରମଣ କରିଥାନ୍ତି। ଏହାକୁ ଦମନ କରିବା ପାଇଁ ପ୍ରତି ଏକରକୁ ୧୦,୦୦୦ଟଙ୍କାର କୀଟନାଶକ ଆବଶ୍ୟକ ପଡ଼ିଥାଏ। ପ୍ରତି ଏକ ଏକର ଜମି ବିଟି ଫସଲ ଚାଷଜମି ପାଇଁ ୮ଡେସିମିଲ ଜମି ପଡ଼ିଆ ରଖାଯାଏ। ଏହାକୁ ରଫେଜ କୁହାଯାଏ। ପୋକମାନେ ଏହି ରଫେଜ୍‌ରେ ଅନାବନା ଘାସ ଖାଇ ବଞ୍ଚିବେ/ ମୂଳ ଫସଲକୁ ଆକ୍ରମଣ କରିବେ ନାହିଁ। ମାତ୍ର କୀଟପତଙ୍ଗ କ'ଣ ଭାରତ ସରକାରଙ୍କ ଭଳି ମନ୍‌ସାଣ୍ଟୋର ବୋଲକରା ଯେ ଏପରି କଥାମାନି ଆଡ଼େଇ ହୋଇ ରହିଯିବେ, ଏହା ସମ୍ପୂର୍ଣ୍ଣ ଅବାସ୍ତବ। ବାସ୍ତବତା ଏହିକି ଯେ, ଆମର ଯେତେବେଳେ ମୁଣ୍ଡପିଛା ଚାଷଜମିର ପରିମାଣ ୨୫ଡେସିମିଲ ସେଥିରେ ଆମକୁ ବିଟିଫସଲ ଚାଷପାଇଁ କିଛି ଜମିପଡ଼ିଆ ରଖିବାକୁ କୃଷି ବୈଜ୍ଞାନିକମାନେ ପରାମର୍ଶ ଦେଉଛନ୍ତି। ବିଟି କପାର ଅଧିକ ଉତ୍ପାଦନ ଓ ପ୍ରଚୁର ଲାଭ କଥା ମନ୍‌ସାଣ୍ଟୋ କହୁଥିଲାବେଳେ କପାଚାଷୀଙ୍କର ଆତ୍ମହତ୍ୟା କାହିଁକି ? ବିଟି ବାଇଗଣରୁ ଏହି ବିଷ ମଣିଷ କ୍ରମାଗତ ଖାଦ୍ୟରେ ଗ୍ରହଣ କରିଚାଲିଲେ ରୋଗଗ୍ରସ୍ତ ହେବନି କି ? ସ୍ୱାଧୀନ ବୈଜ୍ଞାନିକମାନେ ପ୍ରମାଣ କଲେଣି ବିଟି ଆଳୁ, ବିଟି ବିଲାତି ବାଇଗଣ ଓ ବିଟି ସୋୟାବିନ ଖାଇବା ଦ୍ୱାରା ପୁରୁଷମାନଙ୍କର ଶୁକ୍ରାଣୁ ମରିଯାଉଛନ୍ତି ବା ଦୁର୍ବଳ ହେଉଛନ୍ତି। ଯୁବକମାନେ ନଂପୁସକତା ଓ ଯୁବତୀମାନେ ବନ୍ଧ୍ୟାରୋଗର ଶିକାର ହେଉଛନ୍ତି।

ବିଟିକପା ଫୁଲଫୁଟିବା କିମ୍ବା ତୋଳିବା ସମୟରେ ଶ୍ରମିକମାନଙ୍କ ମୁଣ୍ଡ ବୁଲାଇବା, ଦେହହାତ କୁଣ୍ଡାଇ ହୋଇ ଫୁଲିଯିବା, ବାନ୍ତି ହେବା ଭଳି ଉପସର୍ଗମାନ ଦେଖାଯାଏ। ଆନ୍ଧ୍ରପ୍ରଦେଶରେ ବିଟିକପା ଗଛ ଖାଇ ବହୁସଂଖ୍ୟାରେ ଛେଳି, ମେଣ୍ଢା ମରିଯାଇଥିବା ପ୍ରମାଣ ଅଛି।୫ଜଣଶ୍ରମିକ ଏହିକାରଣରୁ ମୃତ୍ୟୁବରଣ କରିଛନ୍ତି।

ବିଟି ସୋୟାବିନ୍‌ର ସ୍ୱାସ୍ଥ୍ୟ ଉପରେ ପ୍ରଭାବ ଜାଣିବା ପାଇଁ ବୈଜ୍ଞାନିକମାନେ କେତେକ ଗର୍ଭବତୀ ମୂଷାଙ୍କୁ ଜି.ଏମ୍. / ବିଟି ସୋୟାବିନ ଖାଇବାକୁ ଦେଇଥିଲେ। ସେମାନଙ୍କର ଛୁଆଗୁଡ଼ିକ ବିକଳାଙ୍ଗ/ ଅତ୍ୟନ୍ତ ଦୁର୍ବଳ ଏବଂ ପୁଷ୍ଟିହୀନତା ରୋଗରେ ଆକ୍ରାନ୍ତ ହେବା ଜଣା ପଡ଼ିଥିଲା। ଅଳ୍ପଦିନ ମଧ୍ୟରେ ଛୁଆଗୁଡ଼ିକ ମରିଗଲେ। ଥାଇଲାଣ୍ଡରେ ବିଟି/ଜିଏମ୍

ଅମୃତଭଣ୍ଡା ଚାଷ କରାଗଲା । ଏହାର ପ୍ରଭାବରେ ସ୍ଥାନୀୟ ପାରମ୍ପରିକ ଅମୃତଭଣ୍ଡା ଏପରି ସଂକ୍ରମିତ ହେଲା ଯେ, ଅଳ୍ପଦିନ ମଧ୍ୟରେ ଦେଶୀ କିସମ ବିଲୁପ୍ତ ପ୍ରାୟ ହୋଇଗଲା ।

ବିଟି ବାଇଗଣ ଯୋଗୁଁ ପରିବେଶ ପ୍ରଦୂଷିତ ହେବ । ଦେଶୀ ବାଇଗଣ ସଂକ୍ରମିତ ହେବ । ଜିଏମ୍ ବିହନର ଜିନ୍‌ଗୁଡ଼ିକର ବନ୍ଧନ ସ୍ଥାୟୀ ନୁହେଁ (Unsustain-able) । ଯେକୌଣସି ସମୟରେ ଜିଏମ୍‌ରୁ ଏହା ମୁକ୍ତ ହୋଇ ପାଖ ଜମିର ଫସଲକୁ ସଂକ୍ରମଣ କରିପାରେ । ମନ୍‌ସାଣ୍ଟୋ କହେ ଜିଏମ୍/ବିଟି ଓ ଦେଶୀ ବାଇଗଣ କିଆରୀ ମଧ୍ୟରେ ୨୦୦ମିଟର ଦୂରତା ରକ୍ଷାକଲେ ପ୍ରଦୂଷଣ ଆଶଙ୍କା ରହିବ ନାହିଁ । ଏହା ସମ୍ପୂର୍ଣ୍ଣ ମିଥ୍ୟା ଓ ଅବାସ୍ତବ । ମହୁମାଛିମାନେ ଗୋଟିଏ ସ୍ଥାନରୁ ୨ କିଲୋମିଟର ପର୍ଯ୍ୟନ୍ତ ଉଡ଼ିଥାନ୍ତି । ତେଣୁ ଏହି ଦୂରତା ସର୍ବନିମ୍ନ ୨କିଲୋମିଟର ହେବା ଦରକାର । କେବଳ ଯେ, ଫସଲ ପ୍ରଦୂଷିତ ହେବ ସେତିକି ନୁହେଁ ମହୁମାଛି, ପ୍ରଜାପତି ଓ ଉପକାରୀ କୀଟପତଙ୍ଗ ନିପାତ ହୋଇଯିବେ । ଜିଏମ୍/ବିଟି ବାଇଗଣରେ ୨ଟି ଆଣ୍ଟିବାୟୋଟିକ୍ ପ୍ରତିରୋଧକ ଜିନ୍ ଅଛି । ଏପ୍ରକାର ବାଇଗଣ ଖାଇଲେ ଆମ ଶରୀରରେ ଆଣ୍ଟିବାୟୋଟିକ୍ କାମ କରିବ ନାହିଁ ।

ଚାଷୀପାଇଁ ବିଟିବାଇଗଣ ମରଣଯନ୍ତା । ପ୍ରତିବର୍ଷ କମ୍ପାନୀଠାରୁ ନୂଆ ବିହନ, ରାସାୟନିକସାର ଓ କୀଟନାଶକ କିଣିବାକୁ ପଡ଼ିବ । ବିହନ କିଲୋର ଦାମ ୫୦/୬୦ହଜାର ଟଙ୍କା । ଜିଏମ୍/ ବିଟିର ସଂକ୍ରମଣ ଯୋଗୁଁ ଜମିରେ ନୂଆ ପ୍ରଜାତିର ଜଙ୍ଗଲି ଘାସ ମାଡ଼ିଯିବ । ଏହାକୁ ଦମନ କରିବା ପାଇଁ କମ୍ପାନୀର ଘାସମରା ଔଷଧ (Round up Ready) କିଣିବାକୁ ପଡ଼ିବ । ଚାଷୀ କରଜିଆ ହୋଇଯିବ । ଆତ୍ମହତ୍ୟା କରିବ । ୨/୩ବର୍ଷ ପରେ ଜମିରେ କୁଶ କଅଁଳିବ ନାହିଁ । ବିଟି ବାଇଗଣ ନିରନ୍ତର କୃଷିର ପରିପନ୍ଥୀ ।

ଆମ ଓଡ଼ିଶାର କଟକ, ପୁରୀ ଓ କେନ୍ଦ୍ରାପଡ଼ା ଜିଲ୍ଲାମାନଙ୍କରେ ବାଇଗଣ ଚାଷ ବ୍ୟାପକ ଅଞ୍ଚଳରେ କରାଯାଇଥାଏ । ପୁରୀ ଜିଲ୍ଲାର ସାତଶଙ୍ଖ, ବଳଙ୍ଗା, ତେଇସିପୁର, ଚନ୍ଦନପୁର, ନିମାପଡ଼ା ଓ ଢୋଲ ପ୍ରଭୃତି ଭାର୍ଗବୀ ନଦୀକୂଳିଆ ଗାଁମାନଙ୍କରେ ବହୁ ଚାଷୀ ବାଇଗଣ ଚାଷ କରିଥାନ୍ତି । ଖୋର୍ଦ୍ଧା ଜିଲ୍ଲାର ବାଲିପାଟଣା, ବାଲିଅନ୍ତା ବ୍ଲକରେ କୁଶଭଦ୍ରା ନଦୀପଠାରେ ଶହ ଶହ ଏକର ଜମିରେ ପାଳୁଆ ବାଇଗଣ ଚାଷ ହୁଏ । ମନ୍‌ସାଣ୍ଟୋ - ମାହିକୋ ଯୋଡ଼ି ଏହି ୩ଟି ଜିଲ୍ଲାର ବ୍ୟାପକ ଅଞ୍ଚଳରେ ବିଟି ବାଇଗଣ ଚାଷପାଇଁ ଓଡ଼ିଶା ସରକାର ସହମତି ଦେଇଥିବା କଥା ଜଣାପଡ଼ିଛି । ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟରେ ୪ପ୍ରକାର ବିଟି ବାଇଗଣର କ୍ଷେତ୍ର ପରୀକ୍ଷା ଆରମ୍ଭ ହୋଇଛି । ବିନାଶ କାଳେ ବିପରୀତ

ବୃଦ୍ଧି । ମନ୍‌ସାଣ୍ଟୋ-ମାହିକୋ ଓ ଆମ ରାଜ୍ୟ ସରକାରଙ୍କର ସୁଦୂରପ୍ରସାରୀ ଲକ୍ଷ୍ୟ ରହିଛି ଯେ କମ୍ପାନୀମାନେ ବିଟି ବାଇଗଣ ଠିକାଚାଷରେ କରାଇବେ । ରିଲାଏନ୍ସ, ଟାଟା, ମହିନ୍ଦ୍ରା-ମହିନ୍ଦ୍ରା ଭଳି ବହୁ କମ୍ପାନୀ ଓଡ଼ିଶାରେ ଠିକାଚାଷର ଜାଲ ବିଛାଇ ସାରିଲେଣି । ବିଟିକପା, ବାଇଗବା (ଜାଟ୍ରୋଫା), ତାଳତେଲ, ଫୁଲଚାଷ ପାଇଁ ଲକ୍ଷ ଲକ୍ଷ ହେକ୍ଟର ସରକାରୀ ଓ ଘରୋଇ ଜମି ଲିଜ୍ ନେଲେଣି । ପନିପରିବା ଚାଷଉପରେ ଏମାନଙ୍କର ଆଖି । ରାଜ୍ୟ ସରକାରଙ୍କର କୃଷକବିରୋଧୀ ନୀତି କମ୍ପାନୀମାନଙ୍କୁ ପ୍ରୋତ୍ସାହନ ଦେଉଛି । ଭାରତରେ ୩୦୦ରୁ ଅଧିକ ବହୁରାଷ୍ଟ୍ରୀୟ କମ୍ପାନୀ କୃଷିକ୍ଷେତ୍ରରେ ପ୍ରବେଶ କଲେଣି । ଭାରତ-ଆମେରିକା କୃଷିକ୍ଷେତ୍ରରେ ଜ୍ଞାନକୌଶଳ ଚୁକ୍ତି ସେମାନଙ୍କ ପ୍ରବେଶକୁ ସବୁଜ ସଙ୍କେତ ଦେଉଛି ।

## ଜି.ଏମ୍./ବିଟି ଫସଲ କ'ଣ ନିରାପଦ ?

ଗୁଣସୂତ୍ର ବିଜ୍ଞାନୀ (Geneticist) ନୋବେଲ ପୁରସ୍କାରବିଜେତା ବ୍ରେନର ଜି.ଏମ୍. କମ୍ପାନୀ ବା ବୈଜ୍ଞାନିକମାନଙ୍କୁ ତାଚ୍ଛଲ୍ୟ କରି କୁହନ୍ତି, 'ବହୁ ବୈଜ୍ଞାନିକ ଜି.ଏମ୍. ଯେ ସମ୍ପୂର୍ଣ୍ଣ ବିପଦମୁକ୍ତ, ଏପରି ମନ୍ତବ୍ୟ ଦେବାକୁ ଅନିଚ୍ଛୁକ । କାରଣ ସେମାନେ ଜାଣନ୍ତି ତାଙ୍କ ଜୀବନକାଳ ମଧ୍ୟରେ ଏହା ଭୁଲ ପ୍ରମାଣିତ ହେବାର ଆଶଙ୍କା ଅଧିକ । କୃଷିକ୍ଷେତ୍ରରେ ଜି.ଏମ୍. ଟେକ୍ନୋଲୋଜିର ଭଲମନ୍ଦ ଗୁଣ ପ୍ରମାଣ କରିବା ବର୍ତ୍ତମାନ ଗବେଷଣା ବ୍ୟବସ୍ଥା ମଧ୍ୟରେ ସମ୍ଭବ ନୁହେଁ । ବୈଜ୍ଞାନିକ ବିଶ୍ଳେଷଣ ପାଇଁ ଜି.ଏମ୍.ର ପରୀକ୍ଷା ନିରୀକ୍ଷା ପୃଥକ୍ ଭାବେ ରଦ୍ଧ ବ୍ୟବସ୍ଥାରେ ହେବା ଜରୁରୀ ?' ଆଗରୁ ଆଲୋଚନା କରାଯାଉଛି ପକ୍ଷୀ, ମହୁମାଛି, ପ୍ରଜାପତି ଓ ପବନ ଯୋଗୁଁ ଏହା ସମ୍ଭବ ହେବନାହିଁ ? ୟୁରୋପିୟାନ ୟୁନିୟନ ଏପର୍ଯ୍ୟନ୍ତ ଜି.ଏମ୍.କୁ ନିଷିଦ୍ଧ ଜାହିର ରଖିଛି । ଫ୍ରାନ୍ସ ନିକଟରେ ଜି.ଏମ୍.ର ନିଷିଦ୍ଧ ସମୟସୀମା ଆଉ ୩ବର୍ଷ ଅର୍ଥାତ୍ ୨୦୧୧ ପର୍ଯ୍ୟନ୍ତ ବଢ଼ାଇ ଦେଇଛି । ଇଂଲଣ୍ଡରେ ମନ୍‌ସାଣ୍ଟୋ ପ୍ରବେଶ ନିଷିଦ୍ଧ ଅଛି । ବିଶ୍ୱବାଣିଜ୍ୟ ସଙ୍ଗଠନରେ ଜି.ଏମ୍. ଟେକ୍ନୋଲଜି ପାଇଁ ଆମେରିକା ଓ ଇଉରୋପ ମଧ୍ୟରେ ମତପାର୍ଥକ୍ୟ ବଳବତ୍ତର ଅଛି । ଚୀନ୍‌ରେ ମନ୍‌ସାଣ୍ଟୋର ପ୍ରବେଶ ମଧ୍ୟ ନିଷିଦ୍ଧ । ଜି.ଏମ୍‌ଯେ କେବଳ ବ୍ୟବସାୟିକ କୃଷିପାଇଁ ଉଦ୍ଦିଷ୍ଟ ଏବଂ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଛୋଟ ଓ ନାମମାତ୍ର ଚାଷୀ, କୃଷିକ୍ଷେତ୍ରକୁ ଧ୍ୱଂସକରି ନିଜ ନିଜର ଲାଭ ପାଇଁ ଏହି ଟେକ୍ନୋଲୋଜି ପ୍ରୟୋଗ ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଛନ୍ତି ।

# ଜି.ଏମ୍. ବିହନ ଓ ସରକାରୀ ବିଧିବିଧାନ

ବାଇଗଣର ଜନ୍ମସ୍ଥାନ ଭାରତବର୍ଷ। ଜୈବ ବିବିଧତା ଆଇନ (Biodiversity Act)କୁହେ,କୌଣସି ପ୍ରଜାତିର ଜନ୍ମସ୍ଥାନ ଦେଶରେ ଜି.ଏମ୍. ପ୍ରୟୋଗ ହେବନାହିଁ। ଜି.ଏମ୍. ଉପରେ ନିୟନ୍ତ୍ରଣ ପାଇଁ ଭାରତ ସରକାରଙ୍କ ପରିବେଶ ମନ୍ତ୍ରଣାଳୟ ଅଧିନରେ ଜେନେଟିକ ଇଞ୍ଜିନିୟରିଂ ଆପ୍ରୁଭାଲ କମିଟି କାମକରେ। ଗତ ୨/୩ ବର୍ଷ ହେଲା ବିଟି ବାଇଗଣର କ୍ଷେତ୍ର ପରୀକ୍ଷା ପାଇଁ GEAC ବାରମ୍ବାର କମ୍ପାନୀ ସପକ୍ଷରେ କୋହଳ ନୀତି ଅବଲମ୍ବନ କରିଆସୁଛି। ମାନ୍ୟବର ଉଚ୍ଚତମ ନ୍ୟାୟାଳୟ ଡିସେମ୍ବର ୧୦, ୨୦୦୭ରେ ମାହିକୋ- ମନ୍‌ସାଣ୍ଟୋ ବିଟି ବାଇଗଣ କ୍ଷେତ୍ର ପରୀକ୍ଷା ବିରୁଦ୍ଧରେ ରହିତାଦେଶ ଦେବାକୁ ମନା କରିଦେଇଛନ୍ତି। ବିହନ ବିଲ - ୨୦୦୪ରେ ବିଟି ବିହନ ପ୍ରଚଳନ ପାଇଁ ସମସ୍ତ ବ୍ୟବସ୍ଥା ସରକାର କରିଛନ୍ତି। ଯେତେବେଳେ ଜନକଲ୍ୟାଣକାରୀ କେନ୍ଦ୍ର ବା ରାଜ୍ୟ ସରକାର ଚାଷୀ ବେକରେ ଠିଆ ହେବାପାଇଁ ଦୃଢ଼ ପରିକର, ଆଉ କିଏ ଚାଷୀକୁ ସୁରକ୍ଷା ଦେଇପାରିବ ?

ଆମ ଓଡ଼ିଶା ସରକାର ଗତ ୪/୫ବର୍ଷ ମଧ୍ୟରେ ଏକାଧିକ କୃଷକମାରଣ ଆଇନ ପ୍ରଣୟନ କରିଛନ୍ତି। ପାଣିପଞ୍ଚାୟତ ଆଇନ, କୃଷିଜାତ ଦ୍ରବ୍ୟ ବିପଣନ ଓ ଠିକାଚାଷ ସଂଶୋଧନ ଆଇନ, ବାୟୋ-ଟେକ୍ନୋଲୋଜି ଆଇନ ଏବଂ ଚିଠା କୃଷି ନୀତି ୨୦୦୭କୁ ଅନୁଧ୍ୟାନ କଲେ ଓଡ଼ିଶାର କୃଷି ଓ କୃଷକର ଭବିଷ୍ୟତ ଯେ ବିପନ୍ନ, ଏହା ସ୍ପଷ୍ଟ ହୋଇଯିବ। ଏହିସବୁ ଆଇନକୁ ଆଧାର କରି ଆମ ରାଜ୍ୟ ସରକାର କୃଷି ବିଶ୍ୱବିଦ୍ୟାଳୟରେ ବିଟି ବାଇଗଣ କ୍ଷେତ୍ର ପରୀକ୍ଷା ପାଇଁ ଆଦେଶ ଦେଇଛନ୍ତି। ଆଗକୁ ଦେଶୀ ବାଇଗଣ ନିଶ୍ଚିହ୍ନ ହେବ ଏବଂ ବାଇଗଣ ଚାଷ କମ୍ପାନୀହାତକୁ ଯିବା ନିଶ୍ଚିତ ହୋଇଯିବ। ବୁଦ୍ଧିଜୀବୀ, ସ୍ୱାଧୀନ ବୈଜ୍ଞାନିକ ଓ କୃଷି ସଙ୍ଗଠନମାନେ ଏହି ହୀନ ଉଦ୍ୟମ ବିରୁଦ୍ଧରେ ସ୍ୱର ଉତ୍ତୋଳନ ପାଇଁ ସମୟ ଆସିଛି। ଦେଶୀ ବାଇଗଣ ସୁରକ୍ଷା ଓ ଛୋଟ ଓ ନାମମାତ୍ର ଚାଷୀର ଜୀବିକା ବଞ୍ଚାଇବା ଅତ୍ୟନ୍ତ ଜରୁରୀ ମନେହୁଏ।



# ଚାଷୀ ଆତ୍ମହତ୍ୟା: ନିଦାନ, ନିରାକରଣ ଓ ନିୟନ୍ତ୍ରଣ

ଓଡ଼ିଶାର ଚାଷ ଓ ଚାଷୀ ସଙ୍କଟରେ। ଗତ ତିନିମାସ ମଧ୍ୟରେ ୪୦ରୁ ଅଧିକ ଚାଷୀ ଆତ୍ମହତ୍ୟା କଲେଣି। ରାଜ୍ୟ ସରକାରଙ୍କ ପାଇଁ ୨୦୦୯ର ଚାଷୀ ଆତ୍ମହତ୍ୟା ଏକ କଳଙ୍କିତ ଅଧ୍ୟାୟ। ବିଳମ୍ବିତ ମୌସୁମୀ ଓ ଅନାବୃଷ୍ଟି। କାଗଜ କଲମରେ ଜଳସେଚନ, ରାସାୟନିକ କୃଷିଜନିତ ଫସଲରେ ପୋକ ଓ ରୋଗ। ବ୍ୟୟବହୁଳ କୃଷି ୨୦୦୯ ଖରିଫ ଫସଲ ଉତାରିବା ପାଇଁ ଚାଷୀକୁ ଅସ୍ତବ୍ୟସ୍ତ କରିପକାଇଛି। ଫସଲ ନଷ୍ଟ ସାଙ୍ଗକୁ ଋଣ ବୋଝ। ସାଆନ୍ତର ଜମିଭାଗ ଫସଲ। ଆଗକୁ ଫସଲ ଡେରିବାକୁ ତା'ପାଖରେ ସମ୍ବଳ ନାହିଁ। ପରିବାର ପ୍ରତିପୋଷଣ ପାଇଁ ଅସମ୍ଭବ ହୋଇପଡୁଛି। ଚାଷୀ ମାନସିକ ଭାରସାମ୍ୟ ହରାଇ ଆତ୍ମହତ୍ୟା କରୁଛି। ଆତ୍ମହତ୍ୟା କରିଥିବା ଚାଷୀମାନେ ସମସ୍ତେ ଛୋଟଚାଷୀ ବା ନାମମାତ୍ର ଚାଷୀ ଅଥବା ଭାଗଚାଷୀ। ଏମାନଙ୍କ ମଧ୍ୟରୁ ୩୦ରୁ ଅଧିକ ଭାଗଚାଷୀ। ଅନ୍ୟ ଚାଷୀମାନଙ୍କର ଜଣକା ଏକ ହେକ୍ଟର ଜମିରୁ କମ୍ ଜମି। ଭାଗଚାଷୀର ପରିସଂଖ୍ୟାନ ସରକାରୀ ଦଲିଲ ଦସ୍ତାବିଜରେ ନାହିଁ। ଯେଉଁ ଜମିମାଲିକମାନଙ୍କର ୨ ହେକ୍ଟରରୁ ଅଧିକ ଜମି, ସେମାନେ ନିଜେ ଚାଷକରନ୍ତି ନାହିଁ। ହଳିଆକୁ ଭାଗ ଦେଇ ସରକାରୀ, ବେସରକାରୀ ଚାକିରି, ଠିକାଦାରୀ, ବ୍ୟବସାୟ; କିଛି ନହେଲେ ରାଜନୀତି କରିଥାନ୍ତି। ପ୍ରାୟ ସହରରେ ରହନ୍ତି। କୃଷିଋଣ, କୃଷି ରିହାତି, ଫସଲ କ୍ଷତି ପାଇଁ ସରକାରୀ ସାହାଯ୍ୟ, କୃଷି ବୀମା ଓ ଋଣ ଛାଡ଼ ସୁବିଧା ଏହି ସାଆନ୍ତିଆ ଜମିମାଲିକମାନେ ହିଁ ହାତେଇଥାନ୍ତି ସରକାରଙ୍କ ଗୋଚରରେ। ଓଡ଼ିଶାର ଉପକୂଳ ଜିଲ୍ଲାମାନଙ୍କରେ ଭାଗଚାଷୀ ସଂଖ୍ୟା ୮୦ ପ୍ରତିଶତ ଏବଂ ପଶ୍ଚିମ ଓଡ଼ିଶାରେ ଏହା ୬୦ପ୍ରତିଶତ ହେବ। ଚାଷୀ ଆତ୍ମହତ୍ୟା ତାଲିକାରେ ଏହି ସାଆନ୍ତିଆ ଚାଷୀ ନାହାନ୍ତି। ଏମାନେ ଆଖି ରଖିଛନ୍ତି ଯଦି ଆତ୍ମହତ୍ୟାକୁ ବିଚାରକରି ସରକାର କିଛି ରିହାତି ଘୋଷଣା କରନ୍ତି, ଏମାନେ ଶୁଖିଲାରେ ବାଳିଆ ପିଟିବେ।

ମୃତକଙ୍କ ପରିବାରବର୍ଗ ପୋଷଣହାରି ମୁଣ୍ଡ ହରାଇ ଶୂନ୍ୟ ଆକାଶକୁ ଚାହିଁ ରହିଥିଲା ବେଳେ ଆମ ରାଜ୍ୟ ସରକାର ଏଭଳି ଏକ ଉଦ୍‌ବେଗଜନିତ ସମସ୍ୟାକୁ ଆଡ଼ଦେଖା କରୁଛନ୍ତି। ସରକାର ସମୟୋଚିତ ପଦକ୍ଷେପ ନେଇଥିଲେ ଆତ୍ମହତ୍ୟା ଏତେ ସଂଖ୍ୟାରେ ହୁଏତ ଘଟିନଥାନ୍ତା। ଆନ୍ଧ୍ର, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଭଳି ରାଜ୍ୟମାନେ ଅଗଷ୍ଟମାସ ବେଳକୁ ସେମାନଙ୍କ ରାଜ୍ୟର ପ୍ରଭାବିତ ଜିଲ୍ଲାମାନଙ୍କୁ ମରୁଡ଼ି ଘୋଷଣା କଲେ ଏବଂ କେନ୍ଦ୍ର ସରକାରଙ୍କ ଦୃଷ୍ଟି ଆକର୍ଷଣ କଲେ। ସେପ୍ଟେମ୍ବର ମାସବେଳକୁ କେନ୍ଦ୍ର ସରକାର ମଧ୍ୟ ସହମତି ପ୍ରକାଶ କରି ଚାଷୀଙ୍କୁ ସାହାଯ୍ୟ କାର୍ଯ୍ୟ ଆରମ୍ଭ କରିପାରିଲେ। ମାତ୍ର ୩୦ରୁ ଅଧିକ ଚାଷୀ ଆତ୍ମହତ୍ୟା କଲାପରେ ଆମ ସରକାର ଡିସେମ୍ବର ମାସ ପ୍ରଥମ ସପ୍ତାହରେ କେତେକ ଜିଲ୍ଲାକୁ ମରୁଡ଼ି ଘୋଷଣା କରୁଛନ୍ତି। ରାଜ୍ୟ ସରକାରଙ୍କର ଚାଷୀ ସମସ୍ୟାପାଇଁ ତତ୍ପରତାର ଏହା ଏକ ନମୂନା। ସରକାର ଏବେ ମଧ୍ୟ 'ଚାଷପାଇଁ ଆତ୍ମହତ୍ୟା' ସ୍ୱୀକାର କରିନାହାନ୍ତି। ଅବଶ୍ୟ ଜାନୁଆରୀ ପ୍ରଥମ ସପ୍ତାହରେ କେନ୍ଦ୍ରୀୟ ଅନୁଧ୍ୟାନକାରୀ ଦଳ ମରୁଡ଼ିପ୍ରଭାବିତ ଅଞ୍ଚଳ ବୁଲି ଦେଖିଥିଲେ। ଇଲେକ୍ଟ୍ରୋନିକ ଓ ଛପା ଗଣମାଧ୍ୟମ ଚାଷୀ ଆତ୍ମହତ୍ୟା ଖବର ନିୟମିତ ଲୋକଙ୍କ ପାଖରେ ପହଞ୍ଚାଉଛନ୍ତି। ପରିସ୍ଥିତିର ଭୟାବହତାରୁ ପୂର୍ବାନୁମାନ କରାଯାଏ ସଂକ୍ରାମକ ରୋଗ ଭଳି ଏହା ସାରା ରାଜ୍ୟକୁ ବ୍ୟାପିଯିବ ଏବଂ ଆଗକୁ ପରିସ୍ଥିତି ଅଣାୟତ୍ତ ହେବ। ରାଜ୍ୟର କେଉଁଶ୍ରେଣୀର ଲୋକ ଏହି ସମସ୍ୟାକୁ କିପରି ବିଚାରୁଛନ୍ତି ଏବଂ ସେମାନେ କି ପ୍ରକାର ଭୂମିକା ନେଉଛନ୍ତି, ଏହାର ଏକ ଅନୁଶୀଳନ ଆବଶ୍ୟକ ମନେହୁଏ। ସମସ୍ୟା ସହିତ ସମ୍ପୃକ୍ତ ବା ବିଚଳିତ ପକ୍ଷମାନେ ହେବେ– ୧) ମୃତକଙ୍କ ପରିବାରବର୍ଗ ଓ ଗ୍ରାମବାସୀ, ୨) ଗଣମାଧ୍ୟମ,୩) ରାଜ୍ୟ ଓ କେନ୍ଦ୍ର ସରକାର, ୪) ବିରୋଧୀ ରାଜନୈତିକ ଦଳ, ୫) ନିରପେକ୍ଷ କୃଷକ ସଙ୍ଗଠନ ଓ ସମାଜକର୍ମୀ, ୬) ବୁଦ୍ଧିଜୀବୀ, ଅର୍ଥଶାସ୍ତ୍ରୀ ଓ ବୈଜ୍ଞାନିକ।

ସରକାରଙ୍କୁ ବାଦ୍ ଦେଲେ ଅନ୍ୟସମସ୍ତ ପକ୍ଷ ବିଚଳିତ, ବିବ୍ରତ ଓ ଚିନ୍ତିତ ମଧ୍ୟ। ସ୍ଥଳବିଶେଷରେ କମ୍,ବେଶୀ ହୋଇପାରେ। ପରିବାରବର୍ଗ ତ ଶୋକାକୁଳ ହେବା ସ୍ୱାଭାବିକ। ବିଧବା ସ୍ତ୍ରୀ, ବୁଢ଼ା ବାପା, ମା' ବଞ୍ଚି ରହିବାର ସମସ୍ତ ଶକ୍ତି ଯେପରି ହରାଇ ବସିଛନ୍ତି। ଶୂନ୍ୟକୁ ଚାହିଁ ଅନାଗତ ଭବିଷ୍ୟତକୁ ଅପେକ୍ଷା। ଚାରିଆଡ଼ ସେମାନଙ୍କ ପାଇଁ ଅନ୍ଧାର। ଛୋଟଛୋଟ ପୁଅ,ଝିଅମାନେ ନକହିପାରିଲେ ମଧ୍ୟ ବୁଝୁଛନ୍ତି ସେମାନେ ବାପଛେଉଣ୍ଡ ହୋଇଗଲେ। ମା'ର ବିକଳ ବୁଝୁଛନ୍ତି। ତାଙ୍କର ପିଲାଳିଆ ବୁଦ୍ଧିରେ ମା'ଆଖିରୁ ଲୁହ ପୋଛି ଦେଉଛନ୍ତି। ମା, ଜେଜେ ମା, ଜେଜେ ବାପାଙ୍କୁ ବୁଝାଉଛନ୍ତି। ଗାଁ ଲୋକେ କ୍ଷୁବ୍ଧ। କି ସରକାର! ଏତେ ଅବିଚାର। ଏତେ ନିଷ୍ଠୁର! ଚାଷୀକୁଳକୁ ଏ ସରକାରଟା କାହିଁକି

ଅଣଦେଖା କରୁଛି ? ଦିନ ରାତି ତ' ରେଡ଼ିଓ, ଟି.ଭିରେ ଚାଷୀକୁ ହାତୀଦେଉଛୁ, ଘୋଡ଼ା ଦେଉଛୁ, ପ୍ୟାକେଜ୍ ଦେଉଛୁ, ନୂଆ ଚାଷନୀତିରେ ଚାଷୀକୁ ଅସୁମାରି ସାହାଯ୍ୟ ଦେଉଛୁ ବୋଲି ପ୍ରଚାର କରୁଛନ୍ତି। କାହିଁ କିଛି ତ ସାହାଯ୍ୟ ଆମଭଳି ଗରିବ ଚାଷୀ, ଭାଗଚାଷୀକୁ ମିଳୁନାହିଁ। ସାହାଯ୍ୟ ଜିନିଷଗୁଡ଼ାକ କ'ଣ ରାଜାଙ୍କର ଆଖିକୁ ଦିଶୁନଥିବା ପୋଷାକ ଭଳି କି ? ମିଛ କହିବା କ'ଣ ସରକାରଙ୍କର ପରମ ଧର୍ମ କି ? କେନାଲ ଅଛି, ପାଣି ନାହିଁ, ରୋଗପୋକ ପାଇଁ ବେଳରେ ଔଷଧ ନାହିଁ। ଅଭାବ, ଅନଟନରେ ଚାଷୀଭାଇଟେ ଜୀବନ ହାରିଲା- ତା'ଦୁଆରେ ଟିକେ ଠିଆହେବାକୁ ବି ସରକାର ବାହାଦୂର ଭାର୍ଜନ ନୁହନ୍ତି। ଧନ୍ୟରେ ଓଡ଼ିଶା ସରକାର ! ଧନ୍ୟ ତୁମର ଚାଷୀମାରଣ ନୀତି ! ମନଭିତରେ ପୁଞ୍ଜିଭୂତ ଦୁଃଖ ସେମାନଙ୍କୁ ବିଦ୍ରୋହ ପାଇଁ ପ୍ରେରଣା ଦିଏ। ଏ ସରକାର ସହିତ ଲଢ଼େଇ କରି ଆମ ନ୍ୟାଯ୍ୟ ଦାବି ହାସଲ କରିବାକୁ ହେବ। କିନ୍ତୁ କିଏ ତାଙ୍କୁ ଏକାଠି କରିବ, ଆଗକୁ ବାଟ ଦେଖାଇବ। ପାଣି ଫୋଟକା ଭଳି ମନଭିତରୁ ବିଦ୍ରୋହ ଭାବ ମଉଳିଯାଏ। ମନକୁ ବୁଝାନ୍ତି- ଏ ସରକାର ବଡ଼ ଲୋକଙ୍କର, ଆମେ ବାମନ ହୋଇ ଚାନ୍ଦକୁ ହାତ ବଢ଼ାଇବା କାହିଁକି ? ଆମ ପାଇଁ କେହି ଖୁଣ୍ଟହୋଇ ଠିଆହେଲେ ସିନା ଆମେ ବାହାରନ୍ତୁ। ଆମକୁ ତ' ୨ଟଙ୍କିଆ ଚାଉଳଦେଇ ସରକାର ଭିକାରୀ କରିଦେଇଛି। ଆମର ପୁଣି ମତ !

ଗଣମାଧ୍ୟମର ଭୂମିକା ନିଶ୍ଚୟ ସ୍ୱାଗତଯୋଗ୍ୟ। ୨/୩ଟି ସରକାରିଆ ଓଡ଼ିଆ ଖବରକାଗଜକୁ ବାଦ୍ ଦେଲେ ଅନ୍ୟମାନେ ଚାଷୀ ଆତ୍ମହତ୍ୟା ଭଳି ଏକ ସ୍ପର୍ଶକାତର ଘଟଣାବଳୀକୁ ଲୋକଲୋଚନକୁ ଆଣିବାରେ ପ୍ରମୁଖ ଭୂମିକା ନେଇଛନ୍ତି। ମାତ୍ର ସରକାର ସେମାନଙ୍କର ସମସ୍ତ ତଥ୍ୟକୁ ଅସ୍ୱୀକାର କରି ଚାଲିଛନ୍ତି। ଦୁଇଟି ତିନିଗୋଟି ଶବ୍ଦରେ ସମସ୍ତ ଆତ୍ମହତ୍ୟା ଖବରକୁ ମିଛ କରିଦେଇଛନ୍ତି। 'ଆତ୍ମହତ୍ୟା ଚାଷପାଇଁ ନୁହେଁ। ପାରିବାରିକ କଳି ଏହାର କାରଣ।' ଗାଲୁଆ ସରକାର। ଅଥର୍ବ, ପଙ୍ଗୁ ସରକାର। ଖଣି, ଖାଦାନ, ଲୁଟ୍‌କାରୀ ସରକାରଙ୍କର ସମସ୍ତ ଧ୍ୟାନ ଓ କର୍ମ ଟାଟା, ପୋସ୍କୋ, ମିତ୍ତଲ, ବେଦାନ୍ତ ଭଳି ଶିଳ୍ପପତିମାନଙ୍କୁ ଜଳ, ଜମି, ଜଙ୍ଗଲ ବାଣ୍ଟିବା। ଗଣମାଧ୍ୟମମାନେ ଚାଷୀ ଓ ଚାଷର ତୃଣମୂଳ ଜ୍ଞାନ ସଂଗ୍ରହ କରି ଯଦି କଲମ ଜାରିରଖନ୍ତି, ଡେରିରେ ହେଲେବି କିଛି ପରିବର୍ତ୍ତନ ଆଶା କରାଯାଇପାରେ।

ସରକାରଙ୍କ ଭୂମିକା। ରାଇଜ ପାପ ରଜା ମୁଣ୍ଡରେ। ରାଜ୍ୟର ଯେକୌଣସି ସମସ୍ୟା ପାଇଁ ରାଜ୍ୟ ସରକାର ଉତ୍ତରଦାୟୀ। ମାତ୍ର ଚାଷୀ ଆତ୍ମହତ୍ୟା ଭଳି ଏକ ସମ୍ବେଦନଶୀଳ

ପରିସ୍ଥିତିରେ ଆମ ମୁଖ୍ୟମନ୍ତ୍ରୀ ସମ୍ପୂର୍ଣ୍ଣ ନିରବ କହିଲେ ଅତ୍ୟୁକ୍ତି ହେବନାହିଁ। ଆଗରୁ ତ' ଆମେ କହିଛୁ ସରକାର ବେଳହୁଁ ପଦକ୍ଷେପ ନେଇଥିଲେ ଚାଷୀ ଆତ୍ମହତ୍ୟାକୁ ଏଡ଼ାଇ ଦିଆଯାଇ ପାରିଥାନ୍ତା। ରାଜ୍ୟ ସରକାର କଥାକଥାକେ କେନ୍ଦ୍ରକୁ ଦୋଷଦେଇ ନିଜକୁ ସୁନାପିଲା କହୁଛନ୍ତି। ନଭେମ୍ବର ମାସ ପର୍ଯ୍ୟନ୍ତ କେନ୍ଦ୍ର ସରକାରଙ୍କ ନିକଟରେ ଓଡ଼ିଶାରେ ମରୁଡ଼ିର ପ୍ରଭାବ ସମ୍ପର୍କରେ କୌଣସି ରିପୋର୍ଟ ପହଞ୍ଚି ନାହିଁ। ଏପରିକି ନଭେମ୍ବର ୩ରୁ ୫ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଦିଲ୍ଲୀଗସ୍ତରେ ଥିଲେ ମଧ୍ୟ ଓଡ଼ିଶାର ମରୁଡ଼ି କଥା ଉଠାଇନାହାନ୍ତି। ଓଡ଼ିଶାରେ ଫାଶିବାଦ ଶାସନ ଚାଲିଛି। ଏଠାରେ ପ୍ରଜାମାନେ ସରକାରଙ୍କ ପାଖରେ ଉତ୍ତରଦାୟୀ। ସରକାର ପ୍ରଜାମାନଙ୍କ ନିକଟରେ ଉତ୍ତରଦାୟୀ ନୁହନ୍ତି। ଧନ୍ୟରେ ଗଣତନ୍ତ୍ର ଶାସନ। ଏଠାରେ ବହୁମତ ସରକାର ଲୋକଙ୍କ ଦ୍ୱାରା, ମାତ୍ର ଲୋକଙ୍କ ପାଇଁ ନୁହେଁ। ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ, ଉତ୍ସବ ଓ ନାଚଗୀତ ପାଇଁ ସମୟ ଦେଉଛନ୍ତି। ଢଣେହେଲେ ମୃତକ ଚାଷୀ ପରିବାରରେ ଠିଆହୋଇ ପାରିଥାନ୍ତେ ? ମୁଖ୍ୟମନ୍ତ୍ରୀଙ୍କ ନିଜ ନିର୍ବାଚନମଣ୍ଡଳୀ ହିଞ୍ଜିଳିକୁ ଲାଗି ସାନଖେମୁଣ୍ଡି ବ୍ଲକ୍‌ର ଦୁଇଜଣ ଚାଷୀ ଆତ୍ମହତ୍ୟା କଲେ। ଜଣେ ଧାନଫସଲ ନଷ୍ଟପାଇଁ, ଅନ୍ୟଜଣକ କ୍ଷୀରର ଅଭାବୀ ବିକ୍ରି ଯୋଗୁଁ। ଆତ୍ମହତ୍ୟାର ଗୋଟିଏ ସପ୍ତାହପରେ ମୁଖ୍ୟମନ୍ତ୍ରୀ ଶେରଗଡ଼ ବ୍ଲକ୍‌ରେ ଜଳସେଚନ ଯୋଜନା ଶୁଭାରମ୍ଭ କରନ୍ତି। ବାଣ, ବାଜା, ଫୁଲ, ପୋଲିସ ପଲଟନ ଭିତରେ ଗସ୍ତକରି ଫେରିଆସନ୍ତି। ଆତ୍ମହତ୍ୟା କରିଥିବା ଚାଷୀଙ୍କ ଗାଁରେ ଟିକେ ପାଦ ପକାଇବାକୁ ମନ ହେଲାନି ? ସରକାର ମା', ବାପ ତ।

ଏଣେ ରାଜ୍ୟ କୃଷିମନ୍ତ୍ରୀ ଆରମ୍ଭରୁ ଚାଷୀ ଆତ୍ମହତ୍ୟାକୁ ଗଣମାଧ୍ୟମ ଓ ବିରୋଧୀଦଳର ମନଗଢ଼ା କାହାଣୀ କହି ଉଡ଼ାଇ ଚାଲିଛନ୍ତି। ଗଣମାଧ୍ୟମକୁ ସାକ୍ଷାତ୍‌କାରରେ ଚାଷୀକୁ ଉପହାସ କରି ସେ ଢଗ ବୋଲିଛନ୍ତି, 'ଅଖ ବୁଲୁଥିଲେ ଚକ ବୁଲୁଥାଏ ବୁଲିପଡୁଥାଏ ପଇ- ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି।' ବାସ୍ ମୃତକଙ୍କ ପରିବାରକୁ ସାନ୍ତ୍ୱନା ! ରାଜ୍ୟ ଚାଷୀକୁଳଙ୍କୁ ସାନ୍ତ୍ୱନା ! କୃଷିମନ୍ତ୍ରୀଙ୍କ ନିଜ ଜିଲ୍ଲା ଜଗତସିଂହପୁରରେ ଲାଗ ଲାଗ ଦୁଇଜଣ ଚାଷୀଙ୍କ ଆତ୍ମହତ୍ୟା ତାଙ୍କ ପାଇଁ ପୌରୁଷର ବିଷୟ। ରଘୁନାଥପୁର ବ୍ଲକ୍ ସଦେଇପୁର ଗାଁର ମନୋରଞ୍ଜନ ପରିଡ଼ାଙ୍କ ଆତ୍ମହତ୍ୟାର ସପ୍ତାହେ ନପୁରୁଣୁ ତିର୍ତ୍ତୋଲ ବ୍ଲକ୍ ନଳିଆପାଳ ଗାଁର ସରୋଜ ସ୍ୱାଇଁ (୪୫) ଡିସେମ୍ବର ୨୦ତାରିଖରେ କୀଟନାଶକ ବିଷ ପିଇ ଆତ୍ମହତ୍ୟା କଲେ। ଏଣେ କୃଷିମନ୍ତ୍ରୀ କୃଷକ ସମ୍ପର୍କ ମେଳା (ଜାଣିବା ଶୁଣିବା ଲୋକେ ଏହାକୁ 'କମ୍ପାନୀ ସମ୍ପର୍କ ମେଳା' କୁହନ୍ତି), କୃଷକ କ୍ଲବ୍ ଉଦ୍‌ଘାଟନ ଭଳି ମଉଜ ମଜଲିସ୍‌ରେ

ଚୁର। ମୁଖ୍ୟମନ୍ତ୍ରୀ ଓ କୃଷିମନ୍ତ୍ରୀଙ୍କର ଏହି ବିଳାସପୂର୍ଣ୍ଣ ଉଦ୍‌ଘାଟନ, ଶିଳାନ୍ୟାସ ବା ଉତ୍ସବକୁ ବୁଦ୍ଧିଜୀବୀମାନେ ରୋମ ସହର ଜଳିଲାବେଳେ ନିରୋ ରଜାଙ୍କ ବଂଶୀବାଦନ ସହିତ ତୁଳନା କଲେଣି।

ରାଜ୍ୟରେ କ୍ରମାଗତ କୃଷକ ଆତ୍ମହତ୍ୟା ଘଟୁଥିବା ବେଳେ ଆମ ସରକାର ନିର୍ଦ୍ଧାରିତ ସମୟର ୧୫ଦିନ ଆଗରୁ ବିଧାନସଭା ଅଧିବେଶନ ଅନିର୍ଦ୍ଦିଷ୍ଟକାଳ ପାଇଁ ବନ୍ଦ କରିଦେଲେ। କୃଷି ଓ କୃଷକ ସମସ୍ୟା, ଏକଲକ୍ଷ କୋଟି ଟଙ୍କାର ଖଣିଦୁର୍ନୀତିରୁ ନିଜକୁ ବଞ୍ଚାଇବା ପାଇଁ ଏହା ଥିଲା ସରକାରଙ୍କର ଫନ୍ଦି। ଯେଉଁ ସରକାର ପୂର୍ବ ଅଧିବେଶନରେ ବେଦାନ୍ତ କମ୍ପାନୀକୁ ବିଶ୍ୱବିଦ୍ୟାଳୟ ପାଇଁ ୮ହଜାର ଏକର ଚାଷଜମି ଶାଗମାଛ ଦରରେ ଯୋଗାଇ ଦେବାକୁ ବିଧାନସଭାକୁ ଧାର୍ଯ୍ୟ ସମୟରୁ ଗୋଟିଏ ଦିନ ବଢ଼ାଇ ବହୁମତ ବଳରେ ବେଦାନ୍ତ ବିଶ୍ୱବିଦ୍ୟାଳୟ ବିଲ୍ ପାସ୍ କରାଇନେଲେ, ସେହି ସରକାର ଚାଷୀ ଆତ୍ମହତ୍ୟାକୁ ଗୌଣ ମନେ କରୁଥିବା ଏଥିରୁ ସ୍ପଷ୍ଟ ହୋଇଯାଇଛି। ବିକାଶ ନାଁରେ ବିନାଶର କଳା ମେଘ ଓଡ଼ିଶା ଆକାଶ ଆଚ୍ଛାଦିତ କଲାଣି। ସଦ୍ୟ ପ୍ରକାଶିତ ଏକାଧିକ ରିପୋର୍ଟରୁ ଏହାର ପ୍ରମାଣ ମିଳେ। ୨୦୦୮-୦୯ ପାଇଁ ଓଡ଼ିଶାର ଯେଉଁ ଭୋକର ଭୂଗୋଳ ଖୋଦ୍ ଯୋଜନା କମିଶନ ପ୍ରକାଶ କରିଛନ୍ତି, ଓଡ଼ିଶା ସେଥିରେ ଦେଶର ସର୍ବାଧିକ ଗରିବ ରାଜ୍ୟର ମାନ୍ୟତା ପାଇଛି। ତେନ୍ଦୁଲକର ରିପୋର୍ଟ, ଜାତୀୟ ନମୂନା ସର୍ବେକ୍ଷଣ ରିପୋର୍ଟ, ମିଳିତ ଜାତିସଂଘ ମାନବ ସମ୍ବଳ ବିକାଶ ରିପୋର୍ଟରେ ଏକା କଥା ପ୍ରକାଶ ପାଇଛି। ଓଡ଼ିଶାର ଗ୍ରାମାଞ୍ଚଳରେ ଗରିବୀ ସଂଖ୍ୟା ୫୭ପ୍ରତିଶତ ଥିଲା ବେଳେ ସହରାଞ୍ଚଳରେ ଏହି ସଂଖ୍ୟା ୪୦ରୁ ଅଧିକ। ପରିବାରର ହାରାହାରି ମାସିକ ଆୟ ଗ୍ରାମାଞ୍ଚଳରେ ୪୨୫ଟଙ୍କା। ପୂର୍ବବର୍ଷ ତୁଳନାରେ ଗରିବୀ ବଢ଼ିଛି। ସହରାଞ୍ଚଳ ଗରିବୀ ବଢ଼ିବାର କାରଣ ଦର୍ଶାଇ ରିପୋର୍ଟ ଉଲ୍ଲେଖ କରିଛି ଯେ ଗ୍ରାମାଞ୍ଚଳରୁ କୃଷିଶ୍ରମିକ ଓ ଛୋଟ ଚାଷୀମାନେ ଚାଷଛାଡ଼ି ସହରକୁ ଆସୁଛନ୍ତି ଏବଂ କାମ ନପାଇ ବାର ଦ୍ୱାର ତେର ପିଣ୍ଡା ହେଉଛନ୍ତି। ଓଡ଼ିଶାରେ ଛୋଟଚାଷୀ, କୃଷି ଶ୍ରମିକଙ୍କ ସ୍ଥିତି ଏହି ଚିତ୍ରରୁ ସହଜେ ଧାରଣା କରିହେବ। ଆମ ରାଜ୍ୟ ସରକାରଙ୍କର ଏହା ବିକାଶଜନିତ ଗୌରବ ନୁହେଁ କି।

ସବୁଠାରୁ ତାତ୍ପର୍ଯ୍ୟର ବିଷୟ ଏହିକି ଯେ ରାଜସ୍ୱ ମନ୍ତ୍ରୀ କୃଷକ ଆତ୍ମହତ୍ୟା ସମ୍ପର୍କରେ ରାଜ୍ୟବାସୀଙ୍କୁ ନିୟମିତ ସୂଚନା ଦେବା ପରିବର୍ତ୍ତେ ତାଙ୍କର ଭୂମିକା ଅତ୍ୟନ୍ତ ଅସ୍ପଷ୍ଟ ରଖିଛନ୍ତି। ଜିଲ୍ଲାପାଳମାନେ ରିପୋର୍ଟ ଦେଲେ ସରକାରୀ ସାହାଯ୍ୟ ଘୋଷଣା ହେବ। ସମସ୍ତ ସ୍ଥାନରେ

ତଦନ୍ତ ରିପୋର୍ଟ ଗୋଟିଏ କଥା କୁହେ- ଫସଲ, ଋଣ,ରୋଗପୋକ ବା ଜଳକଷ୍ଟ ଆତ୍ମହତ୍ୟାର କାରଣ ନୁହେଁ। ପାରିବାରିକ କଳହରୁ ଆତ୍ମହତ୍ୟା। ଚାଷୀ, ମୃତକର ପରିବାର, ବିରୋଧୀ ରାଜନୈତିକ ଦଳ ବା ଗଣମାଧ୍ୟମକୁ ବୋକା ବନାଇଦେବା ପାଇଁ ଏହି ନିର୍ଯାସ ଯଥେଷ୍ଟ। ସ୍ୱାମୀ ସ୍ତ୍ରୀ ମଧ୍ୟରେ କଳି। କାହିଁକି ? ସମବାୟ ଋଣ ବା ବ୍ୟାଙ୍କ୍ ଋଣ ପାଇବାକୁ ଭାଗଚାଷୀ ହକ୍‌ଦାର ନୁହେଁ। ଭାରତୀୟ ରିଜର୍ଭବ୍ୟାଙ୍କ୍, ସର୍ବୋଚ୍ଚ ଅଦାଲତ ଓ ନାବାର୍ଡ଼ ଭଳି ସଂସ୍ଥାମାନେ ପ୍ରଚାର କରନ୍ତି ଭାଗଚାଷୀମାନଙ୍କୁ ଫସଲ ବନ୍ଧାରେ ୫୦ହଜାର ଟଙ୍କା ପର୍ଯ୍ୟନ୍ତ ଋଣ ଦିଆଯାଇପାରିବ। ସରକାରୀ ବିଧିବିଧାନକୁ ସମବାୟ ବ୍ୟାଙ୍କ୍ ବା ଜାତୀୟକରଣ ବ୍ୟାଙ୍କ୍‌ମାନଙ୍କର ଖାତିର ନାହିଁ। ତାଙ୍କ ଉପରେ ସରକାରୀ ଅଙ୍କୁଶ ନାହିଁ, ବିଚରା ଭାଗଚାଷୀ ବା ଛୋଟଚାଷୀଟି ଋଣପାଇବ କିପରି ? ଚାଷ କରିବ। ସରକାରୀ ଚାଷପ୍ରଣାଳୀରେ ସେ ନିଶାଗ୍ରସ୍ତ। ବହୁ ପଇସା ଦରକାର। ମହାଜନୀ କଳା। ଆଜିକାଲିକା ନୂଆ ମହାଜନ ଶ୍ରେଣୀ ମାଇକ୍ରୋ ଫାଇନାନ୍ସ, ସ୍ୱୟଂସହାୟକ ଗୋଷ୍ଠୀ, ଟଙ୍କା ଲଗାଣକାରୀ କମ୍ପାନୀ। ସମସ୍ତେ କିନ୍ତୁ ମହିଳା ସ୍ୱୟଂସହାୟକ ଗୋଷ୍ଠୀ ମାଧ୍ୟମରେ ଟଙ୍କା ଲଗାଣ କରନ୍ତି। ମାଇକ୍ରୋ ଫାଇନାନ୍ସ ଋଣ ଶୁଝିନପାରି ୨୦ରୁ ଅଧିକ ଚାଷୀ ଆତ୍ମହତ୍ୟା କରିଛନ୍ତି। ସେମାନଙ୍କ ମଧ୍ୟରୁ କେତେକଙ୍କ ସ୍ତ୍ରୀ ସ୍ୱୟଂ ସହାୟକ ଗୋଷ୍ଠୀର ସଭାନେତ୍ରୀ ବା ସମ୍ପାଦିକା ନହେଲେ ବି ସଭ୍ୟା ତ' ଅଛନ୍ତି। ସେମାନଙ୍କୁ ମାଇକ୍ରୋଫାଇନାନ୍ସର କମ୍ପାନୀମାନେ ବସେଇ ଉଠେଇ ଦେଉନାହାନ୍ତି। ଟଙ୍କା ଫେରାଅ, ସୁଧ ପଇଠ କର। ଭାରତୀୟ ନାରୀ ସ୍ୱାଭିମାନିନୀ। ସେମାନେ ଲଜ୍ଜିତ ବା ଅପମାନିତ ବୋଧ କରୁଛନ୍ତି। ସ୍ୱାମୀମାନଙ୍କୁ ଋଣ ଶୁଝିବା ପାଇଁ କିଲ୍‌ବିଲ୍ କରୁଛନ୍ତି। କଳି, ଝଗଡ଼ା ତ ହେବ ହିଁ ହେବ। ହେଲେ ଜମିରେ ତ' ଧାନ ନାହିଁ। ଟଙ୍କା କେଉଁଠୁ ଆଣିବ। ଆତ୍ମହତ୍ୟା ବ୍ୟତୀତ ଅନ୍ୟବାଟ ତାକୁ ଦିଶୁନି। ଜୀବନ ହାରିଛି। ଏହା କ'ଣ ଋଣ ପାଇଁ ଆତ୍ମହତ୍ୟା ନୁହେଁ ? କଳି ପାଇଁ ?

ଏଠାରେ ଇତିହାସ ପୃଷ୍ଠାରୁ ଗୋଟିଏ ଉଦାହରଣ ଦିଆଯାଇପାରେ। ଆଜିଦିନରେ ଯେପରି ବଲାଙ୍ଗିର ଜିଲ୍ଲାରେ ଗୋଟିଏ ପରିବାରର ୫ଜଣଙ୍କର ଅକାଳ ମୃତ୍ୟୁ ଘଟିଛି, ଢେଙ୍କାନାଳର କାମାକ୍ଷାନଗର ବ୍ଲକ୍‌ରେ ଖାଦ୍ୟାଭାବ ଯୋଗୁଁ ମା' ପିଲାବିକ୍ରି କରିଥିବା ଘଟଣାମାନ ଓଡ଼ିଶାରେ ନିୟମିତ ଘଟୁଛି। ୫୦ବର୍ଷ ତଳେ କଳାହାଣ୍ଡିରେ ସେହିପରି ଅନାହାର ମୃତ୍ୟୁ ଘଟୁଥିଲା। ପଣ୍ଡିତ ଜବାହରଲାଲ ନେହେରୁ ଭାରତର ପ୍ରଧାନମନ୍ତ୍ରୀ। ରାମ ମନୋହର ଲୋହିଆ ସାଂସଦ। କଳାହାଣ୍ଡି ଅନାହାର ମୃତ୍ୟୁକୁ ନେଇ ସଂସଦରେ ଝଡ଼ ସୃଷ୍ଟି କରନ୍ତି ଲୋହିଆଜୀ। ସରକାରଙ୍କ ଉତ୍ତର ଅନାହାର ମୃତ୍ୟୁ ନୁହେଁ ପେଟ ରୋଗ ଯୋଗୁଁ

ମୃତ୍ୟୁ। ପରଦିନ ଲୋହିଆଜୀ ଗୋଟିଏ ବ୍ୟାଗ ଧରି ସଂସଦରେ ପହଞ୍ଚନ୍ତି। ଅସମ୍ପୂର୍ଣ୍ଣ ବିତର୍କ ଆରମ୍ଭ ହୁଏ। ଲୋହିଆଜୀ ବ୍ୟାଗରୁ ବାଉଁଶ କରଡ଼ି, ଆମ୍ବଟାକୁଆ, ସଲପ, ଅନାବନା ଶାଗ କାଢ଼ି ଦେଖାନ୍ତି। ଯଦି ପେଟ ବିକଳରେ କଳାହାଣ୍ଡିବାସୀ ଏଇସବୁ ଜିନିଷ ଖାଆନ୍ତି ଏବଂ ଅଜୀର୍ଣ୍ଣ ଓ ଝାଡ଼ାବାନ୍ତି ହୋଇ ମରନ୍ତି; ତାହା କ'ଣ ଅନାହାର ମୃତ୍ୟୁ ନୁହେଁ ? ସଂସଦ ସ୍ତବ୍ଧ। ସରକାର ବାକ୍‌ରୁଦ୍ଧ। ପେଟରୋଗ ନୁହେଁ- ଅନାହାର ମୃତ୍ୟୁ ପ୍ରମାଣିତ ହୁଏ। ମାନ୍ୟବର ଓଡ଼ିଶା ସରକାର ! ଋଣରୁ କଳି ଓ ଆତ୍ମହତ୍ୟାର ମୂଲ୍ୟାଙ୍କନ କରିବା ଏବେ ସହଜ ହେବନାହିଁ କି ? ଆଜି ରାଜ୍ୟ ସରକାର ହେଉ ବା କେନ୍ଦ୍ର ସରକାର ହୁଅନ୍ତୁ, ଏମାନେ ଲୋକ ସରକାର ହୋଇନାହାନ୍ତି। ସାମ୍ରାଜ୍ୟବାଦୀ ଆମେରିକାର ସଖି କଣ୍ଢେଇ ସରକାର। କମ୍ପାନୀ ଆଉ ଥିଲାବାଲାଙ୍କ ସରକାର।

ଓଡ଼ିଶାରେ ବିରୋଧୀ ରାଜନୈତିକ ଦଳମାନଙ୍କ ମଧ୍ୟରୁ କଂଗ୍ରେସ, ଭାଜପା, ସିପିଆଇ ଓ ଆଉ କେତୋଟି ଛୋଟ ଛୋଟ ଦଳର ବିଧାନସଭାରେ ଉପସ୍ଥିତି ଅଛି। କଂଗ୍ରେସ ଓ ଭାଜପା କେନ୍ଦ୍ରରେ ଅହି ନକୁଳ ସମ୍ପର୍କ। ଓଡ଼ିଶାରେ ରାଜନୈତିକ ଫାଇଦା ପାଇଁ କୋଳାକୋଳି ହେଉଛନ୍ତି। ୨୦୧୪ ନିର୍ବାଚନକୁ ଆଖି। ଏମାନେ ତଥ୍ୟ ଅନୁସନ୍ଧାନକାରୀ ଦଳରେ ଯାଇ ମୃତକଙ୍କ ପରିବାର ନିକଟରେ ପହଞ୍ଚୁଛନ୍ତି। ବିଧାନସଭାରେ ତୁମ୍ବିତୋଫାନ କରିଛନ୍ତି। ଚାଷୀଙ୍କ ପାଇଁ କୁମ୍ଭୀର କାନ୍ଦଣା କାନ୍ଦୁଛନ୍ତି। ଏଠାରେ ପ୍ରଶ୍ନ ଆସେ ଭାଜପା ୮ବର୍ଷ କାଳ ବିଜେଡ଼ିର ହାତଧରି ଘର ସଂସାର କଲା। ୮/୧୦ମାସ ହେଲା ଏମାନଙ୍କର ଛାଡ଼ପତ୍ର ହୋଇଛି। ଆଜିର କୃଷକ ଆତ୍ମହତ୍ୟା କ'ଣ ଏଇ ୮/୧୦ମାସ ଶାସନର ଫଳାଫଳ। ମାତ୍ର ୧୫/୨୦ଜଣ ସଭ୍ୟ ବିଧାନସଭାରେ ଉପସ୍ଥିତ ରହି ରାତିଅଧିଆ ୨୦୦୧ ମସିହାରେ ପାଣି ପଞ୍ଚାୟତ ବିଲ୍ ପାସ୍ କରାଇନେଲେ। ସେତେବେଳେ ତ ଭାଜପା ସରକାରରେ ଥିଲା। ସରକାରଙ୍କ ହିସାବରେ ୧୮ହଜାରରୁ ଅଧିକ ପାଣି ପଞ୍ଚାୟତ ସରକାର ଗଢ଼ିଛନ୍ତି। ପୁଣି କେନାଲ ଥାଇ ପାଣି କାହିଁକି ନାହିଁ ? କାହିଁକି ୯ହଜାରରୁ ଅଧିକ ଉଠାଜଳସେଚନ ପଏଣ୍ଟକୁ ଅକାମୀ କରିଦିଆଗଲା। ଉଠାଜଳସେଚନ ନିଗମକୁ ଭାଙ୍ଗି ଦିଆଗଲା। ଗତ ୯ବର୍ଷ ହେଲା ପ୍ରତିବର୍ଷ ବଜେଟରେ ଚାଷଜମିର ୩୫ପ୍ରତିଶତକୁ ଜଳଯୋଗାଣର ପ୍ରତିଶ୍ରୁତି ରହୁଛି। ଗଣିତ ବିଶାରଦ ଓ ଅର୍ଥଶାସ୍ତ୍ରୀମାନେ ନିଶ୍ଚୟ ଏକମତ ହେବେ ସରକାରଙ୍କ ଯୋଜନା ଯଦି କାର୍ଯ୍ୟକାରୀ ହୋଇଥାନ୍ତା- ଆଜି ଇଞ୍ଚେ ଜମି ମଧ ପାଣି ପାଇ ନଥାନ୍ତା। ପ୍ରତ୍ୟକ୍ଷ ଆକଳନରୁ ଜଣାପଡ଼େ ଓଡ଼ିଶାରେ ୧୦ରୁ ୧୫ ପ୍ରତିଶତ ଜମିକୁ ୨୦୦୯ଶେଷ ସୁଦ୍ଧା ଜଳସେଚନ ସୁବିଧା ମିଳିପାରିଛି। ସରକାରଙ୍କ କଥା ଓ କାର୍ଯ୍ୟ ଭିତରେ ଆକାଶ ପାତାଳ ପ୍ରଭେଦ।

କେନାଲ ନାହିଁ। ପାଣି ନାହିଁ। ପାଣି ପାଇଁ ଫସଲ ମଲା। ବିଶ୍ୱବ୍ୟାଙ୍କ୍ ଓ ଡିଏଫ୍ଆଇଡ଼ି ନିୟନ୍ତ୍ରଣରେ ଓଡ଼ିଶା ଜଳସେଚନ ବିଭାଗ। କାର୍ଗିଲ, ହିନ୍ଦୁସ୍ଥାନ ଲିଭର, ରିଲାଏନ୍ସ, ମହିନ୍ଦ୍ରା ଆଣ୍ଡ ମହିନ୍ଦ୍ରା ଭଳି କମ୍ପାନୀମାନେ ଧାନ, ଗହମ, ଭଳି କୃଷିଜାତ ଦ୍ରବ୍ୟ କିଣିବେ, ମୁନାଫା ନେବେ। ତାଙ୍କ ସୁବିଧା ପାଇଁ ଓଡ଼ିଶା ସମବାୟ କୃଷିଜାତ ଦ୍ରବ୍ୟ ବିପଣନ ଓ ଠିକାଚାଷ ଆଇନ ସଂଶୋଧନ କରାଗଲା, ୨୦୦୬ମସିହାରେ। ସେତେବେଳର ସମବାୟ ମନ୍ତ୍ରୀ ଭାଜପା ସଭ୍ୟ ଏହାକୁ ଏକ ଐତିହାସିକ ବିଲ୍ କହିଲେ। ଆଜି ପୁଣି ଧାନର ଅଭାବୀ ବିକ୍ରି କାହିଁକି ? କାହିଁକି ଅଭାବୀ ବିକ୍ରିପାଇଁ ଚାଷୀ ଆତ୍ମହତ୍ୟା ? ଭାଜପା ପାଖରେ ଉତ୍ତର ଅଛି ତ ? ଆଜି ଏମାନେ ଗେଣ୍ଡାରେ ପଶି ଶଙ୍ଖ ପାଳଟୁଛନ୍ତି।

କଂଗ୍ରେସ ! କେନ୍ଦ୍ରରେ ତ' ତାଙ୍କର ସରକାର। କେନ୍ଦ୍ର ସରକାର ଚାଷୀ ଆତ୍ମହତ୍ୟା କ'ଣ ପଦକ୍ଷେପ ନେଇଛି ? କେନ୍ଦ୍ର ସରକାରଙ୍କର ଗୋଟିଏ ଅନୁଧ୍ୟାନକାରୀ ଦଳ ଆସିଛନ୍ତି କି ? ସଂସଦରେ ଓଡ଼ିଶାରେ ଚାଷୀ ଆତ୍ମହତ୍ୟା ଉପରେ ବିତର୍କ ହୋଇଛି କି ? ଦଳମତ ନିର୍ବିଶେଷରେ ଓଡ଼ିଶାର ସାଂସଦମାନେ ଚାଷୀ ଆତ୍ମହତ୍ୟା ପ୍ରସଙ୍ଗ ପାଇଁ ସଂସଦରେ ଆଖିଦୃଶିଆ ଦାବୀ ବା ଆଲୋଚନା କରିପାରିଛନ୍ତି କି ? ଓଡ଼ିଶା ଗସ୍ତର ଆସିଛନ୍ତି ମହାମାନ୍ୟ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ୨୦୦୯ଡିସେମ୍ବର ମାସରେ। ଚାଷୀଙ୍କ ପାଇଁ ପଦେ ପାଟି ଫିଟାଇଛନ୍ତି କି ? ସି.ପି.ଆଇ ଚାଷୀମୂଲିଆ ଖଟିଖିଆ, ସର୍ବହରାର ଦଳ ବୋଲି ଦାବି କରେ। ନିର୍ବାଚନ ବୈତରଣୀ ପାର ହେବାପାଇଁ ବିଜେଡ଼ି ଲାଙ୍ଗୁଡ଼ ଧରିଲେ। ତାଙ୍କର ସର୍ବଭାରତୀୟ ନେତା ଏ.ବି. ବର୍ଦ୍ଧନ ଭୁବନେଶ୍ୱର ସଭାରେ ଚାଷୀ ଆତ୍ମହତ୍ୟା ପାଇଁ କେନ୍ଦ୍ର ସରକାରଙ୍କୁ ଦାୟୀକଲେ। ରାଜ୍ୟ ସରକାରଙ୍କୁ ପଦେ ବି କହିନାହାନ୍ତି। ବୁଝାମଣା କାଳେ ଭାଙ୍ଗିଯିବ। ସି.ପି.ଏମ୍. ଦଳ ଏପର୍ଯ୍ୟନ୍ତ କୌଣସି ଆଖିଦୃଶିଆ ପଦକ୍ଷେପ ନେବା ଜଣାପଡୁ ନାହିଁ। ଏହି ସବୁ ଦଳମାନଙ୍କର କୃଷକସେଲ୍ ସବୁ ଅଛି। ବି.ଜେ.ଡ଼ି ତ' ସରକାରୀ ଦଳ। ତାଙ୍କୁ ଛାଡ଼ି ଅନ୍ୟ ବିରୋଧୀ ଦଳମାନେ ଭୁବନେଶ୍ୱରରେ ଗୋଟିଏ କୃଷକ ସମାବେଶ ତ କରାଇ ପାରିଥାନ୍ତେ। ବର୍ତ୍ତମାନର ଏକ ପଙ୍ଗୁ, ଅଥର୍ବ ସରକାରର ନିଦ ଭାଙ୍ଗିବାକୁ ହେଲେ ଭୁବନେଶ୍ୱରରେ ଲକ୍ଷେ ଚାଷୀ ଯଦି ବିଧାନସଭା ବା ସଚିବାଳୟ ଘେରାଉ କରିବେ, ସରକାର ଚାଷୀକୁ ନ୍ୟାୟ ଦେବାପାଇଁ ବାଧ ହେବ। କେତେକ ବିପ୍ଳବୀ ସାମ୍ୟବାଦୀ ଦଳଙ୍କ କାର୍ଯ୍ୟକ୍ରମ ନିଶ୍ଚିତରୂପେ ପ୍ରଶଂସନୀୟ। ଆଗକୁ ଓଡ଼ିଶାର ଚାଷୀକୁଳ ସେମାନଙ୍କ ଉପରେ ଭରସାରଖି ଆନ୍ଦୋଳନରେ ସାମିଲ ହୋଇପାରିଲେ କୃଷି ଓ କୃଷକ ସ୍ୱୀକୃତି ପାଇବା ସହଜ ହୋଇପାରେ।

*ନିଦାନ :-* ୨୦୦୯ଡିସେମ୍ବର ୨୮ସୁଦ୍ଧା ଗତ ୨/୩ମାସ ମଧ୍ୟରେ ୪୬ଜଣ ଚାଷୀ ଆତ୍ମହତ୍ୟା କଲେଣି। ଆତ୍ମହତ୍ୟା କରିଥିବା ଚାଷୀମାନଙ୍କ ମଧ୍ୟରେ ୩୦ରୁ ଅଧିକ ଚାଷୀ ଫସଲ ହାନିଜନିତ ଋଣ ସୁଝିବାକୁ ଅକ୍ଷମ ହୋଇ ଆତ୍ମହତ୍ୟା କରିଥିବା ଜଣାପଡ଼ିଛି। ଫସଲହାନୀ ବୃଷ୍ଟିହୀନତା ଓ ଜଳର ଅଭାବ, ଲେଢ଼ା ପୋକ ଓ ଜଉପୋକ ଯୋଗୁଁ ଫସଲ ନଷ୍ଟ, ଦୁଇଟି ଘଟଣାରେ ସରକାରୀ ଜଳ ପରିଚାଳନା ତ୍ରୁଟିଜନିତ ପାଚିଲାଧାନ ଖେତରେ ପାଣି ପଶିଯାଇ କ୍ଷତି, ଅଭାବୀ ଧାନବିକ୍ରି ଆତ୍ମହତ୍ୟାର କାରଣ ବୋଲି ଜଣାପଡ଼ିଛି। ଏହାଛଡ଼ା ଦୁଇଜଣ ପନିପରିବା ଚାଷୀ, ଜଣେ କପାଚାଷୀ, ଜଣେ କ୍ଷୀରଚାଷୀ, ଦୁଇଜଣ ମାଛଚାଷୀ ମଧ୍ୟ ଏହି ତାଲିକାରେ ସ୍ଥାନ ପାଇଛନ୍ତି। ସରକାର ଧାନର ସହାୟକ ମୂଲ୍ୟ କ୍ୱିଣ୍ଟାଲ ପ୍ରତି ହଜାରେ ଟଙ୍କା (ବୋନସ ଟ୫୦.୦୦ସହିତ) ସ୍ଥିର କରିଥିଲେ ମଧ୍ୟ ବାସ୍ତବ ଚିତ୍ର-ଧାନ ଭଦ୍ରକ ଜିଲ୍ଲାରେ ଟ୬୦୦, ଜଗତସିଂହପୁର ଓ କେନ୍ଦ୍ରାପଡ଼ା ଜିଲ୍ଲାରେ ଟ.୬୫୦.୦୦, କଟକ, ପୁରୀ, ଗଞ୍ଜାମ, କଳାହାଣ୍ଡିରେ ଟ୭୦୦ରୁ ୭୫୦ଟଙ୍କା କ୍ୱିଣ୍ଟାଲ ପ୍ରତି ବିକ୍ରି ହେବାର ସଠିକ୍ ଖବର ଅଛି। ସରକାର ଉପକୂଳ ଜିଲ୍ଲାମାନଙ୍କରେ ଏପର୍ଯ୍ୟନ୍ତ ଧାନମଣ୍ଡି ଖୋଲିନାହାନ୍ତି ଯଦିବା ଖବରକାଗଜର ମଣ୍ଡି ଖୋଲିଥିବା ଖବର ଜିଲ୍ଲାପାଳମାନେ ପ୍ରକାଶ କରିଛନ୍ତି। ରାଜ୍ୟ ସରକାରଙ୍କ ଖାଦ୍ୟ ଓ ଯୋଗାଣ ନିଗମ ନିକଟରେ ଧାନ କିଣିବାକୁ ଆବଶ୍ୟକ ଅର୍ଥ ମଧ୍ୟ ନଥିବା ଜଣାପଡ଼ିଛି। ମାର୍କଫେଡ୍ ବା ଭାରତୀୟ ଖାଦ୍ୟନିଗମ ଗୋଦାମ ଘର ଅଭାବଦର୍ଶାଇ ଧାନ କିଣା ପାଇଁ ଆଗ୍ରହ ପ୍ରକାଶ କରୁନାହାନ୍ତି। ପଶ୍ଚିମଓଡ଼ିଶାରେ ଚାଷୀ ଆନ୍ଦୋଳନରେ ଭୟଭୀତ ହୋଇ ସରକାର କିଛି କିଛି ଧାନ କିଣୁଥିଲେ ମଧ୍ୟ ସେହି ସବୁଜିଲ୍ଲାରେ ଧାନ ଅମଳ ନଭେମ୍ବର ମାସରୁ ସରିଥିବାରୁ ଚାଷୀମାନେ ଧାନବିକ୍ରି କରିପାରୁ ନାହାନ୍ତି। ଅଭାବୀ ବିକ୍ରି। ଅନୁସନ୍ଧାନ କଲେ ଜଣାଯିବ ରାଜ୍ୟ ଖାଦ୍ୟ ଓ ଯୋଗାଣବିଭାଗ ଓ ଘରୋଇ ଧାନ ବେପାରୀ ଓ ମିଲ୍‌ମାଲିକମାନଙ୍କ ମଧ୍ୟରେ ଗୁପ୍ତ ବୁଝାମଣାର ଶିକାର ଚାଷୀମାନେ ହେଉଛନ୍ତି। ବେପାରୀମାନେ ବର୍ତ୍ତମାନ ଶସ୍ତାମୂଲ୍ୟରେ ଧାନ କିଣି ରାଜସ୍ୱ ନିରୀକ୍ଷକମାନଙ୍କଠାରୁ ଚାଷୀମାନଙ୍କ ନାମରେ ପରମିଟ୍ ସଂଗ୍ରହ କରି ମାସେ,ଦୁଇମାସ ପରେ ସରକାରୀ ସଂସ୍ଥା ବା ସମବାୟ ସଂସ୍ଥାକୁ ସର୍ବନିମ୍ନ ସହାୟକ ମୂଲ୍ୟରେ ଧାନ ବିକି କ୍ୱିଣ୍ଟାଲ ପିଛା ୨୦୦ରୁ ୩୦୦ଟଙ୍କା ମୁନାଫା କରିବେ। ଖାଦ୍ୟ ଓ ଯୋଗାଣ ନିଗମ, ସମବାୟ ସଂସ୍ଥା ଏଥିରୁ ପଣ ପାଇବେ। ଗତ ୨/୩ବର୍ଷ ହେଲା ଓଡ଼ିଶାର ସ୍ଥିତି ଏହିପରି ରହିଛି।

■ *ଆଉ କେତେ ବିଷ ପିଇଲେ ଚେତିବା... !*

କ୍ଷେତକୁ ପାଣି ଅଭାବ ସମ୍ପର୍କରେ ଆଗରୁ କେତେକ କାରଣ ଦର୍ଶାଯାଇଛି। ଜଳସମ୍ପଦ ବିଭାଗରେ ପ୍ରତି ୧୦୦ ଟଙ୍କା ଖର୍ଚ୍ଚ ଦର୍ଶାଯାଇଥିଲେ ସେଥିରୁ ୧୫ରୁ ୨୦ଟଙ୍କାର କାମ ବାସ୍ତବକ୍ଷେତ୍ରରେ ହେଉଛି। ଆଗରୁ ଠିକାଦାର, ଯନ୍ତ୍ରୀ ଓ ରାଜନେତା ମାନେ ଜଳସମ୍ପଦ ଅର୍ଥ ହଡ଼ପ କରୁଥିଲେ। ଏବେ ଏମାନଙ୍କ ସହିତ ପାଣି ପଞ୍ଚାୟତ କର୍ମକର୍ତ୍ତାମାନେ ସାମିଲ ହେଲେଣି। ମେଣ୍ଟା ଧୋଉ ଧୋଉ ନିର୍ବାଳ। ପାଣି କେବଳ କାଗଜ କଲମରେ। ଉଠାଜଳସେଚନ ପାଇଁ ବୋରୱେଲ ବା ସାଲୋ ଟ୍ୟୁବ୍‌ୱେଲ୍ ଓ ପମ୍ପରେ ଯେଉଁ ରିହାତି ଦିଆଯାଉଛି ସେଭଳି ପ୍ରକଳ୍ପରୁ ୯୦ଭାଗ ମିଛ। କୃଷି ଅଧିକାରୀ, ଠିକାଦାର ଓ ବଡ଼ ବଡ଼ ଜମିମାଲିକମାନଙ୍କ ମଧ୍ୟରେ ଏହି ଟଙ୍କା ଭାଗବଣ୍ଟରା ହେଉଛି। ପ୍ରକଳ୍ପର କ୍ଷେତ୍ର ଗଣନା କଲେ ଜାଣିହେବ ଏମାନେ ଚୋରି ହୋଇଯାଇଛନ୍ତି। ଜିଲ୍ଲା ଓ ବ୍ଲକ୍ କୃଷି ଅଧିକାରୀମାନେ ଏହି ଯୋଜନାରୁ କୋଟି କୋଟି ଟଙ୍କା ହଡ଼ପ କରୁଥିଲେ ମଧ୍ୟ ସରକାରଙ୍କ କୃଷିବିଭାଗ ନିରବ। କାରଣ ପ୍ରତ୍ୟେକ ସ୍ଥଳରେ ସରକାରୀ ଦଳର କର୍ମୀ ଓ ବଡ଼ପଣ୍ଡାମାନେ ମଧ୍ୟ ଏହି ଜାଲିଆତି ସହିତ ସମ୍ପୃକ୍ତ।

ରୋଗପୋକ କଥା। ଲେଡ଼ାପୋକ ଏକପ୍ରକାର ଜଙ୍ଗଲି ସଂବାଳୁଆ। ଗଛର ପତ୍ର ଖାଇ ଏମାନେ ବଞ୍ଚନ୍ତି। ନଦୀର ଉତ୍ପତ୍ତି ସ୍ଥାନରୁ ଜଙ୍ଗଲ ସଫା ହୋଇଯିବା ଦ୍ୱାରା ବର୍ଷାପାଣିରେ ଏମାନଙ୍କ ଲାର୍ଭା ଭାସିଆସି ଚାଷବିଲରେ ଧାନ, ମୁଗ, ବିରି ବା ପନିପରିବା ପତ୍ର ଚରିଯାଉଛନ୍ତି। ସେହିପରି ଜଉପୋକ ଥୋଡ଼ଧାନ କାଟି ବିଲକୁ ସଫା କରିଦେଉଛନ୍ତି। ଜମିରେ ୟୁରିଆ ସାରର ଅଧିକ ପ୍ରୟୋଗ ଯୋଗୁଁ ଚାଷୀ ଜଉପୋକର ଶିକାର ହେଉଛି। ଓଡ଼ିଶା କୃଷି ବିଭାଗର ଦକ୍ଷତା ଏହିକି ଯେ ଗଲା ଦୁଇବର୍ଷ ମଧ୍ୟରେ ପ୍ରଚାର ପ୍ରସାର ମାଧ୍ୟମରେ ଚାଷୀମାନେ ହେକ୍ଟର ପ୍ରତି ୫୦ରୁ ୬୦କିଲୋ ରାସାୟନିକ ସାର ପ୍ରୟୋଗ କଲେ। ସରକାରୀ ହିସାବ ଖାତାରେ ଖାଦ୍ୟ ଉତ୍ପାଦନ ବଢ଼ିଯିବାର ଆଗୁଆ ଆକଳନ ହୋଇଗଲା। ଏଣେ ଜଉପୋକ ଯୋଗୁଁ ଚାଷୀ ସ୍ଥଳବିଶେଷରେ ବିହନ ମଧ୍ୟ ପାଉନାହିଁ। ରୋଗପୋକ ନିରାକରଣ ପାଇଁ ଖାଦ୍ୟ ନିରାପତ୍ତା ମିଶନ ଶତକଡ଼ା ୫୦ରିହାତିରେ ଯେଉଁ କୀଟନାଶକ ଯୋଗାଇଲେ, ସେଗୁଡ଼ିକ ଅତ୍ୟନ୍ତ ନିମ୍ନମାନର। ଉଚ୍ଚ କୃଷିଅଧିକାରୀ ଓ କୀଟନାଶକ କମ୍ପାନୀମାନଙ୍କ ମଧ୍ୟରେ ଅନ୍ଧାରି ବୁଝାମଣାର ଫଳ। ତେଣୁ କୀଟନାଶକ ସିଞ୍ଚନ କଲେ ମଧ୍ୟ ରୋଗ ପୋକ ଦମନ ସମ୍ଭବ ହେଲାନାହିଁ। ସ୍ଥଳ ବିଶେଷରେ ଫସଲ ଅମଳ ବେଳକୁ କୀଟନାଶକ ଚାଷୀପାଖରେ ପହଞ୍ଚୁଛି। ବଲାଙ୍ଗୀର ଜିଲ୍ଲାରେ କପାଚାଷୀ

ଜଣେ ଆତ୍ମହତ୍ୟା କଲାପରେ କପା ପାଇଁ କୀଟନାଶକ ଆସୁଛି। ସେତେବେଳକୁ କପା ଖୋସା ପାକଳ ହେଲାଣି। କୃଷିବିଭାଗର ଦକ୍ଷତାର ଏଗୁଡ଼ାକ ନମୁନା ହେବନି କି ?

କ୍ଷୀରଚାଷୀର ଆତ୍ମହତ୍ୟା କାହିଁକି ? କାର୍ଗିଲ, ୱାର୍ଲମାର୍ଟ, ୟୁନିଲିଭର ଭଳି ବଡ଼ ବଡ଼ କମ୍ପାନୀମାନେ ଭାରତବର୍ଷରେ ଅଟାକଳର ମାଲିକ। ସେମାନେ ଚୋକଡ଼ ମୂଲ୍ୟ ଆକାଶଛୁଆଁ କଲେ। କିଲେ ଚୋକଡ଼ର ମୂଲ୍ୟ ବର୍ତ୍ତମାନ ଟ୧୩.୦୦। ଏକଲିଟର କ୍ଷୀରର ମୂଲ୍ୟ ଟ୧୦.୦୦। ଓମ୍‌ଫେଡ଼୍ ଘିଅ ବା ଲହୁଣୀ କଢ଼ା କ୍ଷୀରଲିଟର ବିକୁଛି ୨୨ଟଙ୍କା। ଚାଷୀକୁ ୪.୫ ପ୍ରତିଶତ ଘିଅ ଓ ୮.୫ ପ୍ରତିଶତ ଛେନା ଥିବା କ୍ଷୀର କିଣୁଛି ଲିଟର ପ୍ରତି ୧୧ଟଙ୍କା। ଓମ୍‌ଫେଡ଼୍ ଏକ ସମବାୟ ସଂସ୍ଥା। ଖୋଦ୍ କୃଷିମନ୍ତ୍ରୀଙ୍କ ହାତରେ ସମବାୟ ବିଭାଗ। ମାତ୍ର ଗତ ୯ବର୍ଷ ହେଲା ଓମ୍‌ଫେଡ଼୍ ବା ଜିଲ୍ଲା ଦୁଗ୍ଧ ୟୁନିଅନ୍‌ର ନିର୍ବାଚନ ହୋଇନାହିଁ। ମସୁଧା ଚାଲିଛି ଓମ୍‌ଫେଡ଼୍‌କୁ ଘରୋଇ କମ୍ପାନୀକୁ ବିକାଯିବ। ଆଗକୁ କେତେ ଯେ କ୍ଷୀରଚାଷୀ ଆତ୍ମହତ୍ୟା କରିବେ, ତାହା ସମୟ କହିବ।

ମାଛଚାଷୀଙ୍କ ଆତ୍ମହତ୍ୟା। କେନ୍ଦ୍ରାପଡ଼ାରେ ମାଛ ଧରାଳିମାନେ ଟ୍ରଲରରେ ମାଛଧରି ଜୀବିକା ନିର୍ବାହ କରନ୍ତି। ସରକାରଙ୍କ କଇଁଛ ପ୍ରେମ। ନଭେମ୍ବରଠାରୁ ମାର୍ଚ୍ଚମାସ ମଧ୍ୟରେ ଟ୍ରଲରରେ ମାଛଧରା ବନ୍ଦ। କଇଁଛ ଅଣ୍ଡା ଦେବେ। ବିଚରା କେଉଟ ବାପୁଡ଼ା ବେପାର ହରାଇ ଆତ୍ମହତ୍ୟା ବାଟ ଆଦରିନେଲା।

ଖଜୁରୀଗଛର କିସ ବାହୁନିବି, ମୂଳରୁ ପାହାଚ ପାହାଚ। ଆମେ ଏତିକି ଜାଣୁଛେ ଯେ ଚାଷୀ ଆତ୍ମହତ୍ୟା ସରକାରୀ ବ୍ୟବସ୍ଥାର ଫଳ। ଏହା ମଣିଷକୃତ। କମ୍ପାନୀମାନଙ୍କ ପୃଷ୍ଠପୋଷକତା କରିବାକୁ ହେଲେ ଚାଷୀ ତ ମରିବେ, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି। ମାଇକ୍ରୋଫାଇନାନ୍ସ ଋଣ କଥା ତ' ଆଗରୁ କୁହାଯାଇଛି। କେବେ ଆଦିବାସୀମାନଙ୍କୁ ମୋଗଲବନ୍ଦୀର ସାହୁକାରମାନେ ଠକୁଥିଲେ। ଦେଲି ଟଙ୍କେ, ନେଲୁ ଟଙ୍କେ, ଦେବୁ ଟଙ୍କେ କହି ତିନିଟଙ୍କା କରଜ ହିସାବ କରୁଥିଲେ। ମୂଳ ସହିତ ପୁଣି ସୁଧ। ମାଇକ୍ରୋ-ଫାଇନାନ୍ସ ବା ଟଙ୍କା ଲଗାଣକାରୀ ସଂସ୍ଥାମାନେ ମହିଳା ସ୍ୱୟଂସହାୟକ ଗୋଷ୍ଠୀମାଧ୍ୟମରେ ଯେଉଁ ଋଣ ଚାଷୀକୁ ଦେଉଛନ୍ତି, ଶତକଡ଼ା ମାସକୁ ଟ୫ରୁ ଟ୧୦ ସୁଧ। କାବୁଲିବାଲା ସୁଧଠାରୁ ଅଧିକ। ଚାଷୀ ଋଣ, ସୁଧ ଶୁଝିପାରିବେ ତ ? ନାଁ ମୁକୁଳିବା ପାଇଁ ସେ ଆତ୍ମହତ୍ୟା କରିବ। ଏପର୍ଯ୍ୟନ୍ତ ଚାଷୀ ଆତ୍ମହତ୍ୟା ପାଇଁ ଯେଉଁ ଯେଉଁ କାରଣ ଆମେ କହୁଛେ ଏଗୁଡ଼ାକ ରୋଗର ଉପସର୍ଗ ମାତ୍ର। ରୋଗର ନିଦାନ ଅନ୍ୟସ୍ଥାନରେ ଅଛି। ଭାରତୀୟ କୃଷକର

ସ୍ୱାଧୀନତା ନାହିଁ। ସେ କ'ଣ ଚାଷ କରିବ? କେଉଁ ବିହନ କେଉଁଠୁ କିଣିବ, କେତେ ରାସାୟନିକ ସାର ଓ କୀଟନାଶକ କିଣିବ ଏସବୁ ସରକାରଙ୍କ କୃଷିବିଭାଗ ସ୍ଥିର କରିବ। ତା' ଓଳିଆରେ ଆଉ ବିହନ ନାହିଁ। ବାଡ଼ିରେ ଖତ ନାହିଁ। ଖୁଣ୍ଟରେ ବଳଦ ନାହିଁ। ସବୁ ସାଧନ ବଜାରରୁ କିଣିବ। ପାଣି ବି ସରକାରଙ୍କଠାରୁ କିଣିବ। ଗୋଟିଏ ଏକର ଜମି ଧାନଚାଷ ପାଇଁ ୧୦ହଜାରରୁ ୧୨ହଜାର ଟଙ୍କା ଖର୍ଚ୍ଚ। ବ୍ୟୟବହୁଳ କୃଷି, ପୁଣି ଜମିମାଲିକକୁ ଅଧେ ଫସଲ ଦେଲାପରେ ୪/୫ବସ୍ତା ଧାନଘରକୁ ନେଲା। ଋଣ ଶୁଝିବ କେଉଁଠୁ? ସବୁଜ ବିପ୍ଳବ ବା ରାସାୟନିକ କୃଷି ତା' ପାଇଁ କାଳ। କେତେକ ମୂଲିଆ ମଜୁରି ବଢ଼ିଥିବାରୁ ଚାଷୀକୁ ସମସ୍ୟା ବୋଲି ଯୁକ୍ତିକରନ୍ତି। ଶହେଟଙ୍କା ମଜୁରୀ ନେଇ ମୂଲିଆ ୫ପ୍ରାଣୀ ପରିବାର ପାଇଁ ୧୦୦ଟଙ୍କା କିଲୋ ଡାଲି, ୨୦ଟଙ୍କା କିଲୋ ଆଳୁ, ୪୦ଟଙ୍କା କିଲୋ ଚିନିରୁ କେତେ କ'ଣ କିଣି ଗୋଟିଏ ଦିନ ଚଳିବ? ଚାଷରେ କେତେଦିନ ମଜୁରୀ ପାଉଛି। ବର୍ଷକୁ ୪୦/୫୦ଟି ମଜୁରୀ। ସ୍ୱାମୀ ସ୍ତ୍ରୀ ଦୁଇଜଣ ଖୁବ୍ ବେଶୀରେ ମୋଟ ୧୦୦ଦିନ ମଜୁରି ପାଆନ୍ତୁ। ଦଶହଜାରେ ଟଙ୍କାରେ ବର୍ଷେ ଚଳିବେ। ସାଆନ୍ତିଆ ଚାଷୀମାନେ ଏପରି କେବେ ଭାବିଛନ୍ତି କି? ନିୟନ୍ତ୍ରଣ କଥା କହିଲାବେଳେ ସମାଧାନର ବାଟ ବାହାର ହେବ।

***ନିୟନ୍ତ୍ରଣ:-*** ନିୟନ୍ତ୍ରଣ ସ୍ୱଳ୍ପମିଆଦୀ ବ୍ୟବସ୍ଥା। ଅବସ୍ଥାକୁ ସମ୍ଭାଳିନେବା, ଅଧିକ ଆତ୍ମହତ୍ୟାକୁ ସାମୟିକ ନିୟନ୍ତ୍ରଣ କରିବା। ଆଗରୁ ତ' ଆମେ କହିଛେ ବେଳହୁଁ ରାଜ୍ୟ ସରକାର ସଜାଗ ହୋଇଥିଲେ ଆତ୍ମହତ୍ୟା ଏଡ଼ାଇ ଦିଆଯାଇ ପାରିଥାନ୍ତା। ଏବେ ଅବସ୍ଥା ଅସମ୍ଭାଳ ହେବାକୁ ବସିଲାଣି। ତେଣୁ ଏହି ପରିସ୍ଥିତିକୁ ସୁଧାରିବା ପାଇଁ କେତେକ ସ୍ୱଳ୍ପମିଆଦୀ କାର୍ଯ୍ୟକ୍ରମର ପ୍ରସ୍ତାବ ଏଠାରେ ଉଲ୍ଲେଖ କରାଗଲା। ନିରପେକ୍ଷ କୃଷକ ସଙ୍ଗଠନ, ସମାଜ କର୍ମୀମାନେ ତଥ୍ୟ ଅନୁସନ୍ଧାନକାରୀ ଦଳରେ ଘଟଣାସ୍ଥାନ ମାନଙ୍କରେ ପହଞ୍ଚି ଯେଉଁସବୁ ପ୍ରସ୍ତାବ ଦାବୀ ଉପସ୍ଥାପନ କରନ୍ତି ସେଗୁଡ଼ିକ ଏହିପରି-

*୧)* ସରକାର କାଳବିଳମ୍ବ ନକରି ଚାଷୀ ଆତ୍ମହତ୍ୟାକୁ ସ୍ୱୀକାର କରନ୍ତୁ। *୨)* ମୃତକଙ୍କ ପରିବାରକୁ ସହସା ସାହାଯ୍ୟ ଆକାରରେ ସର୍ବନିମ୍ନ ଦୁଇଲକ୍ଷ ଟଙ୍କା ମଞ୍ଜୁର କରନ୍ତୁ। ସେହି ପରିବାରର ସମସ୍ତ ସରକାରୀ ଋଣ ଛାଡ଼ କରାଯାଉ। ସାହୁକାର ଋଣର ସଠିକ୍ ଆକଳନ କରି ସରକାର ଋଣଟଙ୍କା ପାଇଁ ଜାମିନ୍‌ଦାର ରୁହନ୍ତୁ। ମୃତକଙ୍କ ବିଧବା ବା ସାବାଳକ ବ୍ୟକ୍ତିକୁ ଗୋଟିଏ ସରକାରୀ ଚାକିରୀ ଯୋଗାଇ ଦିଆଯାଉ। *୩)* ମରୁଡ଼ିଘୋଷଣା କରାଯାଇ ଥିବା ଜିଲ୍ଲାମାନଙ୍କରେ ସରକାରୀ, ସମବାୟ କିମ୍ବା ବ୍ୟାଙ୍କଋଣ ଆଦାୟ ତିନିବର୍ଷ

ପର୍ଯ୍ୟନ୍ତ ସ୍ଥଗିତ ରଖାଯାଉ । ଋଣର ସୁଧ ସମ୍ପୂର୍ଣ୍ଣ ଛାଡ଼ କରାଯାଉ । ଖଜଣା, ଜଳକର ଆଦାୟ ୨୦୦୯-୧୦ବର୍ଷ ପାଇଁ ସମ୍ପୂର୍ଣ୍ଣ ଛାଡ଼ କରାଯାଉ । ରବିଧାନ ଚାଷ ପାଇଁ କେନାଲରେ ପାଣି ଦିଆଯାଉ ଓ ମାଗଣା ବିହନ (ଧାନ, ମୁଗ, ବିରି, କୋଳଥ ଆବଶ୍ୟକ ଅନୁସାରେ) ଯଥେଷ୍ଟ ପରିମାଣରେ ଯୋଗାଇ ଦିଆଯାଉ । ନୂତନ ରବି ଋଣ ମଞ୍ଜୁର କରାଯାଉ । ଏହି ସମସ୍ତ ଖର୍ଚ୍ଚ ପାଇ ସର୍ବାଧିକ ୧୫୦୦ କୋଟିର ପ୍ୟାକେଜ ଆବଶ୍ୟକ ହୋଇପାରେ । *୪)* ଫସଲ କ୍ଷତି ପାଇଁ ଜଳସେଚିତ ଜମି ହେକ୍ଟର ପିଛା ୪ହଜାର ଓ ଅଣ-ଜଳସେଚିତ ଜମି ହେକ୍ଟର ପିଛା ଦୁଇହଜାର ଟଙ୍କା ସରକାର ବାହାଦୂର ଘୋଷଣା କରିଛନ୍ତି । ଏହା ସମୁଦ୍ରକୁ ଶଙ୍ଖେ ଭଳି । ଚାଷ ଖର୍ଚ୍ଚ ହିସାବକୁ ନେଇ ହେକ୍ଟର ପ୍ରତି ସର୍ବନିମ୍ନ ସାହାଯ୍ୟ ୧୦ହଜାର ଟଙ୍କା ରଖାଯାଉ ଏବଂ ଜଳସେଚିତ ଓ ଅଣଜଳସେଚିତ ତାରତମ୍ୟ ଉଠାଇ ଦିଆଯାଉ । ଆନ୍ଧ୍ରପ୍ରଦେଶ, ତାମିଲନାଡୁ ଓ କର୍ଣ୍ଣାଟକ ଫସଲ କ୍ଷତି ପାଇଁ ହେକ୍ଟର ପ୍ରତି ୧୦ହଜାରରୁ ୧୨ହଜାର ମଧ୍ୟରେ ସାହାଯ୍ୟ ଦେବା ଗତ ୫ବର୍ଷ ହେଲା ପ୍ରଚଳନ କଲେଣି । ଆବଶ୍ୟକ ହେଲେ ବିଧାନସଭାର ସ୍ୱତନ୍ତ୍ର ଅଧିବେଶନ ଡକାଇ ଓଡ଼ିଶା ରିଲିଫ କୋଡ୍‌ର ସଂଶୋଧନ କରାଯାଉ । ମନ୍ତ୍ରୀ, ବିଧାୟକଙ୍କ ଦରମା, ଭତ୍ତା ଓ ବର୍ଷକେ ଦୁଇଥର ବଢ଼ିପାରୁଛି । ଚାଷୀ ପାଇଁ କାହିଁକି ହାତ ଯାଉନି ? ମରୁଡ଼ି ଓ କୃଷକ ଆତ୍ମହତ୍ୟାକୁ ରାଜ୍ୟର ବିପତ୍ତି ବୋଲି ବିଚାର କରି ସାହାଯ୍ୟ ବ୍ୟବସ୍ଥା କରିବା ସରକାରଙ୍କର ହାତର ଖେଳ । କେନ୍ଦ୍ର ଓ ରାଜ୍ୟ ସରକାରମାନେ ବହୁରାଷ୍ଟ୍ରୀୟ ଦେଶୀ ବିଦେଶୀ କମ୍ପାନୀ, ଶିଳ୍ପପତି ଓ ବ୍ୟାଙ୍କ୍‌ମାନଙ୍କୁ ଆର୍ଥିକ ମାନ୍ଦାବସ୍ଥା ସୁଧାରିବା ପାଇଁ ଷ୍ଟିମୁଲେସ୍ ପ୍ୟାକେଜ ଦେଇ ଚାଲିଛନ୍ତି । ନିକଟରେ କେନ୍ଦ୍ର ଅର୍ଥମନ୍ତ୍ରୀ ନୂଆଦିଲ୍ଲୀରେ Economic Editor's Conferenceରେ ଏହା ଘୋଷଣା କରିଛନ୍ତି । (The Hindu 4.10.09) ଚାଷୀମାନେ କ'ଣ ସରକାରଙ୍କ କାତିଆ ବାଛୁରୀ । *୫)* ଓଡ଼ିଶା ସରକାରଙ୍କ ରାଜସ୍ୱବିଭାଗ ବା କୃଷିବିଭାଗ ପାଖରେ ଭାଗଚାଷୀଙ୍କର ନାମଗନ୍ଧ ହିସାବ ନାହିଁ । ଯେଉଁ ସବୁ ସାହାଯ୍ୟ ପ୍ରସ୍ତାବ ଏଠାରେ ଉଲ୍ଲେଖ କରାଗଲା, ତା'ର ମୁନାଫା କେବଳ ଜମି ମାଲିକ ମାନେ ପାଇବେ । ତେଣୁ ରାଜ୍ୟ ସରକାର ତୁରନ୍ତ ରାଜ୍ୟରେ ଭାଗଚାଷୀ ସଂଖ୍ୟା ଆକଳନ ପାଇଁ ଗୋଟିଏ ନିରପେକ୍ଷ ଟାସ୍କଫୋର୍ସ ଗଠନ କରନ୍ତୁ । ଏଥିରେ ଭାଗଚାଷୀଙ୍କର ପ୍ରତିନିଧିତ୍ୱ ନିଶ୍ଚିତ କରିବାକୁ ହେବ । ଭାଗଚାଷୀଙ୍କୁ ନ୍ୟାୟ ନମିଳିଲେ ଏଣିକି ସେମାନେ ଆନ୍ଦୋଳନ ପାଇଁ ରାଜରାସ୍ତାକୁ ଓହ୍ଲାଇପାରନ୍ତି ଯାହା ସରକାରଙ୍କୁ ମହଙ୍ଗା ପଡ଼ିପାରେ । *୬)* ନିକଟରେ ବିହାରର ଉପମୁଖ୍ୟମନ୍ତ୍ରୀ ସେଠାରେ ଭାଗଚାଷୀମାନଙ୍କୁ କିସାନ୍ କ୍ରେଡ଼ିଟ କାର୍ଡ଼ ମଞ୍ଜୁରି ପାଇଁ ବ୍ୟାଙ୍କ୍‌ମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ନାବାର୍ଡ଼ ଏବଂ ଭାରତ

ସରକାର ବ୍ୟାଙ୍କ୍ ଓ ସମବାୟ ସଂସ୍ଥାମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଯେ ଭାଗଚାଷୀ, ଭୂମିହୀନ ମାନେ ଜମିର ସାର୍ଟିଫିକେଟ ଦାଖଲ ନକରି ମଧ କୃଷିଋଣ ପାଇବା ପାଇଁ ହକ୍‌ଦାର। (Economic Times-5.10.2009) । ଓଡ଼ିଶା ସରକାର କାଳବିଳମ୍ୱ ନକରି ସମବାୟ ସଂସ୍ଥା ଓ ବ୍ୟବସାୟିକ ବ୍ୟାଙ୍କ୍‌ମାନଙ୍କୁ ଅନୁରୂପ ନିର୍ଦ୍ଦେଶ ଦିଅନ୍ତୁ ଏବଂ ଏହାର ATR (Action Taken Report) ପ୍ରତି ତିନିମାସରେ ଥରେ ସମ୍ପୃକ୍ତ ସଂସ୍ଥାମାନଙ୍କୁ ମଗାଯାଉ। ଭୂମିହୀନ ଗୋଷ୍ଠୀ ଗଠନ କରି ଗୋଷ୍ଠୀ ମାଧ୍ୟମରେ ବ୍ୟାଙ୍କ୍‌ମାନେ ଋଣ ମଞ୍ଜୁର କରାଯାଉ। ଏହି ଶ୍ରେଣୀର ଚାଷୀଙ୍କୁ ଋଣ ନ ଦେବାପାଇଁ ବ୍ୟାଙ୍କ୍‌ମାନଙ୍କର ଏକପ୍ରକାର ଚାଲ୍। ୭) କେନାଲ ଜଳସେଚନରେ ସୁବିଧା ଆଣିବା ପାଇଁ ସମସ୍ତ ମାଇନର ଓ ସବ୍‌ମାଇନର ତଳମୁଣ୍ଡ ପର୍ଯ୍ୟନ୍ତ ପାଣି ପହଞ୍ଚିବା ପାଇଁ କେନାଲ ଭିତର ପାର୍ଶ୍ୱ ଓ ତଳ କଂକ୍ରିଟ ଲାଇନିଂ କରାଯାଉ। ମହାନଦୀ ତ୍ରିକୋଣଭୂମି କେନାଲ ଅଞ୍ଚଳରେ ସମସ୍ତ ଚକନାଳୀ ଅକାମୀ ହୋଇପଡ଼ିଛି। ସେଗୁଡ଼ିକର କଂକ୍ରିଟନାଳି କରାଯାଉ। ୮) ଅଭାବୀଧାନ ବିକ୍ରିର ଆଶୁ ସମାଧାନ ପାଇଁ ପ୍ରତ୍ୟେକ ଗ୍ରାମପଞ୍ଚାୟତରେ ମାସକୁ ଦୁଇଦିନ ସରକାରୀ କଣ୍ଟା ପକାଯାଇ ଧାନ କିଣିବାର ବ୍ୟବସ୍ଥା ଜରୁରୀ। ଚାଷୀମାନଙ୍କଠାରୁ ବ୍ୟାଙ୍କ୍ ବା ସମବାୟ ଋଣ, ଜମି ଖଜଣା ଓ ଜଳକର ସେହି ଧାନ ମୂଲ୍ୟରୁ ପଇଠ କରାଯାଉ। ଚାଷୀଙ୍କର ଜମି ହିସାବ ସରକାରଙ୍କ ପାଖରେ ଅଛି। ଚାଷୀପାଖରେ ଜମିର ପଟ୍ଟା ପାଉତି ଅଛି। ଏହାକୁ ଆଧାର କରି ଧାନ ପରିମାଣ ଧାର୍ଯ୍ୟ କରାଯାଉ। ଅଯଥା ଚାଷୀକୁ ରାଜସ୍ୱ ନିରୀକ୍ଷକଠାରୁ ପରମିଟ୍ ପାଇଁ ଧାଁଧଉଡ଼ କରିବାରୁ ମୁକ୍ତି ମିଳୁ।ଏହାଦ୍ୱାରା ବେପାରୀମାନଙ୍କୁ ରୋକାଯାଇପାରିବ। ୯) ସରକାର ଯେଉଁ କୃଷି କମିଶନ ଗଠନ କରିଛନ୍ତି, ସେଥିରେ ଚାଷୀଙ୍କର ପ୍ରତିନିଧିତ୍ୱ ନାହିଁ। ଏହି କମିଶନ ଚାଷୀର ମୌଳିକ ସମସ୍ୟା ଅନୁଧାନ କରିପାରିବ ନାହିଁ। କମିଶନରେ ୪ଜଣ ସରକାରୀ ସଭ୍ୟ ଅଛନ୍ତି। ଏଥିସହିତ ୯ଜଣ ବେସରକାରୀ ସଭ୍ୟଙ୍କୁ ନିଆଯାଉ। ଭାଗଚାଷୀ, ଛୋଟଚାଷୀ, ବଡ଼ଚାଷୀ, କୃଷିଶ୍ରମିକ, କୃଷି ସଙ୍ଗଠନରୁ ପ୍ରତିନିଧି, ସମାଜକର୍ମୀ ଓ ବିରୋଧୀଦଳ ନେତାଙ୍କୁ ଏହି କମିଶନର ସଭ୍ୟଭୁକ୍ତ କରାଯାଉ। କମିଶନର ମୁଖ୍ୟ ହାଇକୋର୍ଟର ଜଣେ ପୂର୍ବତନ ବିଚାରପତିଙ୍କୁ ରଖାଯାଉ। ଏହି କମିଶନର ବୈଠକ ବର୍ଷ ମଧ୍ୟରେ ସର୍ବନିମ୍ନ ୬ଥର ବସୁ ଏବଂ ସମ୍ବଲପୁର, ଭବାନୀପାଟଣା, ବ୍ରହ୍ମପୁର, କଟକ, ବାଲେଶ୍ୱର ଓ ଭୁବନେଶ୍ୱରରେ ବର୍ଷ ମଧ୍ୟରେ ଥରେ ଲେଖାଏଁ ବସି ଆଞ୍ଚଳିକ ଭିତ୍ତିରେ କୃଷକ ସମସ୍ୟା ଅନୁଧାନ କରିବାକୁ ସରକାରଙ୍କୁ ପ୍ରସ୍ତାବ ଦିଆଯାଉ। କୃଷିଋଣ, କୃଷିବୀମା, ଜଳସେଚନ, କୃଷିଜାତ ଦ୍ରବ୍ୟର ବିକ୍ରି ଓ ଭୂସଂସ୍କାର ଭଳି କୃଷି ସମସ୍ୟା ଗୁଡ଼ିକର ପୁଙ୍ଖାନୁପୁଙ୍ଖ

ଆଲୋଚନା କମିଶନ୍‌ର ଦାୟିତ୍ୱ ରହୁ । ଏହିସବୁ ପ୍ରସ୍ତାବ ବା ଅନୁରୂପ ପ୍ରସ୍ତାବମାନ କାର୍ଯ୍ୟକାରୀ କରିବା ପାଇଁ ବିରୋଧୀ ବିଧାୟକମାନେ ସରକାରଙ୍କ ଉପରେ ଚାପ ପ୍ରୟୋଗ କରିବା ବାଞ୍ଛନୀୟ । ବିପ୍ଳବୀ ବାମପନ୍ଥୀ ଦଳ, କୃଷକ ସଙ୍ଗଠନ ଓ ସମାଜକର୍ମୀମାନେ ଚାଷୀମାନଙ୍କୁ ନ୍ୟାୟ ମିଳିବାରେ ସହାୟକ ହେଲେ ଓଡ଼ିଶାରେ କୃଷି ଓ କୃଷକ ବହୁରାଷ୍ଟ୍ରୀୟ କମ୍ପାନୀ, ରାଜ୍ୟ ଓ କେନ୍ଦ୍ର ସରକାର ଏବଂ ଅମଲାତନ୍ତ୍ରର ଷଡ଼ଯନ୍ତ୍ରରୁ ଉଦ୍ଧାର ପାଇପାରିବ ।

*ନିରାକରଣ :-* ଯେକୌଣସି ସମସ୍ୟାର ନିରାକରଣ ପାଇଁ ଦୀର୍ଘମିଆଦି ଲକ୍ଷ୍ୟ ଓ କାର୍ଯ୍ୟକ୍ରମ ଆବଶ୍ୟକ । ଆଗରୁ ଆମେ ସାମୟିକ ନିୟନ୍ତ୍ରଣ ପାଇଁ କେତେକ ପ୍ରସ୍ତାବ ରଖିଛେ । ଗତ ୧୧ ବର୍ଷ ଭିତରେ ୩୫୦୯ ଜଣ ଚାଷୀ ଓଡ଼ିଶାରେ ଆତ୍ମହତ୍ୟା କରିଛନ୍ତି । ୨୦୦୧ରୁ ୨୦୦୯ ମଧ୍ୟରେ ଏହି ସଂଖ୍ୟା ୨୮୭୩ ଜଣ । ଲୋକପ୍ରତିନିଧି ସରକାର ଚାଷୀ ଆତ୍ମହତ୍ୟା ପ୍ରତି ବୈମାତୃକ ଭାବ ପ୍ରକାଶ କରୁଛନ୍ତି । ରାଜ୍ୟ କୃଷିମନ୍ତ୍ରୀ ତା.୨୭.୧୦.୨୦୦୯ରେ କୃଷି ବିଶ୍ୱବିଦ୍ୟାଳୟର ଗୋଟିଏ ସଭାରେ ପୁଣି ଦୋହରାଇଛନ୍ତି ଚାଷୀ ଚାଷପାଇଁ ନୁହେଁ । (ସମାଜ ତା.୨୮.୧୨. ୨୦୦୯) । ଘରବୁଡ଼ି ପାଣି ଆଣ୍ଠୁଏ । କଣା କହୁଛି ଦୁଲୁକୁଛି । ଆମ ରାଜ୍ୟ ସରକାରଙ୍କର କୃଷକବିରୋଧୀ କାର୍ଯ୍ୟକୁ ଦୋହରାଇ କିଛି ଫଳ ପାଇବାର ନାହିଁ । ଚାଷୀ, ବୁଦ୍ଧିଜୀବୀ ଓ ଗଣ-ଅନୁଷ୍ଠାନମାନେ ଏକଥା ମଧ୍ୟ ଲକ୍ଷ୍ୟ ରଖିବା ଦରକାର ଯେ ଓଡ଼ିଶାରେ ଚାଷୀର ଦୁର୍ଦ୍ଦଶାରୁ ଫାଇଦା ନେବାପାଇଁ ସାମ୍ରାଜ୍ୟବାଦୀ ଆମେରିକା, ବହୁରାଷ୍ଟ୍ରୀୟ କମ୍ପାନୀ, ବିଶ୍ୱବ୍ୟାଙ୍କ୍ ଭଳି ସଂସ୍ଥାମାନେ ନୂଆ ରଣକୌଶଳ ପ୍ରୟୋଗ କଲେଣି ।

ଗତ ୧୯.୧୧.୨୦୦୯ ଶୁକ୍ରବାର ଦିନ ଆନ୍ତର୍ଜାତିକ ଧାନ ଗବେଷଣା କେନ୍ଦ୍ରର ମହାନିର୍ଦ୍ଦେଶକ ତଥା ବରିଷ୍ଠ ପ୍ଲାଣ୍ଟ୍ ପ୍ୟାଥୋଲଜିଷ୍ଟ ଭୁବନେଶ୍ୱରର କିଟ୍ ବିଶ୍ୱବିଦ୍ୟାଳୟରେ ମ୍ୟାନେଜମେଣ୍ଟ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ ସତର୍କ କରିଛନ୍ତି କି ଆସନ୍ତା ବର୍ଷମାନଙ୍କରେ ଜଳବାୟୁ ପରିବର୍ତ୍ତନ ଓ ବିଶ୍ୱ ତାପମାତ୍ରା ବୃଦ୍ଧିଜନିତ ପ୍ରଭାବ ଭାରତରେ, ବିଶେଷ କରି ଓଡ଼ିଶା ଭଳି ପୂର୍ବଭାରତର ରାଜ୍ୟମାନଙ୍କରେ ଧାନ ଉତ୍ପାଦନ ହ୍ରାସ ପାଇବ । ଏହାର ମୁକାବିଲା ପାଇଁ ଅଧିକ ମରୁଡ଼ି ସହଣି ବା ବଢ଼ିସହଣି ଧାନ କିସମ ଚାଷ କରିବାକୁ ହେବ । ସ୍ୱର୍ଣ୍ଣ-ସବ୍-୧ ଓ ସୁବର୍ଣ୍ଣଧାନ (Golden Rice) କିସମ ଧାନଚାଷ ଜରୁରୀ । ଏଗୁଡ଼ିକ ଗୁଣସୂତ୍ର ପରିବର୍ତ୍ତିତ ବିହନ ଏବଂ ଏହାଦ୍ୱାରା କୃଷକ, ଖାଉଟି ଓ ପରିବେଶ ପ୍ରଭାବିତ ହେବାର ଆଶଙ୍କା ଅଛି । ମାତ୍ର ଆମରାଜ୍ୟରେ କୃଷି ଓ କୃଷକ ବିପନ୍ନ ହୋଇ ପଡ଼ିଥିବାବେଳେ ସେ ଦ୍ୱିତୀୟ ସବୁଜ ବିପ୍ଳବର ପରାମର୍ଶ ଦେଉଛନ୍ତି । ଚାଷୀ ଓ ଚାଷକୁ ଧ୍ୱଂସ କରି

ଆମରାଜ୍ୟରେ କମ୍ପାନୀଚାଷ କରାଇବା ଏହାର ଅନ୍ତର୍ନିହିତ ଲକ୍ଷ୍ୟ। ଖାଲି ସେତିକି ନୁହେଁ ମାଗଣା ମିଳିଲେ ଆଲକାତରା ପିଇଲା ଭଳି 'ଇରି'ର ଏହି ଚକ୍ରାନ୍ତକୁ ରୂପ ଦେବାପାଇଁ କିଟ୍ ଇରି ସହିତ ଏକ ବୁଝାମଣା ପତ୍ର ସ୍ୱାକ୍ଷର କରିଛି। (ସମାଜ- ୨୦ନଭେମ୍ବର, ୨୦୦୯, New Indian Express, 23 Nov, 2009)। ଏହି ବ୍ୟବସ୍ଥା କାର୍ଯ୍ୟକାରୀ କରିବାକୁ ତ ଓଡ଼ିଶା ସରକାର ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ବେୟର କ୍ରପ୍ ସାଇନ୍ସ ଭଳି ବିହନ ରାକ୍ଷସମାନଙ୍କ ନିକଟରେ ଅଙ୍ଗୀକାରବଦ୍ଧ। ମାତ୍ର ଏହା କାର୍ଯ୍ୟକାରୀ କରାଗଲେ ଚାଷୀ ଆହୁରି କରଜିଆ ହୋଇଯିବ। ଭାରତୀୟ ମହାକାଶ ଗବେଷଣା ପ୍ରତିଷ୍ଠାନର ତଥ୍ୟରୁ ଜଣାପଡ଼େ ଓଡ଼ିଶାର ଏକତୃତୀୟାଂଶ ଜମି ପ୍ରାୟ ମରୁଭୂମି ପାଲଟିଗଲାଣି। ଜଳବାୟୁ ପରିବର୍ତ୍ତନ, ବିଶ୍ୱ ତାପମାତ୍ରା ବୃଦ୍ଧି, ଜମିରେ ଅଧିକ ରାସାୟନିକ ସାର ଓ କୀଟନାଶକ ପ୍ରୟୋଗ ଏହାର କାରଣ। ଆଗକୁ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ଭଳି ପରିସ୍ଥିତି ସୃଷ୍ଟି ହେବାର ଆଶଙ୍କା ଦେଖାଦେଲାଣି।

ମୃତ୍ତିକାର ଗୁଣବତ୍ତାର ସୁରକ୍ଷା, ପାରମ୍ପରିକ ବିହନର ପୁନରୁଦ୍ଧାର ଓ ଦେଶୀଚାଷ ପ୍ରବର୍ତ୍ତନ ମାଧ୍ୟମରେ ହିଁ ଚାଷୀ ଓ ଚାଷର ସୁରକ୍ଷା ସମ୍ଭବ। ନିକଟରେ କେନ୍ଦ୍ର ଅର୍ଥମନ୍ତ୍ରୀ ସତର୍କ କରାଇ ଦେଇଛନ୍ତି କି କେନ୍ଦ୍ର ସରକାର ରାସାୟନିକ ସାର ଓ କୀଟନାଶକ ପାଇଁ ଚାଷୀକୁ ମିଳୁଥିବା ରିହାତି କମାଇ ଦିଆଯିବ ବା ସମ୍ପୂର୍ଣ୍ଣ ପ୍ରତ୍ୟାହାର କରିନିଆଯିବ। (The Hindu- 4 Oct, 09, Economic Editor's Conference, New Delhi)। କେନ୍ଦ୍ର ସାର ମନ୍ତ୍ରଣାଳୟ ଏଥିମଧ୍ୟରେ ନୀତିଗତ ସିଦ୍ଧାନ୍ତ ନେଲେଣି ଯେ ରାସାୟନିକ ସାର ଓ କୀଟନାଶକର ମୂଲ୍ୟ ନିରୂପଣ ଆଉ ସରକାରଙ୍କ ହାତରେ ରହିବ ନାହିଁ। ଆନ୍ତର୍ଜାତିକ ବଜାରରେ ସାରର ମୂଲ୍ୟବୃଦ୍ଧିକୁ ଲକ୍ଷ୍ୟରଖି ସାର କମ୍ପାନୀମାନେ ସେମାନଙ୍କର ମୂଲ୍ୟ ସ୍ଥିର କରିବେ। ଆଗକୁ ସାରର ଆକାଶଛୁଆଁ ମୂଲ୍ୟବୃଦ୍ଧିର ଏହା ପୂର୍ବାଭାସ ନୁହେଁ କି ? (ସମାଜ- ତା୨୭.୧୨.୨୦୦୯)

ଭୂସଂସ୍କାର କମିଶନ ଗଠନ କରି ଚାଷଜମି ଭୂମିହୀନ ଚାଷୀମାନଙ୍କୁ ବଣ୍ଟନ କରିବାରେ ଅହେତୁକ ବିଳମ୍ବ ହେଲାଣି। ସାଆନ୍ତଙ୍କ ଦଖଲରେ ଜମି। ହଳିଆ ଭାଗଚାଷ କରି ଆତ୍ମହତ୍ୟା କରିବ, ଏ ଧାରା ଆଉ ବେଶୀଦିନ ଚାଲିପାରିବ ନାହିଁ। ଭାଗଚାଷୀକୁ ଜମିରେ ଦଖଲ ରେକର୍ଡ଼ଭୁକ୍ତ କରାଯାଉ। ଉତ୍ପନ୍ନ ଫସଲରୁ ଜମିମାଲିକ ୨୫ପଇସା ଓ ଚାଷୀ ୭୫ପଇସା ପାଇବା ପାଇଁ ଆଇନଗତ ବିଧାନ ରହୁ। ଭୂସଂସ୍କାର କମିଶନରେ ଭୂମିହୀନମାନଙ୍କ ମଧ୍ୟରୁ ପ୍ରତିନିଧିତ୍ୱ ଆବଶ୍ୟକ। ସରକାରୀ ଓ ବେସରକାରୀ ସଭ୍ୟଙ୍କୁ ନେଇ ଏଭଳି କମିଶନ ଗଠନ

କଲେ ଭାଗଚାଷୀ ନ୍ୟାୟ ପାଇପାରିବ। ଓଡ଼ିଶାର ମୋଟ ଘରୋଇ ଆୟର ୨୭ଭାଗ କୃଷିକ୍ଷେତ୍ରରୁ ମିଳେ। ରାଜ୍ୟ ବଜେଟରେ କୃଷି ପାଇଁ ମାତ୍ର ୧.୫ରୁ ୨ପ୍ରତିଶତ ଖର୍ଚ୍ଚର ବ୍ୟବସ୍ଥା ରହୁଛି। ଦୁଇଟଙ୍କିଆ ଚାଉଳ ପାଇଁ ୨୦୦୯-୧୦ ରାଜ୍ୟ ବଜେଟରେ ୮୫୦କୋଟି ବ୍ୟବସ୍ଥା ଥିବାବେଳେ କୃଷିବଜେଟ ପାଇଁ ୭ଶହ କୋଟିରୁ କିଛି ଅଧିକ ଅଛି। ଏହା ହିଁ ଓଡ଼ିଶା ସରକାରଙ୍କର କୃଷକମାନଙ୍କୁ ଅଣଦେଖା କରିବାର ନଜିର। ଭିତ୍ତିଭୂମିର ବିକାଶ ନାମରେ ପର୍ଯ୍ୟାପ୍ତ ଅର୍ଥ ହରିଲୁଟ୍ ହେଉଥିଲାବେଳେ କୃଷିପାଇଁ କାହିଁକି ଅଧିକ ଅର୍ଥର ବ୍ୟବସ୍ଥା କରାଯାଉ ନାହିଁ ଏହି ପ୍ରଶ୍ନ ସଚେତନ ନାଗରିକମାନେ ସରକାରଙ୍କୁ କରିବା ଜରୁରୀ। କୃଷିପାଇଁ ସର୍ବନିମ୍ନ ୧୦ପ୍ରତିଶତ ଅର୍ଥ ବଜେଟ୍‌ରେ ବରାଦ କରାଯାଉ।

ଆମ ରାଜ୍ୟ ସରକାର ଉଦ୍ୟାନ କୃଷି, ପ୍ଲାଣ୍ଟେସନ୍, ଜୈବଇନ୍ଧନ ପାଇଁ ଚାଷ ନାମରେ ଲକ୍ଷ ଲକ୍ଷ ହେକ୍ଟର ଚାଷଜମି ଓ ସରକାରୀ ଜମି କମ୍ପାନୀମାନଙ୍କୁ ହସ୍ତାନ୍ତର କରୁଛନ୍ତି। ଖାଲି ସେତିକିନୁହେଁ ଏପରି ଚାଷରେ କ୍ଷତିଭରଣା କରିବାକୁ ସରକାରୀ ତହବିଲ୍‌ରୁ ଖର୍ଚ୍ଚ କରାଯାଉଛି। କେନ୍ଦ୍ର ସରକାର ଚା ଓ କଫି ବଗିଚାର ମାଲିକମାନଙ୍କର କ୍ଷତିଭରଣା କରିବାକୁ ସେମାନଙ୍କୁ ହଜାର ହଜାରକୋଟି ଟଙ୍କାର ଋଣ ଛାଡ଼ କରି ପାରୁଛନ୍ତି। (Govt. to Relieve Plantation Sector of Debt- Economic Times- 5.10.2009)। ତେଲିଆ ମୁଣ୍ଡରେ ତେଲ। ବରଗଡ଼, ସମ୍ବଲପୁର, ଝାରସୁଗୁଡ଼ା ଭଳି ବିଭିନ୍ନ ସ୍ଥାନରେ ଆତ୍ମହତ୍ୟା କରିଥିବା ଚାଷୀ ପରିବାରକୁ ଋଣ ଛାଡ଼ ନହେବା ପାଇଁ ସରକାରଙ୍କ ପାଖରେ କ'ଣ ଯୁକ୍ତି ଅଛି ? କୃଷକ ସଙ୍ଗଠନ, ସମାଜକର୍ମୀ ଓ କୃଷକ ସମସ୍ୟା ସହିତ ଜଡ଼ିଥିବା ବ୍ୟକ୍ତି, ଗଣମାଧ୍ୟମ ପ୍ରତିନିଧି ଓ ସବୁଶ୍ରେଣୀର ଚାଷୀ ପ୍ରତିନିଧିମାନଙ୍କୁ ନେଇ ଗୋଟିଏ ଲୋକ କୃଷି କମିଶନ ଗଠନ କରିବା ସମୟ ଆସିଛି। ଏହି କମିଶନ ଓଡ଼ିଶାର କୃଷି ଓ ଜୀବନ ଜୀବିକା ଭୂଗୋଳ ପ୍ରସ୍ତୁତ କରି ଆସନ୍ତା ୧୦୦ବର୍ଷ ପାଇଁ କୃଷିନୀତି, ପ୍ରକଳ୍ପ ଓ ଆନୁଷଙ୍ଗିକ ଖସଡ଼ା ପ୍ରସ୍ତୁତ କରିବେ। ରାଜ୍ୟ ସରକାର ଏହି କମିଶନର ସମସ୍ତ ଖର୍ଚ୍ଚ ବହନ କରିବେ ମାତ୍ର ସରକାରଙ୍କର ଅଙ୍କୁଶ ଏହି କମିଶନ ମାନିବାକୁ ବାଧ୍ୟ ରହିବ ନାହିଁ। ନଦୀ, ନାଳ ଓ ପ୍ରାକୃତିକ ଜଳସମ୍ପଦ, ବୃଷ୍ଟିଜଳର ସଂରକ୍ଷଣ ଓ ପରିଚାଳନା କରିପାରିଲେ ଫସଲକୁ ପାଣି ଯୋଗା ଯାଇପାରିବ। ଭୂତଳ ଜଳ ଅମଳ ପାଇଁ ଓଡ଼ିଶାରେ କମ୍ପାନୀମାନଙ୍କ ବରାଦରେ ଯେପରି ସରକାର ଉଠା ଜଳସେଚନ ବ୍ୟବସ୍ଥା କରୁଛନ୍ତି, ତାହା ଅତ୍ୟନ୍ତ ବିପଦ୍‌ଜନକ। ୧୦/୧୫ବର୍ଷ ପରେ ଆମକୁ ପଞ୍ଜାବ ବା ହରିୟାନା ଭଳି ଚାଷପାଇଁ ପାଣି ନପାଇ ଗାଁ ବିକିବାକୁ ପଡ଼ିବ ଓ ସହରରେ ବସ୍ତି ବଢ଼ିଯିବ। ଆମ ଦେଶର ଜଳସମ୍ପଦର ୧୨ପ୍ରତିଶତ ଓଡ଼ିଶା ଦଖଲରେ।

ଓଡ଼ିଶାର କ୍ଷେତ୍ରଫଳ ୪.୭ପ୍ରତିଶତ ହେବ। ପାଣି ଆମର ନିଅଣ୍ଟ ନୁହେଁ। ଉପଯୋଗର ଅଭାବ। ଚାଷୀମାନଙ୍କୁ ଋଣ ନଦେଇ ଚାଷଖର୍ଚ୍ଚର ୮୦ ପ୍ରତିଶତ ସରକାର ବହନ କଲେ ବାର୍ଷିକ ଅଢ଼େଇ ହଜାର କୋଟି ଆବଶ୍ୟକ ପଡ଼ିବ। ଏହାଦ୍ୱାରା କୃଷିକ୍ଷେତ୍ରରୁ ଉତ୍ପାଦନ ହେକ୍ଟର ପ୍ରତି ୨୦ପ୍ରତିଶତ ବୃଦ୍ଧି କରାଯାଇପାରିବ। ଉତ୍ପାଦିତ ଅଧିକ ଶସ୍ୟର ମୂଲ୍ୟ ୩ହଜାର କୋଟି ଟଙ୍କାରୁ ଅଧିକ ହେବ। କୃଷି ବୈଜ୍ଞାନିକ, କୃଷି ଅର୍ଥନୀତିଜ୍ଞମାନେ ଅନୁଭବୀ ଚାଷୀମାନଙ୍କୁ ବିଶ୍ୱାସକୁ ନେଇ ଏହା ପରୀକ୍ଷା କରିପାରନ୍ତି।

ସର୍ବୋପରି ଯଦି ଚାଷୀମାନେ ନିଜର ଆର୍ଥିକ ଅଭିବୃଦ୍ଧି କରିବାକୁ ଚାହାନ୍ତି ତେବେ ସେମାନେ ନିଜ ନିଜ ଭିତରେ ଥିବା ଭେଦଭାବ ଭୁଲି ରାଜରାସ୍ତାକୁ ଓହ୍ଲାନ୍ତୁ। ଦେବାକୁ, ମରିବାକୁ କେହି ଭଲପାଆନ୍ତି ନାହିଁ। ସରକାର ମଧ୍ୟ ଏହି ରୋଗରେ ଆକ୍ରାନ୍ତ। ସରକାରଙ୍କଠାରୁ ଚାଷୀ ତା'ର ନ୍ୟାଯ୍ୟ ଦାବୀ ଛଡ଼ାଇ ନେବ। ଚାଷଜମି କମ୍ପାନୀକୁ ଦେବା ବିରୋଧ କରିବା, କୃଷିଜାତ ଦ୍ରବ୍ୟର ଉଚିତ ମୂଲ୍ୟ ହାସଲ କରିବା, ସରକାରଙ୍କ କୃଷିନୀତିରେ ଗଠନମୂଳକ ପରିବର୍ତ୍ତନ କରି ନିରନ୍ତର କୃଷିର ପୁନଃ ପ୍ରବର୍ତ୍ତନ କରିପାରିଲେ ହିଁ ଚାଷୀମୁହଁରେ ହସଫୁଟିବ। ନିକଟରେ ଆଖୁଚାଷୀମାନେ ସଂସଦ ଘେରାଉ କରି ଆଖୁମୂଲ୍ୟରେ ବୃଦ୍ଧି ଆଣିପାରିଛନ୍ତି। ଓଡ଼ିଶାର ଚାଷୀ କୃଷକ ଆତ୍ମହତ୍ୟାକୁ ଏକ ଆହ୍ୱାନ ମନେକରି ବିପ୍ଳବ ପାଇଁ ନିଜକୁ ପ୍ରସ୍ତୁତ କରନ୍ତୁ।



# ବିଟି ବାଇଗଣ-ଗୁମର କଥା

ବିଟିବାଇଗଣ ବଜାରକୁ ଆସିଲାଣି କି ନାହିଁ ସଠିକ୍ ଖବର ଆମ ପାଖେ ନାହିଁ। ମାତ୍ର ଗାଁରୁ ସହର ପର୍ଯ୍ୟନ୍ତ ବିଟିବାଇଗଣର ଚର୍ଚ୍ଚା। ବଜାରରୁ ବାଇଗଣ କିଣିଲା ବେଳେ ଗରାଖମାନେ କଳାବାଇଗଣକୁ ବିଟି ବାଇଗଣ ଭାବି କିଣିବାକୁ ଆଗପଛ ହେଲେଣି। 'ବିଟି ବାଇଗଣରେ ବିଷ' ଏକଥାଟା ପ୍ରାୟ ଲୋକଙ୍କ କାନକୁ ଯାଇଛି। ଚାଷୀ, ଖାଉଟି, କୃଷକ ସଙ୍ଗଠନ, ପରିବେଶବିତ୍ ଓ ସ୍ୱାଧୀନ ବୈଜ୍ଞାନିକମାନେ ବିଟି ବାଇଗଣ ଚାଷକୁ ଦୃଢ଼ବିରୋଧ କରୁଛନ୍ତି। କ'ଣ ଏଥିରେ ରସ ଅଛି ଯେ ଆମ କେନ୍ଦ୍ର ସରକାର ବିଟି ବାଇଗଣକୁ ବ୍ୟବସାୟିକ ଭାବେ ଚାଷ କରିବାକୁ ଏତେ ବ୍ୟାକୁଳ ? କେଉଁମାନେ ଏଥିରେ ମୁଖ୍ୟ କଳାକାର, କେଉଁମାନେ ବା ଖଳନାୟକ ? ସାଧାରଣ ମଣିଷଟି ଦ୍ୱନ୍ଦ୍ୱରେ ପଡ଼ିଛି। ସେ ସନ୍ଦେହ କରୁଛି କମ୍ପାନୀକୁ, ସନ୍ଦେହ କରୁଛି ସରକାରକୁ। ଏହାର ରହସ୍ୟ ଭେଦ କରିବାକୁ ସେ କ'ଣ ଭାର୍ଜନ !

ବାଇଗଣକୁ ପରିବା ମଧ୍ୟରେ ରଜା କୁହାଯାଏ। ଧନୀ-ଗରିବ ନିର୍ବିଶେଷରେ ସମସ୍ତଙ୍କ ରୋଷେଇ ଘରେ ବାଇଗଣର ସ୍ଥାନ ନିଆରା। ଆମ ରାଜ୍ୟରେ ପଖାଳ ଭାତକୁ ବାଇଗଣ ପୋଡ଼ା ରଜାପୁଅ ଠାରୁ ମୂଲିଆ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରିୟ। ସେଇଥିପାଇଁ କଥା ଅଛି

'ପଖାଳଭାତକୁ ପୋଡ଼ା ବାଇଗଣ,  
ତବତ ଭାତକୁ ଘିଅ;  
ଖଞ୍ଜି ଦେଇଛିରେ ବିଧାତା ବିନ୍ଧାଣୀ ପୁଅ'

ଭାରତରେ ୩୦୦୦ରୁ ଅଧିକ କିସମର ଦେଶୀ ବାଇଗଣ ଆଜି ବି ଚାଷ ହେଉଛି। ଚୀନ୍ ବାଇଗଣ ଉତ୍ପାଦନରେ ପୃଥିବୀରେ ପ୍ରଥମ। ଭାରତର ସ୍ଥାନ ଦ୍ୱିତୀୟ। ପୃଥିବୀର ବାଇଗଣ ଉତ୍ପାଦନର ୨୬ ପ୍ରତିଶତ ଭାରତରୁ ମିଳିଥାଏ। ଆମ ଦେଶରେ ପ୍ରାୟ ୪,୭୨,୦୦୦ହେକ୍ଟର ଜମିରେ ବାଇଗଣ ଚାଷ ହୋଇଥାଏ। ବାର୍ଷିକ ଉତ୍ପାଦନ ୭.୬ନିୟୁତ ମେଟ୍ରିକ ଟନ୍ ଥିଲାବେଳେ ହେକ୍ଟର ପ୍ରତି ଉତ୍ପାଦନ ୧୬.୩ ଟନ୍। ଆମ ଓଡ଼ିଶାରେ

■ *ଆଜ କେତେ ବିଷ ପିଇଲେ ଚେତିବା... !*

୨୫୦ରୁ ଅଧିକ କିସମର ଦେଶୀ ବାଇଗଣ ଚାଷ ହୋଇଥାଏ। ଭାରତର ମୋଟ ଉତ୍ପାଦନର ୨୨ପ୍ରତିଶତ ଓଡ଼ିଶାର ଛୋଟ ଓ ନାମମାତ୍ର ଚାଷୀମାନେ ଯୋଗାଇଥାନ୍ତି। ନୟାଗଡ଼, ବରଗଡ଼, ସମ୍ବଲପୁର, କନ୍ଧମାଳ, ଅନୁଗୁଳ, ବଲାଙ୍ଗୀର, ପୁରୀ ଜିଲ୍ଲାର ବଳଙ୍ଗା ଓ ତେଇସିପୁର ଅଞ୍ଚଳରେ ବାଇଗଣ ଉତ୍ପାଦନ ଏତେ ଅଧିକ ହୋଇଥାଏ ଯେ ବେଳେବେଳେ କିଲୋ ପ୍ରତି ଟଙ୍କାଏ, ଦୁଇଟଙ୍କା ବି ଚାଷୀକୁ ମିଳେନାହିଁ। ଚାଷୀ ଅଭାବୀ ବିକ୍ରିର ଶିକାର ହୋଇଥାଏ। ଏଭଳି ଦୟନୀୟ ସ୍ଥିତିରେ ଅଧିକ ଉତ୍ପାଦନ କଥା କହି ବିଟି ବାଇଗଣ ପ୍ରଚଳନ କାହା ସ୍ୱାର୍ଥରେ ହେବ। ବିଟି ବାଇଗଣ ଏକ ଅବାସ୍ତବ ଚିନ୍ତା। କଥାରେ ଅଛି ବାଡ଼ି ବାଇଗଣ ନା ପୋଥି ବାଇଗଣ। ବାଡ଼ି ବଗିଚାରେ ତ' ଚାଷୀ ବାଇଗଣ ଫଳାଉଛି। ଗବେଷଣାଗାରରେ ବିଟି ବାଇଗଣ ଫଳାଇ ତାକୁ ଚାଷପାଇଁ, ଚାଷୀଉପରେ ଲଦିବା ପାଇଁ ଆମ କେନ୍ଦ୍ର ସରକାର କାହା ଇଙ୍ଗିତରେ ଚକ୍ରାନ୍ତ ଚଳାଇଛନ୍ତି ଜାଣିବା କଥା।

ଉଣେଇଶି ଶହ ସତୁରୀଦଶକରେ ଆମ ଦେଶରେ ସବୁଜ ବିପ୍ଳବର ରାଜତ୍ୱ ଆରମ୍ଭ ହେଲା। ସେଇଦିନୁ ଭାରତର କୃଷିନୀତି ୱାଶିଂଟନରୁ ପରିଚାଳିତ ହେଉଛି। ସାମ୍ରାଜ୍ୟବାଦୀ ଆମେରିକା ଓ ଏହାର ୟୁରୋପୀୟ ପୁଞ୍ଜିବାଦୀ ରାଷ୍ଟ୍ରମାନେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ହେପାଜତ କରିଥାନ୍ତି। ମନସାଣ୍ଟୋ, ସିଞ୍ଜେଣ୍ଟା, ବେୟର କ୍ରପ ସାଇନ୍ସ, ଡୁ ପଣ୍ଟୋ, ଡୋ କେମିକାଲ, ନୋଭାଟ୍ରିସ୍ ଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆମ ଦେଶର ୩୦ପ୍ରତିଶତରୁ ଅଧିକ ବିହନ ବଜାର ଦଖଲ କଲେଣି। ଆମ ଦେଶର (ପୁଷ୍ପା ଏମ୍ ଭାର୍ଗବ-ଦି ହିନ୍ଦୁ-ଅଗଷ୍ଟ ୧୧, ୨୦୦୯) ମାହିକୋ ଭଳି କେତେକ ବିହନ କମ୍ପାନୀ ମଧ୍ୟ ବିଦେଶୀ ଦଲାଲଙ୍କ ସାଙ୍ଗରେ ବିହନ ଲୁଟ୍ କରି ଚାଲିଛନ୍ତି। ବର୍ତ୍ତମାନ ଆମେରିକୀୟ ଏମ୍ଏନ୍ସି ମନ୍ସାଣ୍ଟୋ ଏହି ଲୁଟେରା ଦଳର ସର୍ଦ୍ଦାର।

୨୦୦୧ମସିହାରେ ମନ୍ସାଣ୍ଟୋ-ମାହିକୋ ଯୋଡ଼ି ଭାରତରେ ବିଟି କପାର ବିହନ ବେପାର ଆରମ୍ଭ କଲେ। ବିଟି କପା ଚାଷ ଯୋଗୁଁ ଗାଈ, ଗୋରୁ, ଛେଳି, ମେଣ୍ଢା ତ ଅନେକ ମରୁଛନ୍ତି। ଲକ୍ଷାଧିକ କପାଚାଷୀ ଆତ୍ମହତ୍ୟା କରିଛନ୍ତି। ଆମ ଦେଶରେ ୭ହଜାର ବର୍ଷରୁ ଅଧିକ ସମୟ ଧରି ଚାଷ ହୋଇ ଆସୁଥିବା ଦେଶୀ କପା ମଞ୍ଜି ଇତିହାସ ଗର୍ଭରେ ଲୀନ ହୋଇଗଲାଣି, ମାତ୍ର ୮/୯ବର୍ଷ ସମୟ କାଳ ଭିତରେ। ୨୦୦୬ରେ ବୁଶ୍ ପ୍ରଶାସନ ଓ ଭାରତ ସରକାରଙ୍କ ମଧ୍ୟରେ କିଆ (ନଲେଜ ଇନିସିଏଟିଭ ଇନ୍ ଏଗ୍ରିକଲଚର) ଚୁକ୍ତି ସ୍ୱାକ୍ଷରିତ ହୋଇଛି। କେନ୍ଦ୍ର ସରକାରଙ୍କ କୃଷିନୀତି ଏହି ଚୁକ୍ତି ଦ୍ୱାରା ନିୟନ୍ତ୍ରିତ। ବହୁରାଷ୍ଟ୍ରୀୟ

କମ୍ପାନୀମାନେ ଏହି ଚୁକ୍ତିବଳରେ ଭାରତରେ କେବଳ ବିଟିବାଇଗଣ ନୁହେଁ; ବିଟି ଧାନ (ସୁବର୍ଣ୍ଣଧାନ-ଗୋଲଡ଼ନ ରାଇସ), ବିଟି ଆଳୁ, ବିଟି ବିଲାତିବାଇଗଣ, ବିଟି ବନ୍ଧା ଓ ଫୁଲକୋବି, ବିଟି ସୋୟାବିନ ଭଳି ୪୦ରୁ ଊର୍ଦ୍ଧ୍ୱ ଖାଦ୍ୟ ଫସଲ ଚାଷ ପାଇଁ ଯୋଜନା ରଖିଛନ୍ତି। ଏଗୁଡ଼ିକ ଜିଏମ୍ ବିହନର ଫସଲ।

ବିଟି ବାଇଗଣର ମୁଖ୍ୟ ଖଳନାୟକ ମନ୍‌ସାଣ୍ଟୋ ଓ ଏହାର ଭାରତୀୟ ସହଯୋଗୀ ମାହିକୋ ବିହନ କମ୍ପାନୀ। ୨୦୦୦ମସିହାଠାରୁ ଏମାନେ ଭାରତରେ ପ୍ରଥମ ଜିଏମ୍ ଖାଦ୍ୟ ଫସଲ ବାଇଗଣ ଚାଷ ପାଇଁ ଉଦ୍ୟମ ଆରମ୍ଭ କରିଛନ୍ତି। ମନ୍‌ସାଣ୍ଟୋ ଭାରତରେ ଜି.ଏମ୍. ବିହନ ବେପାର କରିବାପାଇଁ ଫରେନ୍ ଇନଭେଷ୍ଟମେଣ୍ଟ ବୋର୍ଡ଼ର ସ୍ୱୀକୃତି ମଧ୍ୟ ହାସଲ କଲାଣି। (ଇକୋନୋମିକ୍ସ ଟାଇମ୍ସ-୨୨.୧୦.୨୦୦୯)

ବାଇଗଣରେ କାଣ୍ଡବିନ୍ଧା ଓ ଫଳବିନ୍ଧା ରୋଗ ସହିତ ପତ୍ରପୋଡ଼ା, ଝାଉଁଳା, ମୂଳ ସଢ଼ା, ଫଙ୍ଗସ୍ ଯୋଗୁଁ ଗଛରେ ମୁଚୁକାନିଆ ପତ୍ର ହୋଇ ନଫଳିବା (ଅଣ୍ଡିରା) ଭଳି ଏକାଧିକ ରୋଗ ହୋଇଥାଏ। ପାରମ୍ପରିକ ରୋଗ ଓ କୀଟନାଶକ ପ୍ରକ୍ରିୟାରେ ଚାଷୀ ଲିମ୍ବତେଲ, ପିଡ଼ିଆ ଓ ପତ୍ର, କରଞ୍ଜ ପିଡ଼ିଆ, ଗାଈମୂତ, ପାଉଁଶ, ବାଇଗଣ କିଆରୀରେ ଗେଣ୍ଡୁଗଛ ଲଗାଇ ଏହି ସବୁ ରୋଗ ନିୟନ୍ତ୍ରଣ କରିଥାଏ। ବାଇଗଣରେ ଅଧିକ ରୋଗ ପୋକ ଶଙ୍କରଜାତୀୟ ବିହନ ଚାଷ ଦିନୁ ଅର୍ଥାତ୍ ୧୯୭୦ପରଠାରୁ ଚାଷୀ ପାଇଁ ସମସ୍ୟା ହୋଇଛି। ବିହନ (କମ୍ପାନୀର) ଆକାଶଛୁଆଁ ଦର। କୀଟନାଶକ-ଜହର କମ୍ପାନୀର। ହାଇବ୍ରିଡ଼ ଧାନ ଓ ପନିପରିବା ମଞ୍ଜି ସାଙ୍ଗରେ ରୋଗପୋକ ନେଇ ଆସିଥାନ୍ତି। ବିଟି ବାଇଗଣରେ ବାସିଲସ ଥୁରିନ୍ ଜେନ୍‌ସିସ୍ ଜିନ୍ ସ୍ଥାପନ କରାଯାଇଛି। ଏବେ ମଧ ବାସିଲସ୍ ଥୁରିନ୍ ଜେନ୍‌ସିସ୍ କୀଟନାଶକ ବ୍ୟବହାର କରାଯାଉଛି। ବାସିଲସ୍ ଥୁରିନ୍ ଜେନ୍‌ସିସ୍ ମାଟିରେ ରହୁଥିବା ଗୋଟିଏ ବ୍ୟାକ୍ଟେରିଆ। ଏଥିରୁ ବିଟି ଜିନ୍ (ଗୁଣସୂତ୍ର) କ୍ରାୟ-୧-ଏସିକୁ ବିଜ୍ଞାନାଗାରରେ ଜୈବ ପ୍ରଯୁକ୍ତିବିଦ୍ୟା ସହାୟତାରେ ହାଇବ୍ରିଡ଼ ବାଇଗଣରେ ସ୍ଥାପନ କଲେ ତାହା ବିଟି ବାଇଗଣ ହେବ। ଏହି ଜିନ୍‌ର ବିଷ ବାଇଗଣର କାଣ୍ଡ, ପତ୍ର, ଫଳ ଚାରିଆଡ଼େ ଖେଳିଯିବ। ଫଳରେ କାଣ୍ଡବିନ୍ଧା ପୋକ ଏହି ବିଷ ପ୍ରଭାବରେ ମରିଯିବ।

ଜିଏମ୍ ଫସଲ ପୃଥିବୀରେ ଆମେରିକା, କାନାଡ଼ା, ଆର୍ଜେଣ୍ଟିନାରେ ୧୫/୨୦ବର୍ଷ ହେଲା କରାଯାଉଛି। ଜିଏମ୍ ମକା, ସୋୟା, କାନୋଲା, ମଟର, କପା ଭଳି କେତେକ ଫସଲ ସେ ଦେଶରେ ଚାଷହେଉଛି। ମାତ୍ର ନୀତିଗତ ଭାବେ ଏସବୁ ଫସଲ ଗୋ'ଖାଦ୍ୟ

ପାଇଁ ବ୍ୟବହାର ହେଉଛି । ମଣିଷ ପାଇଁ ଜିଏମ୍ ଖାଦ୍ୟଶସ୍ୟ ବିକ୍ରି କଲେ ଡବା/ପ୍ୟାକେଟରେ GMଲେଖିବା ପାଇଁ ନିୟମ ଅଛି । ୟୁରୋପୀୟ ୟୁନିଅନ୍‌ରେ ମନ୍‌ସାଣ୍ଟୋର ପ୍ରବେଶକୁ ତ' ନିଷିଦ୍ଧ କରାଯାଇଛି । ଜିଏମ୍ ଖାଦ୍ୟ ମଧ୍ୟ ମଣିଷ ଖାଦ୍ୟ ପାଇଁ ମନା । ଅଷ୍ଟ୍ରେଲିଆ, ନ୍ୟୁଜିଲାଣ୍ଡରେ ଜିଏମ୍ ଗୋଖାଦ୍ୟ ବା କୁକୁଡ଼ା ଖାଦ୍ୟ ମଧ୍ୟ ବିକ୍ରି ନିଷେଧ କରାଯାଇଛି ।

୨୦୦୦ମସିହାରୁ ବିଟି ବାଇଗଣ ପରୀକ୍ଷା ନିରୀକ୍ଷା ଆରମ୍ଭହୋଇ କ୍ଷେତ୍ର ପରୀକ୍ଷା ମଧ୍ୟ କରାଗଲା । ଭାରତ ସରକାରଙ୍କ ଜେନେଟିକ୍ ଇଞ୍ଜିନିୟରିଂ ଆପ୍ରୁଭାଲ କମିଟିର ସାମୟିକ ନିଷ୍ପତ୍ତି ବିରୁଦ୍ଧରେ ଉଚ୍ଚ ନ୍ୟାୟାଳୟରେ ଏକାଧିକ ମକଦ୍ଦମା ମଧ୍ୟ କୃଷକ ସଙ୍ଗଠନମାନେ କଲେ । ମାତ୍ର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ସ୍ୱାମୀନାଥନଙ୍କ ଭଳି କୃଷି ବୈଜ୍ଞାନିକମାନଙ୍କର ଜିଏମ୍ ବିହନ ପ୍ରତି ଅହେତୁକ ଦରଦର ସୁଯୋଗ ନେଇ ୨୦୦୯ ଅକ୍ଟୋବର ୧୪ରେ ଜିଇଏସି ବିଟି ବାଇଗଣର ବ୍ୟବସାୟିକ ଚାଷ ପାଇଁ ଶେଷ ନିଷ୍ପତ୍ତି ଜଣାଇଦେଲେ । ବିଶିଷ୍ଟ ଜିନ୍ ବୈଜ୍ଞାନିକ ପୁଷ୍ପା ଭାର୍ଗବ ଏହାର ବିରୋଧ କରିଥିଲେ । କୃଷିମନ୍ତ୍ରୀ ଶରଦ ପାୱାର ଓ ବିଜ୍ଞାନ ଓ କାରିଗରୀ ମନ୍ତ୍ରୀ ପୃଥ୍ୱୀରାଜ ଚୌହାନ ବିଟି ସପକ୍ଷରେ ଦୃଢ଼ ଯୁକ୍ତି ଉପସ୍ଥାପନ କଲେ(ନିଉ ଇଣ୍ଡିଆନ୍ ଏକ୍ସପ୍ରେସ୍-ଜାନୁୟାରୀ୨୦୪ ୨୨) ।

୨୦୧୦ଜାନୁଆରୀ ପ୍ରଥମ ସପ୍ତାହରୁ କେନ୍ଦ୍ର ପରିବେଶ ମନ୍ତ୍ରୀ ଜୟରାମ ରମେଶ ବିଟି ବାଇଗଣ ସପକ୍ଷରେ ମତ ସଂଗ୍ରହ ପାଇଁ କଲିକତା, ନାଗପୁର, ଚଣ୍ଡୀଗଡ଼, ହାଇଦ୍ରାବାଦ, ଅହମ୍ମଦାବାଦ, ଭୁବନେଶ୍ୱର ଓ ବେଙ୍ଗାଲୁରରେ ଜନଶୁଣାଣି କଲେ । ସବୁଠାରେ ପ୍ରବଳ ବିରୋଧ ହେଲା । ମନ୍ତ୍ରୀଙ୍କ କଥା ଅନୁସାରେ ୮ହଜାର ଚାଷୀ, ଖାଉଟି, ବୈଜ୍ଞାନିକ, ବୁଦ୍ଧିଜୀବୀ, ବିହନ କମ୍ପାନୀ ଏହିସବୁ ଆଲୋଚନାରେ ଭାଗ ନେଇଥିଲେ । ମାତ୍ର ଏହି ସଂଖ୍ୟା ବାସ୍ତବରେ ୪୦ ହଜାରରୁ ଅଧିକ ହେବ । ପ୍ରତ୍ୟେକ ସ୍ଥାନରେ ବିଟି ବାଇଗଣର ଦୃଢ଼ ବିରୋଧ କରାଗଲା । ବେଙ୍ଗାଲୁରରେ କେତେକ କୃଷି ବୈଜ୍ଞାନିକ ମଧ୍ୟ ମନ୍ତ୍ରୀଙ୍କୁ ବାୟୋଟେକ୍ କମ୍ପାନୀର ଦଲାଲ ବୋଲି କହିବାକୁ ପଛେଇ ନଥିଲେ । ମନ୍ତ୍ରୀ ଉତ୍କ୍ଷିପ୍ତ ହୋଇ ବିକ୍ଷୋଭକାରୀଙ୍କୁ ପାଗଳ କହି ହଲ୍‌ରୁ ତଡ଼ିଦେବେ ବୋଲି ମଧ୍ୟ କହି ପକାଇଲେ । (ନିଉ ଇଣ୍ଡିଆନ୍ ଏକ୍ସପ୍ରେସ୍-୭/୨/୨୦୧୦)

ପ୍ରଥମରୁ ପରିବେଶମନ୍ତ୍ରୀ କହି ଚାଲିଥିଲେ 'ମୁଁ ଫେବୃୟାରୀ ୧୦ରେ ପ୍ରଧାନମନ୍ତ୍ରୀଙ୍କୁ ମୋ ରିପୋର୍ଟ ଦେବି । କ୍ୟାବିନେଟ୍ କମିଟିରେ ଆଲୋଚନା ହେବ । ସଂସଦରେ ବିତର୍କ ପରେ ଶେଷ ନିଷ୍ପତ୍ତି ନିଆଯିବ' । କେଉଁ ପରିସ୍ଥିତିରେ ନିର୍ଦ୍ଧାରିତ ସମୟର ଦିନକ ଆଗରୁ

ସେ ନିଷତ୍ତି ଶୁଣାଇଲେ ? ଜୟରାମ ରମେଶ ସ୍ୱୀକାର କରିଛନ୍ତି ଯେ ବିଟି ବାଇଗଣ ପାଇଁ ଆବଶ୍ୟକ ୩୦ଟି ପରୀକ୍ଷାରୁ ମାହିକୋ ମାତ୍ର ୮ଟି ପରୀକ୍ଷା କରିଛି। (ନିୟୁ ଇଣ୍ଡିଆନ୍ ଏକ୍ସପ୍ରେସ୍-ଫେବୃୟାରୀ ୧୫, ୨୦୧୦) ବାୟୋଟେକ୍ନୋଲୋଜି ସମ୍ପର୍କୀୟ ନିଷତ୍ତିକୁ ଅଧିକ ଆଇନାନୁମୋଦିତ କରିବା ପାଇଁ ପରିବେଶ ମନ୍ତ୍ରୀ ବାୟୋଟେକ୍ନୋଲୋଜି ଅଥରଟି ପାଇଁ କେନ୍ଦ୍ରକୁ ପରାମର୍ଶ ଦେଇଛନ୍ତି। (ହିନ୍ଦୁ-୧୦/୨/୨୦୧୦)

କେନ୍ଦ୍ର ସରକାର ବହୁରାଷ୍ଟ୍ରୀୟ ବିହନ କମ୍ପାନୀମାନଙ୍କୁ ସାହାଯ୍ୟ କରିବା ପାଇଁ ଆମେରିକା ନିକଟରେ ଅଙ୍ଗୀକାରବଦ୍ଧ। ଆମେରିକାର ବୈଦେଶିକ ମନ୍ତ୍ରୀ ହିଲାରୀ କ୍ଲିଣ୍ଟନ ଗତବର୍ଷ ଭାରତଗସ୍ତ ବେଳେ ପ୍ରଧାନମନ୍ତ୍ରୀ ଓ କୃଷିମନ୍ତ୍ରୀ ବିଟିବାଇଗଣ, ବିଟି ଫୁଲକୋବି ଓ ବିଟି ବିଲାତି ବାଇଗଣ ବିହନର ପ୍ରଚଳନ ପାଇଁ ଘୋଷଣା ମଧ୍ୟ କରିଛନ୍ତି। (ହିନ୍ଦୁ-ଜୁଲାଇ ୨୦,୨୦୦୯)। ଖବରକାଗଜ ଏହି ନିଷତ୍ତିରେ ପ୍ରତିକ୍ରିୟା ପ୍ରକାଶ କରି ଲେଖିଲେ- 'ତରବରିଆ ଭାବେ ଗୁଣସୂତ୍ର ପରିବର୍ତ୍ତିତ ବିହନକୁ ମଞ୍ଜୁରି ଦିଆନଯାଉ (ନିଉ ଇଣ୍ଡିଆନ ଏକ୍ସପ୍ରେସ୍-୨୫/୭/୨୦୦୯)। ୨୦୦୪ ମସିହାଠାରୁ ପ୍ରଧାନମନ୍ତ୍ରୀ, ତତ୍କାଳୀନ ରାଷ୍ଟ୍ରପତି ଓ କୃଷି ବୈଜ୍ଞାନିକ ସ୍ୱାମୀନାଥନ ଦ୍ୱିତୀୟ ସବୁଜ ବିପ୍ଳବ ବା ଜିନ୍ ବିପ୍ଳବ କଥା କହିଛନ୍ତି। ୨୦୧୦ ଜନରାଜ୍ୟଦିବସ ଅବ୍ୟବହିତ ପୂର୍ବରୁ ରାଷ୍ଟ୍ରପତି ଜାତି ଉଦ୍ଦେଶ୍ୟରେ ଭାଷଣ ଦେଇ ଦ୍ୱିତୀୟ ସବୁଜବିପ୍ଳବ କଥା ଦୋହରାଇଛନ୍ତି। ଦ୍ୱିତୀୟ ସବୁଜ ବିପ୍ଳବମାନେ ଜିନ୍ ବିପ୍ଳବ। କନଫେଡ଼େରସନ୍ ଅଫ୍ ଇଣ୍ଡଷ୍ଟ୍ରିଜ୍ (ସିଆଇଆଇ) ଓ ଅନ୍ୟାନ୍ୟ କର୍ପୋରେଟ ହାଉସମାନେ ବାରମ୍ବାର ଖାଲି ବିଟି ବାଇଗଣ ନୁହେଁ, ସମସ୍ତ ପ୍ରକାର ଜିଏମ୍ ବିହନ ବ୍ୟବହାର ପାଇଁ ସରକାରଙ୍କ ଉପରେ ଚାପ ପକାଉଛନ୍ତି। 'ଟୀନ୍ ଜିଏମ୍‌କୁ ସ୍ୱୀକୃତି ଦେଲାଣି। ଖାଦ୍ୟ ନିରାପତ୍ତା ପାଇଁ ଜିଏମ୍ ଫସଲ ଚାଷ ଏକମାତ୍ର ପନ୍ଥା' ଭଳି ଚେତାବନୀ। (ଇକୋନୋମିକ୍ ଟାଇମ୍ସ-ଫେବୃୟାରୀ ୧୦,୧୩, ୧୬, ୨୦,୨୦୧୦)। ଦେଶରେ ପୁଞ୍ଜିବାଦର ପୃଷ୍ଠପୋଷକତା କରୁଥିବା କେନ୍ଦ୍ର ସରକାରଙ୍କର ତାକତ୍ ନାହିଁ କମ୍ପାନୀ, ଶିଳ୍ପପତି ବା ସାମ୍ରାଜ୍ୟବାଦୀ ଆମେରିକାର ତାଗିଦକୁ ଏଡ଼େଇ ପାରିବା।

ବର୍ତ୍ତମାନ ଦେଶରେ ଖାଦ୍ୟପଦାର୍ଥ ଓ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ଅହେତୁକ ମୂଲ୍ୟବୃଦ୍ଧି। ଖାଦ୍ୟର ମୁଦ୍ରାସ୍ଫୀତି ୧୮ ପ୍ରତିଶତ ବୃଦ୍ଧି ହେଲାଣି। ସଂସଦର ବଜେଟ ଅଧିବେଶନ ଚାଲିଛି। ଦେଶରେ ନକ୍ସଲ ଓ ମାଓବାଦୀ ସମସ୍ୟା, ଆଭ୍ୟନ୍ତରୀଣ ନିରାପତ୍ତା ବିପନ୍ନ। ଏଣେ ଦେଶସାରା ଚାଷୀ ଖାଉଟି ବିଟି ବାଇଗଣକୁ ବିରୋଧ କରୁଛନ୍ତି। ବର୍ତ୍ତମାନ ବିବାଦୀୟ ବାଇଗଣକୁ

ମଞ୍ଜୁରୀ ଦେଇଦେଲେ ବିରୁଡ଼ି ବସାରେ ହାତ ମାରିବା ଭଳି ହେବ। ସଂସଦ ଭିତରେ ବିରୋଧୀଦଳ ହୁଲସ୍ଥୁଲ କରିବେ। ବାହାରେ ଚାଷୀମାନେ ସଂସଦ ଘେରାଉ କରି ବିକ୍ଷୋଭ କରିବେ। ବର୍ତ୍ତମାନ ପାଇଁ ବିଟି ବାଇଗଣ ପ୍ରଚଳନ ନିଷ୍ପତ୍ତି ସ୍ଥଗିତ ରଖିବାକୁ ପ୍ରଧାନମନ୍ତ୍ରୀ ଭିତିରି ସୂଚନା ପରିବେଶମନ୍ତ୍ରୀଙ୍କୁ ଦେଇଛନ୍ତି। ତେଣୁ ପରିବେଶମନ୍ତ୍ରୀ ତରବରିଆ ଭାବେ ଦିନକ ଆଗରୁ ନିଷ୍ପତ୍ତି ଶୁଣାଇଲେ।

ଚାଷୀ କାହିଁକି ବିଟି ବାଇଗଣକୁ ବିରୋଧ କରୁଛି। ଚାଷୀକୁ ପ୍ରତିବର୍ଷ କମ୍ପାନୀଠାରୁ ବିହନ କିଣିବାକୁ ପଡ଼ିବ। ବିହନର ଆକାଶଛୁଆଁ ଦର ଗୁଣ୍ଠେ ଜମିରେ ବିଟି ବାଇଗଣ ଚାଷ କରିବାକୁ ୨ହଜାର ଟଙ୍କାର ମଞ୍ଜି ଦରକାର ହେବ। ଛୋଟ ଓ ନାମମାତ୍ର ଚାଷୀ କିଣି ପାରିବେନି। ବଡ଼ ବଡ଼ ଚାଷୀ, କମ୍ପାନୀମାନେ ଠିକାଚାଷରେ ବିଟିବାଇଗଣ ଚାଷ କରିବେ। ବିଟି ବାଇଗଣରୁ ଜିନ୍ ଦେଶୀ ବାଇଗଣକୁ ସଂକ୍ରମିତ ହେବ। ଦେଶୀ ବିହନ ବୁଡ଼ିଯିବ। ବର୍ତ୍ତମାନ ବିଟି କପାରୁ ସଂକ୍ରମଣ ଯୋଗୁଁ ଜୈବିକ କପା ଆମେରିକା ଓ ୟୁରୋପୀୟ ୟୁନିଅନ୍ କିଣୁନାହାନ୍ତି। ମହାରାଷ୍ଟ୍ରର ବିଦର୍ଭରେ ଏହି ପରିସ୍ଥିତି ଉପୁଜିଛି। ବିହନ ପରୀକ୍ଷାକାରୀ ସଂସ୍ଥାମାନେ ସୋୟାବିନରେ ବିଟି ସଂକ୍ରମଣ ମଧ୍ୟ ଜାଣିପାରିଛନ୍ତି। ଭାରତରେ ଜିଏମ୍ ସୋୟା ଚାଷ ହୋଇନି। ବିଟିକପାରୁ ହିଁ ଏପ୍ରକାର ସଂକ୍ରମଣ ହୋଇଛି। (CERTID, International Certifying Agency)। ସରକାରୀ ଉଦ୍ୟମରେ ଦେଶୀ ବାଇଗଣ ବୁଡ଼ିଯିବା ନିଶ୍ଚିତ ହୋଇଯିବ।

ବିଟି ବାଇଗଣ ଚାଷଜମିରେ ଜଙ୍ଗଲି ଘାସ ମାଡ଼ିଯିବ। ଘାସ ମାରିବା ପାଇଁ ମନ୍‌ସାଣ୍ଟୋ ପ୍ରସ୍ତୁତ କରିଥିବା ରାଉଣ୍ଡଅପ୍ କୀଟନାଶକ ବ୍ୟବହାର କରିବାକୁ ହେବ। ଯେଉଁ ବୈଜ୍ଞାନିକମାନେ ଯୁକ୍ତି କରନ୍ତି ବିଟି ଜିନ୍ ଯୋଗୁଁ ବାଇଗଣରେ କାଣ୍ଡବିନ୍ଧା ପୋକ ଲାଗିବେ ନାହିଁ ସେମାନଙ୍କୁ ପ୍ରଶ୍ନ- ବିଟି କପାରେ ଆଜିବି ବୋଲଓର୍ମର ପ୍ରାଦୁର୍ଭାବ କାହିଁକି ? କାହିଁକି ଭାରତର କୀଟନାଶକ ବ୍ୟବହାରର ଅର୍ଦ୍ଧେକ କେବଳ କପାଚାଷୀମାନେ କରୁଛନ୍ତି ?

ଖାଉଟୀମାନେ ପ୍ରଶ୍ନକରନ୍ତି ଆମେରିକା, ବ୍ରିଟେନ, ଫ୍ରାନ୍ସଭଳି ଦେଶର ଲୋକମାନେ ଜିଏମ୍ ଖାଦ୍ୟ ଦ୍ରବ୍ୟ କାହିଁକି ବ୍ୟବହାର କରୁନାହାନ୍ତି ? ବୈଜ୍ଞାନିକମାନେ ପ୍ରମାଣ କରିଛନ୍ତି ବିଟି ବାଇଗଣ ଖାଇଲେ କ୍ୟାନସର, ଅନ୍ତଃନାଳୀରୁ ରକ୍ତସ୍ରାବ, ପକ୍ଷାଘାତ, ପୁରୁଷତ୍ୱହାନୀ ଓ ବନ୍ଧ୍ୟାତ୍ୱ ଭଳି ମାରାତ୍ମକ ରୋଗ ହେଉଛି। ବୈଜ୍ଞାନିକ ସେରାଲିନ୍‌ଙ୍କ ରିପୋର୍ଟ ଅନୁସାରେ ଛେଳିମାନେ ବିଟି ବାଇଗଣ ଖାଇବା ଦ୍ୱାରା ଯକୃତରେ କ୍ଷତ, ରକ୍ତହୀନତା ଦେଖାଯାଉଛି।

ବାଇଗଣକୁ ଗାଈମାନଙ୍କୁ (ଦୁଧିଆଳି) ଖୁଆଇଲେ କ୍ଷୀର ଉତ୍ପାଦନ ବୃଦ୍ଧିପାଉଛି । ଏହାଦ୍ୱାରା ବାଇଗଣରେ ହରମୋନ ପ୍ରଭାବଥିବା ପ୍ରମାଣ ମିଳୁନାହିଁ କି ? ମୂଷାମାନେ ଖାଇଲେ ଡାଇରିଆ ଏବଂ ଯକୃତରେ ଓଜନ ହାନୀ ଘଟୁଛି । ଶ୍ରୀମତୀ ଜୁଡ଼ି କାରମେନ, ସ୍ୱାସ୍ଥ୍ୟ ଏବଂ ପରିବେଶ ଗବେଷଣା ପ୍ରତିଷ୍ଠାନର ନିର୍ଦ୍ଦେଶକ ମାହିକୋର ଗବେଷଣାକୁ ସମାଲୋଚନା କରି କୁହନ୍ତି ପ୍ରଜନନ ପ୍ରକ୍ରିୟା ଉପରେ ବିଟି ବାଇଗଣର ପ୍ରତିକ୍ରିୟା ସମ୍ପର୍କରେ ତଥ୍ୟ ନାହିଁ । ସାଧାରଣଭାବେ ୧୮-୨୦ଟି ରକ୍ତ ନମୁନା ନେଇ ପରୀକ୍ଷା କରିବାର ଆବଶ୍ୟକତା ଥିଲାବେଳେ ମାତ୍ର ୬ଟି ରକ୍ତ ନମୁନାର ବାୟୋକେମିଷ୍ଟ୍ରି ମାପ ନିଆଯାଇଛି । ଜିଏମ୍ ପ୍ରୋଟିନ୍ ଶରୀର ଉପରେ କି' ପ୍ରକାର ବିଷକ୍ରିୟା ଘଟାଇଥାଏ, ଏ ତଥ୍ୟ ମଧ ନାହିଁ । ସର୍ବନିମ୍ନ ୧୦ବର୍ଷ ପରୀକ୍ଷାର ଆବଶ୍ୟକ ଥିଲାବେଳେ ମାତ୍ର ୩/୪ମାସର ପରୀକ୍ଷା ଖାଉଟିକୁ ଭୂଆଁ ବୁଲାଇବା ଛଡ଼ା ଅନ୍ୟ କିଛି ନୁହେଁ । ସ୍ୱାସ୍ଥ୍ୟ, ପରିବେଶ ଉପରେ ବିଟି ବାଇଗଣର ପ୍ରଭାବ ଜାଣିବା ପାଇଁ ୩୦ଗୋଟି ପରୀକ୍ଷା ଦରକାର ଥିଲାବେଳେ ମାହିକୋ ମାତ୍ର ୮ଟି ପରୀକ୍ଷା କରିଛି । (NIE Feb 15, 2010 ଜୟରାମ ରମେଶଙ୍କ ମନ୍ତବ୍ୟ ।)

ଆମଦେଶରେ ଜିଏମ୍ ବିହନ ବା ଖାଦ୍ୟର ପରୀକ୍ଷା ପାଇଁ ସରକାରୀ ଗବେଷଣାଗାର ନାହିଁ । ଯେଉଁସବୁ ଗବେଷଣା କଥା କୁହାଯାଉଛି, ସେସବୁ କମ୍ପାନୀ ଗବେଷଣାଗାରରେ କମ୍ପାନୀକୁ ସହିଲା ଭଳି । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ପୁଷ୍ପା ଭାର୍ଗବଙ୍କ ମତରେ କେନ୍ଦ୍ର ସରକାର ଉଚ୍ଚମାନର ଗୋଟିଏ ଗବେଷଣାଗାର ପ୍ରତିଷ୍ଠା ପାଇଁ ୫/୬ବର୍ଷ ସମୟ ଦରକାର କରିବେ । ପ୍ରଚଳିତ ବିହନ ଆଇନ-୧୯୬୮ କୁହେ ଗୋଟିଏ ପ୍ରକାର ନୂଆ ବିହନ ପଞ୍ଜିକୃତ ହେବାପୂର୍ବରୁ ୧୦ବର୍ଷର ପରୀକ୍ଷା ନିରୀକ୍ଷାର ପ୍ରମାଣ ଥିବା ଦରକାର । ମାତ୍ର ୪/୬ମାସର ପରୀକ୍ଷା ଏବଂ ଅସମ୍ପୂର୍ଣ୍ଣ ପରୀକ୍ଷାସତ୍ତ୍ୱେ ବିଟି ବାଇଗଣକୁ ବ୍ୟବସାୟିକ ଚାଷପାଇଁ ମଞ୍ଜୁରୀ ଦେବାପାଇଁ ଆମେରିକାର ଚାପ । ପରିବେଶ ମନ୍ତ୍ରୀଙ୍କ ସଦ୍ୟ ପ୍ରକାଶିତ ମତାମତରୁ ଜଣାଯାଏ ଧାନର ଜିଏମ୍ ବିହନ ପ୍ରଚଳନର ଆବଶ୍ୟକତା ଅଛି ଏବଂ ପ୍ରଧାନମନ୍ତ୍ରୀ ଏଥିପାଇଁ ଆଗ୍ରହୀ । (ET Feb 25-2010) ଖାଦ୍ୟ ନିରାପତ୍ତା ଆଇନ ଆଳରେ କେନ୍ଦ୍ର ସରକାର ଆମେରିକା ସହିତ ପୁଣି ଏକ ବୁଝାମଣା ପତ୍ର ସ୍ୱାକ୍ଷର କରିବା ପାଇଁ କ୍ୟାବିନେଟ ମିଟିଂରେ ସିଦ୍ଧାନ୍ତ ନେଇଛନ୍ତି । ଏହି ଚୁକ୍ତିରେ ଘରୋଇ କମ୍ପାନୀମାନେ ଭାରତରେ ଏଗ୍ରି ବିଜିନେସ୍ ପାଇଁ ମଞ୍ଜୁରି ପାଇବେ । ନୂତନ ଜ୍ଞାନକୌଶଳ, ନୂତନ ବିହନ, କୃଷିଜାତ ଦ୍ରବ୍ୟର ବେପାରରେ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀ ମାନଙ୍କର ପ୍ରତ୍ୟକ୍ଷ ଭୂମିକା ରହିବ । ଆମେରିକାର ବିହନ ରାକ୍ଷସ କାର୍ଗିଲ ଓ ମନ୍‌ସାଣ୍ଟୋର ପ୍ରତିନିଧି ଏହି ବୁଝାମଣା ପତ୍ର

କାର୍ଯ୍ୟକାରୀ କରିବା ପାଇଁ ଗଠିତ ବୋର୍ଡ଼ରେ ସ୍ଥାନପାଇବେ। (ହିନ୍ଦୁ-ଫେବୃୟାରୀ ୨୪, ୨୦୧୦, ପୃଷ୍ଠା-୧୨)। ବ୍ୟବସ୍ଥା କେଡ଼େ ଗମ୍ଭୀର ଏବଂ ଭାରତର କୃଷିକ୍ଷେତ୍ରକୁ ସମ୍ପୂର୍ଣ୍ଣଭାବେ ଆମେରିକା ହାତରେ ଟେକିଦେବା ପାଇଁ ସତେ ଯେପରି 'ଉପା' ସରକାର ବଦ୍ଧ ପରିକର; ଏହାର ସୂଚନା ମିଳିଲାଣି। ଚଳିତ ସଂସଦରେ ସରକାର ଚାଷୀ, ଖାଉଟି, ପରିବେଶବିତ୍ ଓ ବୁଦ୍ଧିଜୀବୀମାନଙ୍କ ପାଟି ବନ୍ଦ କରିବା ପାଇଁ 'ବାୟୋଟେକ୍ନୋଲୋଜି ରେଗୁଲେଟାରି ଅଥରିଟି ଅଫ୍ ଇଣ୍ଡିଆ' (BRAI) ବିଲ୍ ଆଣିବା ପାଇଁ ଉଦ୍ୟମ କରୁଛନ୍ତି। ଏହା ଏକ ଡ୍ରାକୋନିୟାନ୍ ବିଲ। ବିଲ୍‌ରେ ପରିଷ୍କାର ଉଲ୍ଲେଖ ଅଛି ଜଣେ ସାଧାରଣ ନାଗରିକ ଆଉ ଜିଏମ୍ ବିହନ, ବିଟି ବିହନ ବା ଜୈବ ପ୍ରଯୁକ୍ତି ବିଦ୍ୟା ସମ୍ପର୍କରେ କୌଣସି ପ୍ରକାର ପ୍ରଶ୍ନ ଉଠାଇପାରିବ ନାହିଁ। ଏଭଳି କଲେ ୬ମାସରୁ ୧ ବର୍ଷ ପର୍ଯ୍ୟନ୍ତ ଜେଲ୍‌ଦଣ୍ଡ ଏବଂ ୨ ଲକ୍ଷଟଙ୍କା ଜୋରିମାନା ଦେବାକୁ ପଡ଼ିବ। ସ୍ୱାଧୀନ ଦେଶର ସରକାର ଲୋକଙ୍କୁ କେତେ ଭୟ କରୁଛନ୍ତି- ଏହି ସୂଚନା ଏଥିରୁ ମିଳୁନାହିଁ କି ? ପୁଣି ବିଲ୍‌ରେ ବ୍ୟବସ୍ଥା ଅଛି ଗବେଷଣା, ମଞ୍ଜୁରୀ ଏବଂ ଜିଏମ୍ ବିହନ ବା ଖାଦ୍ୟ ସମ୍ପର୍କିତ ସୂଚନା ସୂଚନା ଅଧିକାର ଆଇନ ପରିସରଭୁକ୍ତ ହେବନାହିଁ। କୃଷି ଓ କୃଷକଙ୍କ ସର୍ବନାଶ ପାଇଁ ଏହା କେନ୍ଦ୍ର ସରକାରଙ୍କର ଏକ ଜରୁରୀକାଳୀନ ନିଷେଧାଜ୍ଞା ନୁହେଁ କି ? (New Indian Express- Feb 26, 2010 ପ୍ରଥମ ପୃଷ୍ଠା)। ଖାଲି ବିଟିବାଇଗଣ ନୁହେଁ, ଏହି ଆଇନବଳରେ ସମସ୍ତ ଜିଏମ୍ ଫସଲ ପାଇଁ ରାସ୍ତା ପରିଷ୍କାର ହୋଇଯିବ। ବିହନ, ସାର, କୀଟନାଶକ, ଖାଦ୍ୟଶସ୍ୟ ବେପାରରୁ ବର୍ଷକୁ ୪୦ଲକ୍ଷ କୋଟି ଟଙ୍କାର ଲାଭ। କମ୍ପାନୀମାନଙ୍କ ପାଟିରୁ ଲାଳ ବୋହୁଛି। ଦେଶର ସର୍ବୋଚ୍ଚ ଶାସକଙ୍କଠାରୁ ଆରମ୍ଭ କରି କୃଷିମନ୍ତ୍ରୀ, ବିଜ୍ଞାନମନ୍ତ୍ରୀ, ପ୍ରଶାସନକୁ କିପରି ପ୍ରଭାବିତ କରାଯାଇପାରିବ ସେ କୌଶଳ କ'ଣ କମ୍ପାନୀମାନଙ୍କୁ ଜଣାନାହିଁ। କେବଳ ମନ୍‌ସାଣ୍ଟୋ କମ୍ପାନୀ ଶାସକ ଗୋଷ୍ଠୀଙ୍କୁ ପ୍ରଭାବିତ କରିବା ପାଇଁ ତା'ର ବାର୍ଷିକ ବଜେଟ୍‌ରେ ୪୦ହଜାର କୋଟି ଟଙ୍କାର ବ୍ୟବସ୍ଥା ରଖିଥାଏ।

୧୧ଟି ରାଜ୍ୟ ବିଟି ବାଇଗଣକୁ ବିରୋଧ କରିଥିବା କୁହାଯାଉଛି। ଏକ ମାତ୍ର କେରଳ ଏଥିପାଇଁ ବିଧେୟକ ଆଣିଛି ଏବଂ ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ସମସ୍ତ ପ୍ରଶାସନିକ ଅଧିକାରି ଖାଲି ବିଟି ବାଇଗଣ ନୁହେଁ, କୌଣସି ପ୍ରକାର ଜିଏମ୍ ବିହନ ବା ଖାଦ୍ୟ କେରଳରେ ପୁରାଇ ଦେବେନାହିଁ ବୋଲି ଦୃଢ଼ ସଂକଳ୍ପ ନେଇଛନ୍ତି। ଓଡ଼ିଶାରେ ସେପରି ଏକ ଦୃଢ଼ ପଦକ୍ଷେପ ନିଆଯିବାର ଜରୁରୀ ଆବଶ୍ୟକତା ଅଛି। ନହେଲେ ବିଟି କପା ଭଳି ଅନ୍ୟାନ୍ୟ ଜିଏମ୍ ବିହନ ମାଡ଼ିଆସିବ। ଚାଷ ଓ ଚାଷୀକୁ ଏହି ଆସନ୍ନ ବିପଦରୁ ରକ୍ଷା ପାଇଁ ବିକଳ୍ପ ଚିନ୍ତା କରିବାର ସମୟ ଆସିଛି।

**ବିକଳ୍ପ**

୧) ମନ୍‌ସାଣ୍ଟୋ ଭାରତ ଛାଡ଼ିବା ପାଇଁ କେନ୍ଦ୍ର ସରକାରଙ୍କ ଉପରେ ଚାପ ପକାଇବା।

୨) ରାଜ୍ୟ ସରକାର ଜିଏମ୍ ବିହନ ଓ ଖାଦ୍ୟ ରାଜ୍ୟରେ ପ୍ରଚଳନକୁ ନିଷିଦ୍ଧ କରିବା ପାଇଁ ଆଇନ ପ୍ରଣୟନ କରିବା।

୩) ସମସ୍ତ ଶସ୍ୟ, ପନିପରିବା ଓ ତୈଳବୀଜର ପାରମ୍ପରିକ ବିହନ ପୁନଃ ପ୍ରଚଳନ ପାଇଁ ଯୁଦ୍ଧକାଳୀନ ଭିତ୍ତିରେ ରାଜ୍ୟ କୃଷିବିଭାଗ କାର୍ଯ୍ୟକ୍ରମ ଗ୍ରହଣ କରିବା।

୪) ଖାଦ୍ୟ ନିରାପତ୍ତା ନାଁରେ ଜିଏମ୍ ବିହନ, ସାର ଓ କୀଟନାଶକ ମାଗଣା ବା ରିହାତି ମୂଲ୍ୟରେ ଚାଷୀକୁ ବିତରଣ ବ୍ୟବସ୍ଥାରେ ଅଙ୍କୁଶ ଲଗାଇବା।

୫) ବିଟି ବାଇଗଣ ମଞ୍ଜି କମ୍ପାନୀମାନେ ପ୍ରସ୍ତୁତ କରି ବଜାରକୁ ଛାଡ଼ିବା ମତଲବରେ ଅଛନ୍ତି। ବିହନ ନା ବିହନ। ବିହନରୁ ତ ବିଟି, ଜିଏମ୍ ଜାଣିହେଉନି। କେନ୍ଦ୍ର କୃଷିମନ୍ତ୍ରୀ ମଧ୍ୟ ଚିନ୍ତିତ ବିହନ ବିକ୍ରି ନହେଲେ କମ୍ପାନୀମାନେ ବହୁ କ୍ଷତି ସହିବେ। ଆମେ ଦାବୀ କରୁଛୁ ଏପ୍ରକାର ବିହନକୁ ସମ୍ପୂର୍ଣ୍ଣ ନଷ୍ଟ କରିବାପାଇଁ କେନ୍ଦ୍ର ସରକାର ତୁରନ୍ତ ପଦକ୍ଷେପ ନିଅନ୍ତୁ।

୬) ନିରନ୍ତର କୃଷିର ପୁନଃ ପ୍ରଚଳନ କରି ଦେଶର ଖାଦ୍ୟ ନିରାପତ୍ତା ନିଶ୍ଚିତ କରାଯାଉ।

ଚାଷୀମାନଙ୍କ ପାଇଁ ୨ଟି ରାସ୍ତା। କମ୍ପାନୀ ବିହନ, ପ୍ରଚଳିତ ସରକାରୀ କୃଷିବ୍ୟବସ୍ଥା ଗ୍ରହଣ କରି ମରିବେ ନାଁ ବିହନ ବିପ୍ଳବ ଗଢ଼ିତୋଳି ବିହନର ସାର୍ବଭୌମ ଅଧିକାର ନିଜ ହାତକୁ ଆଣି ସୁଖ ସମୃଦ୍ଧିର ଭବିଷ୍ୟତ ଗଢ଼ିବେ। ଏହି ବିପ୍ଳବ ଚାଷୀମାନଙ୍କ ପାଇଁ ଦ୍ୱିତୀୟ ସ୍ୱାଧୀନତା ବିପ୍ଳବ ହେବ। ଅନ୍ୟଥା ଆଗକୁ ଜଳ ଜଳ ଦିଶୁଛି। ଗଣତନ୍ତ୍ରର ଦୁହାଇ ଦେଇ ନିର୍ବାଚିତ ସରକାରଗୁଡ଼ାକ ଚାଷୀ ଓ ଚାଷକୁ ଖତମ କରିଦେବ। କୃଷିକ୍ଷେତ୍ରରେ କମ୍ପାନୀରାଜ ନିଶ୍ଚିତ ହୋଇଯିବ। ନିଜେ ନମଲେ ସ୍ୱର୍ଗ ଦେଖିହୁଏନି। ମରିବାକୁ ଆଗେଇ ଆସିପାରିଲେ ସାମ୍ରାଜ୍ୟବାଦୀ ଆମେରିକାର କୃଷି ଓ କୃଷକ ଉପରେ ଯେଉଁ ଆକ୍ରମଣ ଚାଲିଛି ତାହାକୁ ପ୍ରତିହତ କରିହେବ। ଇତିହାସରେ ଏଥିପାଇଁ ବହୁ ନଜିର ରହିଛି।



# ଡାଲିର ରାଜନୈତିକ ଅର୍ଥନୀତି

'ଭାତ ଡାଲି ତରକାରି-ଆଉ ସବୁ ସରକାରୀ।' ଓଡ଼ିଶାର ଗାଁ ଗହଳରେ ଏକଥାଟି ଲୋକମାନଙ୍କ ପାଖରେ ବେଶ୍ ପରିଚିତ। ଓଡ଼ିଶା ତ' ଧାନର ଜନ୍ମସ୍ଥାନ। ଅଷ୍ଟାଦଶ ଶତାବ୍ଦୀ ଶେଷପର୍ଯ୍ୟନ୍ତ ଓଡ଼ିଶାବାସୀ ଭାତର ଅଭାବ କେବେବି ଅନୁଭବ କରିନଥିଲେ। ଉପନିବେଶ ଶାସନକାଳରେ ଜମିଦାରୀ, ମକଦ୍ଦମି ଆଇନ ପ୍ରଚଳନ ଯୋଗୁଁ ସ୍ୱଳ୍ପସଂଖ୍ୟକ ପଇସାବାଲା ଲୋକଙ୍କ ପାଖରେ ଜମି ଠୁଳ ହେଲା। ସାଧାରଣ ମଣିଷ ପାଇଁ ଜମି ଉପରେ ମାଲିକାନା ବିପର୍ଯ୍ୟସ୍ତ ହେଲା। ପରବର୍ତ୍ତୀ ସମୟରେ ରାଜ୍ୟରେ ଧାନ ଅର୍ଥାତ ଭାତଥିଲେ ମଧ୍ୟ ଲୋକେ ଖାଦ୍ୟସଙ୍କଟର ମୁକାବିଲା କରିବାକୁ ବାଧ୍ୟ ହେଲେ।

ଆଲୋଚ୍ୟ ବିଷୟ ଡାଲି। ଶରୀରର ପୁଷ୍ଟି ପାଇଁ ଶ୍ୱେତସାର, ପୁଷ୍ଟିସାର, ସ୍ନେହସାର (ଚର୍ବିଜାତୀୟ), ଭିଟାମିନ, ଖଣିଜଲବଣ ଓ ଜଳ ଦରକାର। ଏକଥା ଅନୁଭବରୁ ସେ କାଳର ମଣିଷ ଜାଣିଥିଲେ। ଭାତରୁ ଯଥେଷ୍ଟ ଶ୍ୱେତସାର ମିଳେ, ଯାହା କାମ କରିବାକୁ ଶକ୍ତି ଯୋଗାଏ। ଏଥିସହିତ ଭାତରେ ଥିଆମିନ୍, ରିବୋଫ୍ଲାବିନ୍, ନିଆସିନ ଓ ମେଥିଓନାଇନ ଭଳି ଉପାଦେୟ ଖାଦ୍ୟ ପୋଷକସହ ଯଥେଷ୍ଟ ତନ୍ତୁଜାତୀୟ ପଦାର୍ଥ ମଧ୍ୟ ଥାଏ। ନାଲି ଓ ଧୂସର ରଙ୍ଗର ଅକାଣ୍ଡିଆ ଢିଙ୍କିକୁଟା ଚାଉଳରେ ଲୌହ, ଦସ୍ତା ଓ ତନ୍ତୁ ଜାତୀୟ ପଦାର୍ଥ ଭରପୁର ଥାଏ। ମାତ୍ରା କମ୍ ହେଲେ ମଧ୍ୟ ଭାତରେ ପୁଷ୍ଟିସାର(୬.୮ ପ୍ରତିଶତ) ଥାଏ। ଆମ ଶରୀର ପାଇଁ ଆବଶ୍ୟକ ପଡୁଥିବା ଶକ୍ତିର ୨୭ ପ୍ରତିଶତ ଏବଂ ପୁଷ୍ଟିସାର ୨୦ପ୍ରତିଶତ ଆମେ ଭାତରୁ ପାଇଥାଉ।

ଶରୀର ଅନ୍ନମୟ ପିଣ୍ଡ। ଅନ୍ନ ବିହୁନେ ହଂସା ହାନି, ଯଜ୍ଞ ସାଧିବି କାହା ଘେନି। ଭାତସାଙ୍ଗକୁ ଡାଲି, ତରକାରି ଓ ମାଛ ଓଡ଼ିଶାରେ ପ୍ରାୟ ଲୋକ ଆଗେ ଖାଉଥିଲେ। ବିଲେଇ ଡେଇଁ ପାରିବନି ଥାଳିଏ ଭାତ, (୩୦୦ଗ୍ରାମ ଚାଉଳର ଭାତହେବ) (ଆଜିର ଷ୍ଟେନ୍‌ଲେସ୍ ଷ୍ଟିଲ୍ ପ୍ଲେଟର ୩ଗୁଣ ଆକାର ଗୋଟିଏ କଂସା ଥାଳି), ବେଲାଏ

ମୁଗଡାଲି(ବେଲାଏ ବହଳିଆ ଡାଲିର ଆୟତନ ୭୦୦/୮୦୦ମିଲିଲିଟର ହେବ) ଓ ୪/୫ଠାଆ ପନିପରିବା ତରକାରି, ଶାଗ(ପ୍ରାୟ ଦିନ), ମାଛ (ବେଳେବେଳେ) ସକାଳେ ରାତିରେ ୨ଥର ଲୋକେ ଖାଇବାକୁ ପାଉଥିଲେ। ବିଲବାଡ଼ିକୁ କାମକୁ ଯିବା ଆଗରୁ କଂସାଏ ପଖାଳ ଭାତ, ଶିଝା ମୁଗଡାଲିରେ ଟିକେ ସୋରିଷତେଲ ପକାଇ ଗୋଟିଏ ଲଙ୍କା ଚକଟିଦେଲେ ବେଶ୍ ଲାଗୁଆଣି ହେଲା। ଖାଉଥିଲେ। ତିନିଥର ଦିନକୁ ଖୋରାକି।

ସକାଳୁ ପଖାଳ ଖାଇ ବିଲକୁ ହଳ ଯୋଚୁଥିଲେ। ଦ୍ୱିପ୍ରହର ବେଳକୁ ହଳ ଫିଟାଉଥିଲେ। ୫/୬ଘଣ୍ଟାରେ ୧୫/୨୦ଗୁଣ୍ଠ ବିଲ ଗହୀରା ଚାଷ। ଟ୍ରାକ୍ଟରରେ ଆଜି ସେତିକି ଜମି ଚାଷପାଇଁ ୨୦୦/୨୫୦ଟଙ୍କା ଖର୍ଚ୍ଚ। ମାଟି ହାଣୁଥିବେ ତ ହାଣୁଥିବେ। ଲଗାତାର ୫/୬ଘଣ୍ଟା। ସତେଯେପରି କାଳିଶୀ ଲାଗିଛି। ଆମ ଦେଶୀ ଖାଦ୍ୟର ଏ କରାମତି। ମୁଗଡାଲିରେ ପୁଷ୍ଟିସାର ଭରପୁର। ଶତକଡ଼ା ୨୩.୫ପ୍ରତିଶତ ପୁଷ୍ଟିସାର। ୧.୮ପ୍ରତିଶତ ସ୍ନେହସାର। ସେଇଥିପାଇଁ ଡାଲିକୁ ଗରିବ ଲୋକର ମାଂସ (Poor man's meat) ବୋଲି କୁହାଯାଏ। ସେତେବେଳେ ନଈରେ ବଢ଼ି ଆସୁଥିଲା। କୀଟନାଶକ ବିଷର ରାଜତ୍ୱ ଆରମ୍ଭ ହୋଇନଥିଲା। ନଈ, ପୋଖରୀ, ଖାଲ, ଖମଣା, ନାଳ, ପାଟ ଓ ଜମିରୁ ଯଥେଷ୍ଟ ମାଛ ଗାଁ ଲୋକମାନେ ପାଉଥିଲେ। ସରକାରଙ୍କ ନିୟନ୍ତ୍ରଣ ନଥିଲା। ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ମାଛ ଧରିପାରୁଥିଲେ। କୃଷିଶ୍ରମିକ, ତଫସିଲଭୁକ୍ତ ଜାତି ଓ ଭୂମିହୀନ ପରିବାରମାନେ ଜମିମାଲିକ ପାଖେ କାମକରି ଧାନ ମଜୁରୀରେ ନେଉଥିଲେ। ମୁଗ, ବିରି, କୋଳଥ ଉପାଡ଼ି ମଜୁରି ପାଇଁ ୪ଭାଗରେ ଭାଗେ ଅଟା ନେଉଥିଲେ। ବିଲବାଡ଼ିରୁ ଯଥେଷ୍ଟ ଶାଗ, ଫଳମୂଳ ସଂଗ୍ରହ କରିପାରୁଥିଲେ। ବଳିଲା ଭଳି ସ୍ୱାସ୍ଥ୍ୟ।

ମୁଗ, ବିରି, କୋଳଥ, ବରଗୁଡ଼ି, ମଟର, ଚଣା, ବୁଟ, କାବୁଲିବୁଟ, ଖେସାରି ଭଳି ଫସଲକୁ ଡାଲିଜାତୀୟ ଫସଲ କୁହାଯାଏ। ପାପିଲିଓନେସି (Papilionaceas) ବା ମଟର ବଂଶରୁ ଏତେ ପ୍ରକାର ଅଲଗା ଅଲଗା ପ୍ରଜାତି ଜନ୍ମ ନେଇଛନ୍ତି। ଡାଲିଜାତୀୟ ଫସଲରେ ପୁଷ୍ଟିସାର (Protein) ମାତ୍ରା ଖୁବ୍ ଅଧିକ। ଆଜି ତ ବଜାରରେ ଭଜାମୁଗ ଡାଲି ସ୍ୱପ୍ନ। ପାଗ ଯୋଗରେ ମୁଗ ଭାଜି ସେକାଳର ମା', ବୁଢ଼ୀମାନେ ଗାଢ଼ ହଳଦିଗଣ୍ଡି ରଙ୍ଗର ମୁଗଡାଲି ରାନ୍ଧୁଥିଲେ। ସେଭଳି ଡାଲି ବେଲାଏ ଆଜି ଆଖିରେ ପଡ଼ିଲେ ଲୋଭ ଲାଗିବ। ପାଟି ଓଦା ହୋଇଯିବ। ବେଲାଏ ଡାଲିମାନେ ଖୁବ୍ କମ୍‌ରେ ୨୦୦ଗ୍ରାମ ଶୁଖିଲା ଡାଲିରୁ ତିଆରି। ନୟାଗଡ଼ ମୁଗ, ବାଣପୁର ସୁନାମୁଗ, ଝାଇଁମୁଗ, ଢେଙ୍କାନାଳର କଳାମୁଗ,

■ *ଆଉ କେତେ ବିଷ ପିଇଲେ ଚେତିବା... !*

ବରଗଡ଼ର ପାଇକମାଳ ମୁଗ, ମେଥିମୁଗ ଏହିପରି ଜାତି ଜାତିକା ଦେଶୀ ମୁଗ ସେତେବେଳେ ଚାଷ ହେଉଥିଲା।

ବରଗଡ଼ର ନୃସିଂହନାଥ ମନ୍ଦିରରେ ଗୋଟାମୁଗ ଡାଲି ଓଳିରେ ବକ୍ରି ହୁଏ। ଖୁବ୍ ସୁଆଦିଆ। ଗରାଖଙ୍କ ଧାଡ଼ି ଲାଗେ। ମୁଗ ଡାଲମା, ସଜନାଶାଗରେ ଦରଶିଝା ମୁଗ, ମୁଗ ପୁରଦେଇ ମଣ୍ଡାପିଠା, ଗଜାମୁଗ, ଗୁଡ଼, ନଡ଼ିଆ, ମୁଗ କାନ୍ତି, ମୁଗରେ ଲଡ୍ଡୁ, ଆନ୍ଧ୍ରରେ ମୁଗ ଚକୁଳି (ପ୍ରେସ୍‌ରେଟ୍), ମୁଗ ଏଣ୍ଡୁରି, ମୁଗ ବାଟି ବରା ତରକାରି ଏମିତି ନାନା ଜାତିର ପିଠା ମଧ୍ୟ ମୁଗରୁ ତିଆରି ହେଉଥିଲା। ଅରୁଆଚାଉଳ, ଭଜାମୁଗ ଡାଲି, ଟିକେ ନଡ଼ିଆକୁ ରାନ୍ଧି ଖେଚୁଡ଼ି ତିଆରି କରାଯାଏ। ଦେଶୀ ଗୁଆଘିଅ ଟିକେ ପକାଇ ଖାଇଲେ ଗୋଟିଏ ମିଲ୍‌ର ଧାପ ଦବ।

ବିରି ଆମେ ଡାଲିରେ କମ୍ ଖାଉ। ଉତ୍ତର ଭାରତରେ ବିରିଡାଲିରେ ଡେକା କରନ୍ତି। ବିରି ଖେଚୁଡ଼ି ବି କରାଯାଏ। ବିରି ପିଠାପାଇଁ ବେଶୀ ଚାହିଦା, ବିରି ଚକୁଳି, ଦୋଶା, ସରୁଚକୁଳି, ବିରି ପୋଡ଼ପିଠା ଏମିତି ନାନା ଜାତିର ପିଠା ଓଡ଼ିଶା ଘରେ ପ୍ରାୟ ମାସକେ ୧୫/୨୦ଦିନ ଥିଲା। ଏବେ ତ ଫାଷ୍ଟଫୁଡ୍ ରାଜତ୍ୱ ଚାଲିଲା। 'ମାଗି' ଖାଇବା ଛାଡ଼ି ଲାଗିଖାଉଛି କିଏ ? ବିଷ ଖାଅ। ମୋଟା ହୁଅ। ରକ୍ତଚାପ, ବହୁମୂତ୍ର, କର୍କଟ କେତେ ଯେ ରୋଗ। ଫାଷ୍ଟଫୁଡ୍‌ର କରାମତି। ଖାଇବ ରୋଗ ହବ। ଔଷଧ ଖାଇବ। କମ୍ପାନୀ ଏକ। ଆମେସବୁ କମ୍ପାନୀ ପୋଷକ। ସହରଠାରୁ ଗାଁ ପର୍ଯ୍ୟନ୍ତ ଫାଷ୍ଟଫୁଡ୍ ସାମ୍ରାଜ୍ୟ ଲମ୍ୱିଯାଇଛି। ଚୁରିବ, ବାଟିବ, ପଲମରେ ପକାଇବ। ଆମ ଗୃହିଣୀମାନଙ୍କୁ ବେଳ କାହିଁ। ରାଜ୍ୟ ବା କେନ୍ଦ୍ର ସରକାରଙ୍କୁ ସୁବିଧା। ଡାଲି ପାଇଁ ତ ଆଉ ପାଟି ବେଶୀ ହବନି।

ସତୁରୀ ଦଶକରେ ସବୁଜବିପ୍ଳବର ରାଜତ୍ୱ ଆରମ୍ଭ ହୁଏ। ସବୁଜବିପ୍ଳବ ପୂର୍ବରୁ ଅର୍ଥାତ ୧୯୬୫-୭୦ ପର୍ଯ୍ୟନ୍ତ ଆମ ଦେଶରେ ନିରନ୍ତର କୃଷିର ଯୁଗ ଥିଲା। ଓଡ଼ିଶାରେ ୧୯୭୦ପର୍ଯ୍ୟନ୍ତ ମୁଣ୍ଡପିଛା ଡାଲି ଖର୍ଚ୍ଚ(ମୁଖ୍ୟତଃ ମୁଗ ଡାଲି) ୧୧୨ଗ୍ରାମ ଥିଲା। ସେହି ସମୟକୁ ଜାତୀୟସ୍ତରରେ ମୁଣ୍ଡପିଛା ଡାଲି ଖର୍ଚ୍ଚ ୫୭ ଗ୍ରାମ ଥିଲା। ୨୦୧୦-୧୧ବର୍ଷ ଜାତୀୟସ୍ତରରେ ଖାଦ୍ୟ ଉତ୍ପାଦନ ୨୩୫.୮୮ନିୟୁତ ଟନ୍ ହୋଇଥିଲାବେଳେ ଡାଲିର ଉତ୍ପାଦନ ରେକର୍ଡ଼ ୧୭.୨୯ନିୟୁତ ଟନ୍ ହୋଇଥିବା କେନ୍ଦ୍ର କୃଷି ବିଭାଗ ଜଣାଇଛନ୍ତି। (Rich Harvest-New Indian Express, Dt.7.4.2011, P-13)। ଡାଲି ଜାତୀୟ ଫସଲର ଉତ୍ପାଦନ ମୋଟ ଖାଦ୍ୟଶସ୍ୟ ଉତ୍ପାଦନର ୭.୪୫ ପ୍ରତିଶତ। ଡାଲିଜାତୀୟ

ଫସଲରେ ବିରି, କୋଳଥ, ଚଣା ମୁଖ୍ୟତଃ ଗୋଖାଦ୍ୟଭାବେ ଆଜିକାଲିର ବିଦେଶୀ ଗାଈଙ୍କ ଖାଦ୍ୟ ପାଇଁ ବ୍ୟବହାର ହେଉଛି । ମୋଟ ଉତ୍ପାଦନର ଦୁଇ-ତୃତୀୟାଂଶ ମଣିଷ ଖାଉଥିବା ବେଳେ ଆଉ ୧/୩ଅଂଶ ଗୋରୁ, ଗାଈ, ମଇଁଷି, ଘୁଷୁରି ଓ କୁକୁଡ଼ା ପ୍ରଭୃତି ଖାଉଛନ୍ତି । ଅବଶ୍ୟ ସେମାନେ ଦେଶର ୫/୧୦ପ୍ରତିଶତ ପଇସାବାଲାଙ୍କ ଟେବୁଲ ପାଇଁ ଦାମିକା ଖାଦ୍ୟ ଯୋଗାଇଥାନ୍ତି । ୧୨୧କୋଟି ଲୋକଙ୍କ ପାଇଁ ପ୍ରାୟ ୧୨ନିୟୁତ ମେଟ୍ରିକ୍ ଟନ୍ ଡାଲି । ମୁଣ୍ଡପିଛା ପଡ଼ିଲା କେତେ ?

ମୁଣ୍ଡପିଛା ୨୨ଗ୍ରାମ ପଡ଼ିଲା । ଭାରତ ପୃଥିବୀର ସବୁଠାରୁ ଅଧିକ ଡାଲି ଉତ୍ପାଦନକାରୀ ଦେଶ । ଡାଲି ରପ୍ତାନି ଉପରେ ନିଷେଧାଦେଶ ଜାରି କରିବା ସହିତ ବିଦେଶରୁ ୨୦୧୧-୧୨ବର୍ଷ ପାଇଁ ୩.୪ନିୟୁତ ଟନ୍ ଡାଲି ଆମଦାନୀ କରିବା ପାଇଁ ଡାଲି ରପ୍ତାନୀକାରି ଦେଶମାନଙ୍କ ସହିତ ଆମେ ଚୁକ୍ତି କରିଛୁ । କାନାଡ଼ା ଓ ଅଷ୍ଟ୍ରେଲିଆରୁ ଜିଏମ୍ ଡାଲି, କାନାଡ଼ାରୁ ହଳଦିଆ ମଟର (Yellow pea), କିଲୋ ୧୬ ଟଙ୍କାରେ ଆମେ କାନାଡାରୁ କିଣୁଛୁ । ବଜାରରେ ସେ ହରଡ଼ ଡାଲି ପାଲଟି ଯାଉଛି । କିଲୋ ୭୦/୯୦ ଟଙ୍କାରେ ବିକ୍ରି ହେଉଛି । ବେସନ ତିଆରିରେ ବୁଟ ଡାଲି ପରିବର୍ତ୍ତେ ଏହି ହଳଦିଆ ମଟର ମିଶୁଛି, ସବୁଠି ଲାଭ କଥା । ବଜାର ଅର୍ଥନୀତିର ମୂଳଲକ୍ଷ୍ୟ । ସରକାରଙ୍କ ସହାୟତାରେ କମ୍ପାନୀମାନେ ଆମ ଖାଉଟୀଙ୍କୁ ଲୁଟୁଛନ୍ତି । ବାଣିଜ୍ୟେ ବସତି ଲକ୍ଷ୍ମୀ- ବେପାରୀମାନଙ୍କ ମୂଳମନ୍ତ୍ର । ମ୍ୟାଁମାରରୁ ହରଡ଼ ଡାଲି ଆମେ ଆମଦାନୀ କରୁଛେ । ଆମ ସରକାରଙ୍କର ଗୋଟିଏ କୃଷ ବିଭାଗ ଅଛି ଏବଂ ଆମର ଚାଷ ଜମିର ପରିମାଣ ୧୪୨୮.୨ଲକ୍ଷ ହେକ୍ଟର ଏବଂ ଡାଲିଚାଷର ଜମି ପରିମାଣ ପୃଥିବୀରେ ସର୍ବାଧିକ । ତଥାପି ଆମର ଡାଲି ସଙ୍କଟ । (India Year Book-2001-Agriculture Page-370)

ଜାତୀୟସ୍ତରରେ ଡାଲି ଜାତୀୟ ଫସଲ ଚାଷର ବାର୍ଷିକ ଅଭିବୃଦ୍ଧି ହାର (କ୍ଷେତ୍ରଫଳ, ଉତ୍ପାଦନ)ର ଏକ ଉଦ୍‌ବେଗଜନକ ସ୍ଥିତିର ଚିତ୍ର ନିମ୍ନ ସାରଣୀରୁ ଜାଣିହେବ । ( ସାରଣୀ-୧ ଦ୍ରଷ୍ଟବ୍ୟ)

ରାସାୟନିକ କୃଷି ଓ ଅର୍ଥକାରୀ ଫସଲ ଚାଷପାଇଁ କାର୍ଗିଲ, ୱାଲମାର୍ଟ, ରିଲାଏନ୍ସ ଭଳି ବଡ଼ ବଡ଼ କମ୍ପାନୀଙ୍କୁ କେନ୍ଦ୍ର ସରକାର ସବୁଜ ସଙ୍କେତ ଦେଇଥିବାର ଫଳ ୨୦୧୧-୧୨ ଆର୍ଥିକ ବର୍ଷ ଏକ ଲକ୍ଷ ହେକ୍ଟର ଜମିରେ ଖାଦ୍ୟଶସ୍ୟ ଚାଷ ପରିବର୍ତ୍ତେ କପାଚାଷ କରାଯିବା ପାଇଁ ଯୋଜନା କରାଯାଇଛି । ତେଣୁ ଡାଲିଚାଷ ପାଇଁ ଜମି ପରିମାଣ କ୍ରମାଗତ

କମିଯିବାରେ ଏବଂ ଉଦ୍‌ବେଗଜନିତ ଭାବେ କମିଯିବାରେ ଆଶ୍ଚର୍ଯ୍ୟ ହେବା କାହିଁକି ? (Food, Fibre locked in battle for areas. One million Hect less food crops in 2011-12, Economic Times, Dt-7.4.2011) । କପା, ବାଇଗବା (ଜୈବଇନ୍ଧନ ପାଇଁ), ମକା (ଏଥନଲ୍, ମଦ ତିଆରି ଓ ଗୋଖାଦ୍ୟ ପାଇଁ) ଭଳି ଶସ୍ୟମାନ ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ବେୟରକ୍ରପ୍ ସାଇନ୍ସ ଭଳି ବଡ଼ ବଡ଼ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଠିକାଚାଷ ଓ ବ୍ୟବସାୟିକ ଚାଷ ଆରମ୍ଭ କଲେଣି । ୨୦୧୦ ମସିହାଠାରୁ ସାମ୍ରାଜ୍ୟବାଦୀ ଭାରତବର୍ଷର କୃଷିକ୍ଷେତ୍ରରେ କମ୍ପାନୀମାନଙ୍କ ପ୍ରବେଶ ପାଇଁ ଜୋରଦାର ଉଦ୍ୟମ ଆରମ୍ଭ କରିଥିଲେ । ରାଷ୍ଟ୍ରପତି ଓବାମା, ବୈଦେଶିକ ମନ୍ତ୍ରୀ ହିଲାରୀ କ୍ଲିଣ୍ଟନ, ପ୍ରଧାନମନ୍ତ୍ରୀ ମନମୋହନ ସିଂହକୁ ପ୍ରବର୍ତ୍ତାଇ ନିକଟରେ କୃଷିକ୍ଷେତ୍ରରେ ଘରୋଇ ବୈଦେଶିକ ପୁଞ୍ଜି ନିବେଶ ପାଇଁ ପୁଞ୍ଜିବାଦି ରାଷ୍ଟ୍ରମାନଙ୍କୁ ହାତକାଟି ଲେଖିଦେଲେଣି । (Below the reader, a new agri-business pack with the U.S. The MOU is also intended to give a push to private investment in agriculture- The Hindu Feb 24, 2010) । ଗତ କେତେବର୍ଷ ହେଲା ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣ ନୀତି କାର୍ଯ୍ୟକାରୀ କାଳରୁ ବିଦେଶୀ ରାଷ୍ଟ୍ରମାନେ ଭାରତୀୟ କୃଷିକ୍ଷେତ୍ରକୁ ନିୟନ୍ତ୍ରଣମୁକ୍ତ କରି ଘରୋଇ ଦେଶୀ-ବିଦେଶୀ କମ୍ପାନୀମାନଙ୍କ ହାତକୁ ଟେକିଦେବାକୁ ଷଡ଼ଯନ୍ତ୍ର ଚଳାଇ ଆସୁଥିଲେ । ଦେଶର ଯୋଜନା କମିଶନ ଏଥିପାଇଁ ସରକାରଙ୍କୁ ନିୟମିତ ପରାମର୍ଶ ଦେଉଥିଲେ । (Planners call for farm sector deregulation-Economic Times-23.3.2010) । ଓବାମାଙ୍କ ଭାରତଗସ୍ତ ସମୟରେ ଆମ ପ୍ରଧାନମନ୍ତ୍ରୀ ଓ କୃଷିମନ୍ତ୍ରୀ ମିଳିତ ଭାବେ ଆମ କୃଷିକ୍ଷେତ୍ରକୁ ତାଙ୍କୁ ଉପହାର ଦେଇଦେଲେ । ଏଣିକି ଡାଲି ଖାଉଥା ।

୨୦୧୦-୧୧ ଆର୍ଥିକବର୍ଷରେ ଚାଉଳର ରେକର୍ଡ଼ ଉତ୍ପାଦନ ୯୪.୧୧ ନିୟୁତ ଟନ୍ ଓ ଗହମର ଉତ୍ପାଦନ ୮୪.୨୭ନିୟୁତ ଟନ୍ ହେଉଥିବାର ଆଗୁଆ ଅଟକଳ କୃଷି ବିଭାଗ କରିଛି । ଚାଉଳ ୪୫.୫ନିୟୁତ ହେକ୍ଟର ଓ ଗହମ ୨୮ ନିୟୁତ ହେକ୍ଟର ଚାଷ ହୋଇଛି । ଅର୍ଥାତ ଚାଉଳ ଓ ଗହମ ମୋଟ ଜମି ପରିମାଣ ୭୩.୫ନିୟୁତ ହେକ୍ଟର ଏବଂ ଉତ୍ପାଦନ ମୋଟ ୧୭୮.୧୧ନିୟୁତ ଟନ୍ । ଭାତ ବା ରୁଟି ସାଙ୍ଗକୁ ଆମେ ଡାଲି ଦରକାର କରୁ । ପ୍ରାୟ ୨୨/୨୩ ନିୟୁତ ହେକ୍ଟର ଜମିରେ ଡାଲିଜାତୀୟ ଫସଲ ଚାଷ କରାଯାଇ ଆମେ ପାଉଛେ ୧୭.୨୯ନିୟୁତ ଟନ୍ । ଡାଲି ପାଇଁ ବ୍ୟବହୃତ ଜମି ଚାଉଳ ଓ ଗହମ ଜମିର ୩୦ପ୍ରତିଶତ ଓ ଉତ୍ପାଦନ ୯.୫ପ୍ରତିଶତ । ଆମେ କହିବା କଥା, ଚାଉଳ ଓ ଗହମ ଜମିରୁ

ଦୁଇ-ତୃତୀୟାଂଶ ଡାଲି ଫସଲ ହୋଇପାରନ୍ତା। ଚାଉଳ ଉତ୍ପାଦନ ଗହମର ୨୮ ପ୍ରତିଶତରୁ ଅଧିକା ହୁଅନ୍ତା। ଅର୍ଥାତ ମୁଣ୍ଡପିଛା ଡାଲି ପରିମାଣ ୬୦ଗ୍ରାମ ଅନାୟାସରେ ମିଳିପାରନ୍ତା।

## ଡାଲିର ସଙ୍କଟ କାହିଁକି ?

**୫ଟି ମୁଖ୍ୟ କାରଣ ଏଠାରେ ଉଲ୍ଲେଖ କରାଯାଉଛି।**

୧. ***ସବୁଜବିପ୍ଳବ ବା ରାସାୟନିକ କୃଷି-*** ଧାନ, ଗହମ ଜମିରେ ଅତ୍ୟଧିକ ରାସାୟନିକ ସାର ଓ କୀଟନାଶକ ବ୍ୟବହାର ଯୋଗୁଁ ମୁଗ, ବିରି, କୋଳଥ ଭଳି ଡାଲିଜାତୀୟ ଫସଲ ପୂର୍ବଭଳି ଆଉ ଉଧୋଉ ନାହିଁ। ଗଛ ପାଚିଯାଉଛି। ବେଳେବେଳେ ମରିଯାଉଛି। ରୋଗପୋକ ବହୁଳଭାବେ ଫସଲ ନଷ୍ଟ କରୁଛନ୍ତି।

୨. ***ବିହନ-*** ଦେଶୀ ବିହନ ପରିବର୍ତ୍ତେ ଅଧିକ ଅମଳକ୍ଷମ ଦ୍ୱାହି ଦେଇ ସରକାରୀ ବିହନ, ହାଇବ୍ରିଡ୍ ବିହନ ବ୍ୟବହାର ପାଇଁ ଚାଷୀକୁ ମଜବୁର୍ କରାଯାଉଛି। ଏହିସବୁ ବିହନରୁ ଉତ୍ପାଦନ ଦେଶୀ ବିହନ ଠାରୁ ଯଥେଷ୍ଟ କମ୍ ହେଉଛି। ଗଜା ନାହିଁ ତ ସାହେବି ରୋଗ (ଚଳିତବର୍ଷ ଓଡ଼ିଶାରେ ସାହେବି ରୋଗଜନିତ ମୁଗ, ବିରି, ସମ୍ପୂର୍ଣ୍ଣ ନଷ୍ଟ)। ଗଛ ଉଦ୍‌ବାର୍ଜିଆ ହୋଇ ବଢୁଛି। ଫସଲ, ଫଳ ନାହିଁ ୨୦୦୯-୧୦ବର୍ଷ ଓଡ଼ିଶାରେ ବିରି, ମୁଗ ଚାଷୀ ଡାଲିଫସଲ ହରାଇଲେ। କାରଣ ସରକାର ଶଙ୍କର ଜାତୀୟ ମୁଗ, ବିରିର ଦ୍ୱିତୀୟ ପିଢ଼ି ବିହନ ଚାଷୀଙ୍କୁ ଠକିଥିଲେ। ଚଳିତ ବର୍ଷ (୨୦୧୦-୧୧) ଯେଉଁ ଚାଷୀମାନେ ଦେଶୀବିହନ ବ୍ୟବହାର କରିଛନ୍ତି , ସେମାନଙ୍କ ଫସଲ ଠିକ୍ ଅଛି।

୩- ***ଟ୍ରାକ୍ଟର ଚାଷ-*** ଟ୍ରାକ୍ଟର ଚାଷ ଯୋଗୁଁ ମାଟି ଟାଣ ହୋଇଯାଉଛି। ଜମିରେ ଜିଆ ନାହାନ୍ତି। ତେଣୁ ଜମିର ଜଳଧାରଣ ଶକ୍ତି କମିଯାଉଛି। ଅକ୍ଟୋବର ମାସ ବେଳକୁ କେନାଲରେ ପାଣି ବନ୍ଦ ପରେ ପରେ ଜମିର ବତର ଉଡ଼ିଯାଉଛି। ଡାଲିଜାତୀୟ ଫସଲ ଚାଷପାଇଁ ଲଘୁ ଜଳସେଚନ (Light irrigation) ଦରକାର ହୁଏ। କେନାଲ ପାଣିକୁ ଭରସା ନାହିଁ। କେତେବେଳେ ପାଣି ଶଯ୍ୟାରେ ଯିବ ତ କେତେବେଳେ ମୁଗ, ବିରି ଜମିରେ ଆଣ୍ଠୁଏ ପାଣି। ଓଡ଼ିଶା ଜଳସମ୍ପଦ ବିଭାଗର ଏହା ଦକ୍ଷତାର ନମୂନା। ଗାଁ ଗାଁରେ ପୋଖରୀ, ଗଡ଼ିଆ ଅଛି। ମାତ୍ର ଗ୍ରାମ ପଞ୍ଚାୟତମାନେ ମାଛଚାଷ ପାଇଁ ପୋଖରୀ ନିଲାମ ଦେଉଥିବାରୁ ଚାଷୀ ଜମିକୁ ପାଣି ମଡ଼ାଇପାରିବ ନାହିଁ। ନିଲାମଧାରୀ ପୋଲିସରେ କେସ୍ କରିବ। ପୋଲିସ ଚାଷୀକୁ ଠୁଙ୍କିଦେବ। ବିଚିତ୍ର ବ୍ୟବସ୍ଥା ଆମ ଓଡ଼ିଶା ସରକାରଙ୍କର। ଚାଷୀମାରଣ ନୀତିର

ଗୋଟିଏ ନମୂନା ମାତ୍ର। ଅବଶ୍ୟ ନିକଟରେ ଦେଶର ସର୍ବୋଚ୍ଚ ନ୍ୟାୟାଳୟ ସମସ୍ତ ରାଜ୍ୟ ସରକାରଙ୍କୁ ଏକ ଐତିହାସିକ ରାୟରେ ତାଗିଦ କରି କହିଛନ୍ତି, 'ସର୍ବସାଧାରଣ ଜଳାଶୟର ଜଳ ଜମିକୁ ପାଣି ମଡ଼ାଇବା ବା ଅନ୍ୟାନ୍ୟ ଗୋଷ୍ଠୀ ବ୍ୟବହାର ପାଇଁ ବନ୍ଦ କରାଯାଇ ପାରିବନାହିଁ। ଗୋଷ୍ଠୀ ଜଳାଶୟ ମାଛଚାଷ ପାଇଁ ନିଲାମ ଦିଆଯାଇ ପାରିବନାହିଁ। ସାଧାରଣ ଲୋକେ ଗୋଷ୍ଠୀ ପୋଖରୀକୁ ବ୍ୟବହାର କରିପାରିବେ...' (Court asks states to restore law meant for common use- The Hindu)

୪-***ସବୁଜ ବିପ୍ଳବ***- ଅଧିକ ଉତ୍ପାଦନ ଡାକରାରେ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଧାନ ଓ ଗହମ ଚାଷଉପରେ ଅଧିକ ଗୁରୁତ୍ୱ ଦେଲେ। ଗୋଟିକିଆ ଫସଲ (Monocul-ture) ଧାନ, ପୁଣି ଧାନ, ପୁଣି ଧାନ, ବା ଧାନ-ଗହମ-ଧାନ। ବିଷମିଶା ଭାତ ବା ରୁଟି ଲୋକେ ଖାଇବାକୁ ପାଇଲେ। ଖାଦ୍ୟ ନିରାପତ୍ତା ସୁରକ୍ଷିତ ହୋଇଗଲା ! ପୁଷ୍ଟିହୀନତା ସରକାରଙ୍କ ପାଇଁ ସତେଯେପରି ଏକ ସମସ୍ୟା ନୁହେଁ। ତେଣୁ ଅଧିକରୁ ଅଧିକ ଜମି ଧାନ ବା ଗହମ ଚାଷରେ ନିୟୋଜିତ ହେଲା। ବାକି ଜମି କପା, ମକା, ପ୍ଲାଣ୍ଟେସନ ଫସଲ, ଚା, କଫି, ଅଫିମ ଚାଷ। ଅର୍ଥକାରୀ ଫସଲ ଚ'। ଝିଣ୍ଟିକା ମାରି ବଣି ପୋଷିଲା ଭଳି ଚାଷୀକୁ ହନ୍ତସନ୍ତ କରି କମ୍ପାନୀମାନେ ମାଲାମାଲ୍। ଡାଲି ଚାଷ ପାଇଁ ଜମି କମି କମି ଯାଉଛି।

୫-***ଉଦାରୀକରଣ ଅର୍ଥନୀତି***- ୧୯୯୧ଠାରୁ ଭାରତରେ ଯୁଦ୍ଧକାଳୀନଭିତ୍ତିରେ ପ୍ରୟୋଗ କରାଗଲା। କଂଗ୍ରେସ ହେଉ, ୟୁପିଏ ହେଉ ବା ଏନ୍‌ଡିଏ ହେଉ ସମସ୍ତେ ବୁଝିଗଲେ ଯେ ଉଦାରୀକରଣ ଅର୍ଥନୀତି ଲାଗୁହେଲେ ଭାରତୀୟମାନେ ଘିଅ ମହୁରେ ଭାସିବେ। ୨୦ବର୍ଷ ପରେ କୃଷିକ୍ଷେତ୍ରରୁ ୧୦କୋଟି ଛୋଟ ଓ ନାମମାତ୍ର ଚାଷୀ ଏବଂ କୃଷିଶ୍ରମିକ ତଡ଼ାଖାଇ ସହର ବଜାରରେ ବସ୍ତି ଖୋଜୁଛନ୍ତି। ଏହି ସମୟ ଭିତରେ ଦେଶରେ ୨ଲକ୍ଷରୁ ଅଧିକ କୃଷକ ଆତ୍ମହତ୍ୟା କଲେଣି। ଓଡ଼ିଶାରେ ନବୀନ ପଟ୍ଟନାୟକଙ୍କ ନିର୍ମଳ ଶାସନ ଓ କୃଷିମନ୍ତ୍ରୀର ପାରିବା ପଣିଆର ଫଳ ୩ହଜାରରୁ ଅଧିକ କୃଷକଙ୍କ ଆତ୍ମହତ୍ୟା। ୨୦ଲକ୍ଷରୁ ଅଧିକ ୧୫ରୁ ୩୫ବର୍ଷର ଯୁବକ, ଯୁବତୀ ଦାଦନ ଶ୍ରମିକପାଇଁ ବାହାର ରାଜ୍ୟରେ ଭିଡ଼ କରୁଛନ୍ତି। ଦେଢ଼କୋଟିରୁ ଅଧିକ ଲୋକ ଅର୍ଦ୍ଧାହାର, ଅନାହାର ଓ ପୁଷ୍ଟିହୀନତାର ଶିକାର ହେଲେଣି। ଏଣେ କେନ୍ଦ୍ର ସରକାର କମ୍ପାନୀମାନଙ୍କ ବେପାର ବଢ଼ାଇ କାନାଡ଼ା, ଜର୍ମାନ, ଅଷ୍ଟ୍ରେଲିଆ ଓ ମ୍ୟାଁମାରରୁ ନିମ୍ନମାନର ଡାଲି ଆମଦାନୀ କରୁଛନ୍ତି। ବିଶ୍ୱବାଣିଜ୍ୟ ପ୍ରତିଷ୍ଠାନ (World Trade Organi-sation) ସହିତ ଭାରତ ଏଥିପାଇଁ

ଚୁକ୍ତିବଦ୍ଧ । ଡାଲିଜାତୀୟ ଫସଲ ଅଧିକ ଉତ୍ପାଦନ କଲେ ବିଦେଶୀଙ୍କ ବେପାର କିପରି ହେବ ? ୱିକିଲିକ୍ସରେ ଭାରତ-ଆମେରିକା ସମ୍ପର୍କ ଓ ମନମୋହନଙ୍କ ଭୂମିକା ଆମର ଆଶଙ୍କାକୁ ଦୃଢ଼ୀଭୂତ କରୁଛି ।

ଆମ ରାଜ୍ୟ ସ୍ଥିତିକୁ ଆସିବା । ଷାଠିଏ ଦଶକ ପର୍ଯ୍ୟନ୍ତ ଓଡ଼ିଶାରେ ମୁଣ୍ଡପିଛା ଡାଲି ଖର୍ଚ୍ଚ ୧୧୨ଗ୍ରାମ୍ ଥିଲା । ୨୦୧୧କୁ ଓଡ଼ିଶାରେ ଡାଲିଜାତୀୟ ଫସଲର ଉତ୍ପାଦନ ଅହେତୁକ ଭାବେ କମିଯିବା ଫଳରେ ମୁଣ୍ଡପିଛା ଡାଲିଖର୍ଚ୍ଚର ଜାତୀୟସ୍ତରରେ ୨୨ଗ୍ରାମ ଥିଲାବେଳେ ଓଡ଼ିଶାରେ ଏହା ମାତ୍ର ୧୨ଗ୍ରାମ । କାହିଁକି ଏପରି ବିପର୍ଯ୍ୟୟ ? କାହିଁକି ଓଡ଼ିଶାରେ ଡାଲି ସଙ୍କଟ ?

ଆମରାଜ୍ୟରେ ସବୁଜବିପ୍ଳବ/ ରାସାୟନିକ କୃଷିର ରାଜୁତି ପୂର୍ବରୁ ନିରନ୍ତର କୃଷି ଚାଷୀମାନଙ୍କ ଜୀବନ ଜୀବିକାର ଧାରା ଥିଲା । ସେତେବେଳେ ରାଜ୍ୟରେ ୨ଲକ୍ଷ ୨୦ହଜାର ହେକ୍ଟର ଜମିରେ ବିଆଳି ଓ ଲଘୁ ଧାନ ଚାଷ ହେଉଥିଲା । ସେପ୍ଟେମ୍ବର, ଅକ୍ଟୋବରମାସରେ ଧାନ କଟା ପରେ ଜମିରେ ବେଶ୍ ବତର ଥାଏ । ଘରେ ହଳ ଲଙ୍ଗଳ ଅଛି । ଘୁମ ବା ଓଳିଆରେ ବେଗୁନିଆ ପତ୍ର, ଶୁଖିଲା ଲଙ୍କା, ପାଉଁଶ ଗୋଳିଆ ଦେଶୀ ମୁଗ ମଞ୍ଜି ଅଛି । ଜମିରେ ନିୟମିତ ଶଗଡ଼ ଓ ଦରରେ ଗୋବର ଖତ ପଡୁଛି । ଜମି ଖତିରା ଅଛି । ପୁଣି ପ୍ରତିବର୍ଷ ମୁଗ ବିରି ଚାଷ ଦ୍ୱାରା ଜମିର ଉର୍ବରା ଶକ୍ତି ବଢ଼ିଚାଲିଛି । ମୁଗ, ବିରିବିଲରେ ହେକ୍ଟର ପିଛା ୩୦ରୁ ୪୦ କିଲୋଗ୍ରାମ ଯବକ୍ଷାରଜାନ ମାଗଣା ମିଳିଥାଏ । ମୂଳରେ ଯେଉଁ ଭାତୁଡ଼ି ହୁଏ (Nodules) ସେଥିରେ ଥିବା ବ୍ୟାକ୍ଟିରିଆ ବାୟୁମଣ୍ଡଳରୁ ଯବକ୍ଷାରଜାନ ଟାଣିଆଣି ମାଟିକୁ ଅଧିକ ଉର୍ବର କରିଥାନ୍ତି । ୨/୩ ଓଡ଼ ଗୁଣ୍ଠ ଚାଷ କରି ଗୁଣ୍ଠକୁ ୪୦୦ଗ୍ରାମ ମଞ୍ଜି ବୁଲିଲେ ଢେର୍ । ଅଗାଡ଼ି ଫୋଡ଼ ଗଛ । ଡିସେମ୍ବର, ଜାନୁଆରୀକୁ ମୁଗ, ବିରି ଅମଳ ।

ନଭେମ୍ବର, ଡିସେମ୍ବର ମାସରେ ଶାରଦ ଧାନ କଟାପରେ ମୁଗ, ବିରି ବୁଣା । ଅକ୍ଟୋବର, ନଭେମ୍ବର ମାସବେଳକୁ ବିଲରେ ମାଛି ବସା ବତର ଥାଇ ମୁଗ, ବିରି ମଞ୍ଜି ଛାଟିଦେଲେ ମଧ ଅମାପ ଫସଲ । ଏହାକୁ ପାରିଆ ଚାଷ କୁହାଯାଏ । ମଞ୍ଜି ଟିକେ ଅଧିକ ଲାଗେ । ହେଲେ ନାହିଁ ନଥିବା ଅମଳ । ଚାଷୀ କୁହନ୍ତି 'କୋଳଥ କାନେ କାନେ-ମୁଗ ବିରି କୋଣେ କୋଣେ ।' ଅର୍ଥାତ ମୁଗ, ବିରି ପତଳା ଗଛହେଲେ ଫଳ ଅଧିକ । କୋଳଥ ବହଳିଆ ଗଛରେ ଫଳ ଅଧିକ । ବିଶ୍ୱାସ କରନ୍ତୁ ବା ନକରନ୍ତୁ, ଗୋଟେ ଗୋଟେ ଆଙ୍ଗୁଠି ମୋଟର ମୁଗଗଛରୁ ୧୦୦ଗ୍ରାମ ମୁଗ । ସେତେବେଳେ ଚାଷୀ ଗୁଣ୍ଠକୁ ୪/୫ଗୌଣୀ ମୁଗ

ଅମଳ କରୁଥିଲା । ଅର୍ଥାତ ଏକରକୁ ୩ରୁ ୪କ୍ୱିଣ୍ଟାଲ । ଆଜିକା ହେକ୍ଟର ହିସାବରେ ହେକ୍ଟରକୁ ୧୦କ୍ୱିଣ୍ଟାଲ । ଆଜିଦିନରେ ସରକାରୀ ହିସାବରେ ହେକ୍ଟର ପ୍ରତି ଓଡ଼ିଶାରେ ୩କ୍ୱିଣ୍ଟାଲ ମାତ୍ର (ରାଜ୍ୟ କୃଷି ନିର୍ଦ୍ଦେଶାଳୟ ଓ ଅର୍ଥ ଓ ପରିସଂଖ୍ୟାନ ବିଭାଗର ହିସାବରୁ ମୋଟାମୋଟି ହିସାବ ନେଲେ) । ଜାତୀୟସ୍ତରରେ ୨୦୦୩-୪ବର୍ଷ ଡାଲି ଜାତୀୟ ଫସଲର ଉତ୍ପାଦିକା ଶକ୍ତି ୬୩୭କି.ଗ୍ରା । ଓଡ଼ିଶାରେ ମୁଗ, ବିରି, କୋଳଥ ଚାଷରେ ଜମି ପରିମାଣ ୫ଲକ୍ଷ ହେକ୍ଟର ମଧ୍ୟରେ ସୀମିତ । ଆମର ଧାନଜମି ପରିମାଣ ୪୦ରୁ ୪୫ଲକ୍ଷ ହେକ୍ଟର । ଅର୍ଥାତ ଧାନଜମିର ୧୨ଶତକଡ଼ା ଡାଲି ଜାତୀୟ ଫସଲ ଚାଷ । ଜାତୀୟସ୍ତରରେ ଏହା ୩୦ ପ୍ରତିଶତ ଥିବା ସ୍ଥଳେ ଓଡ଼ିଶା ଯେଉଁ ରାଜ୍ୟର ମାଟି, ପାଣି, ପବନ ଡାଲି ଉତ୍ପାଦନ ପାଇଁ ଅତ୍ୟନ୍ତ ଅନୁକୁଳ, ଏତେ କମ୍ ଜମିରେ ଡାଲିଚାଷର କାରଣ କ'ଣ । କାରଣ କପା ଚାଷ, ବାଇଗବା ଚାଷ, ମକା ଚାଷ । କମ୍ପାନୀ ବରାଦରେ ଚାଷ । ଟାଟା, ରିଲାଏନ୍ସ, ମହିନ୍ଦ୍ରା ଭଳି କମ୍ପାନୀମାନେ କୋରାପୁଟ, ଗଜପତି, କନ୍ଧମାଳ, ବଲାଙ୍ଗୀର, କଳାହାଣ୍ଡି ଓ ଢେଙ୍କାନାଳ ଜିଲ୍ଲାମାନଙ୍କର ବିସ୍ତୃତ ଜମିରେ ଆମ୍ବ,କଫି,କାଜୁ ଭଳି ବଗିଚା ଚାଷ କରିଗଲେଣି । କେନ୍ଦ୍ର କୃଷିବିଭାଗ ଓ ଓଡ଼ିଶା କୃଷି ବିଭାଗରେ ଡାଲି ଚାଷ (ଜମି, ଉତ୍ପାଦିକା ଶକ୍ତି ଓ ହାରାହାରି ହେକ୍ଟର ପ୍ରତି ଉତ୍ପାଦନ)ର ଏକ ତୁଳନାତ୍ମକ ହିସାବ ଏଠାରେ ଉଲ୍ଲେଖ କରାଗଲା । (ସାରଣୀ-୨ ଦ୍ରଷ୍ଟବ୍ୟ) । ଜାତୀୟସ୍ତରରେ ଡାଲିଫସଲ ପାଇଁ ନିୟୋଜିତ ଜମିର ଓଡ଼ିଶା ପରିମାଣ ୧.୪୩ପ୍ରତିଶତ ଜାତୀୟ ଉତ୍ପାଦନରେ ଓଡ଼ିଶାର ସ୍ଥିତି-୦.୭୫ପ୍ରତିଶତ । ଭାରତର ଲୋକସଂଖ୍ୟା ଅନୁପାତରେ ଓଡ଼ିଶା-୩.୩ ପ୍ରତିଶତ ।

ଉପରୋକ୍ତ ଗାଣିତିକ ତଥ୍ୟରୁ ଆମେ ଜାଣିପାରିବା, ଓଡ଼ିଶାରେ ଡାଲିଚାଷ ଓ ଉତ୍ପାଦନ କେତେ ଦୟନୀୟ ସ୍ଥିତିରେ ଅଛି । ମାତ୍ର ମାଟି, ଜଳବାୟୁର ଉପଯୋଗ ଦୃଷ୍ଟିରେ ଓଡ଼ିଶା ଡାଲି ଉତ୍ପାଦନରେ ଦେଶରେ ଦ୍ୱିତୀୟ ସ୍ଥାନ ଅଧିକାର କରିପାରିବାର ଦକ୍ଷତା ଅର୍ଜନ କରିପାରନ୍ତା (ପ୍ରଥମ ସ୍ଥାନ ଉତ୍ତରଭାରତ ନେବ) । ଆମ ରାଜ୍ୟ ସରକାରଙ୍କ କୃଷିକ୍ଷେତ୍ରରେ ସମ୍ପୂର୍ଣ୍ଣ ବିଫଳତା ପାଇଁ ଏହି ତଥ୍ୟ ଯଥେଷ୍ଟ ପ୍ରମାଣ ଦେଉନାହିଁ କି? ୧୯୬୫-୭୦ ପୂର୍ବରୁ ଓଡ଼ିଶାରେ ୨୫/୩୦ଲକ୍ଷ ହେକ୍ଟର ଜମିରେ ଡାଲିଜାତୀୟ ଫସଲ ଚାଷ ହେଉଥିବା ସ୍ଥଳେ ୨୦୧୧ବେଳକୁ ତାହା ୩/୪ଲକ୍ଷ ହେକ୍ଟରରେ ସୀମିତ ।

୨୦୧୦-୧୧ଆର୍ଥିକ ବର୍ଷରେ ଓଡ଼ିଶାର ଚାଷୀ ପ୍ରଥମେ ମରୁଡ଼ି ଏବଂ ଫସଲ ଅମଳ ବେଳକୁ (ଡିସେମ୍ବର ମାସ) ଅଦିନିଆ ବର୍ଷାରେ ୩୦ଲକ୍ଷ ହେକ୍ଟର ଧାନଜମିରେ

ଫସଲ ନଷ୍ଟ ହୋଇଗଲା । ୪ ମାସ ବିତିଗଲାଣି । ଏଥିମଧ୍ୟରେ ୨୦୦ପର୍ଯ୍ୟନ୍ତ ଚାଷୀ ଆତ୍ମହତ୍ୟା କଲେଣି । ସରକାର ସାହାଯ୍ୟର ବହୁ ପ୍ରତିଶ୍ରୁତି, ପ୍ୟାକେଜ ଘୋଷଣାକଲେ । ମାତ୍ର ଏପର୍ଯ୍ୟନ୍ତ ଚାଷୀଙ୍କୁ କ୍ଷତିପୂରଣ ମିଳିନାହିଁ । ଭାଗଚାଷୀ ସମୁଦ୍ରେ ଭାଷଣେ ଯଥା । ତା'ପାଇଁ ଜମିମାଲିକ ପାଟି ଫିଟାଉ ନାହିଁ । ସରକାର ତ' ସାଆନ୍ତିଆଙ୍କର । ଭାଗଚାଷୀ ଥଳକୂଳ ପାଉନି । ରାଜ୍ୟରେ ଡାଲିଜାତୀୟ ଫସଲ ଉତ୍ପାଦନବୃଦ୍ଧି ପାଇଁ ୨କିଲୋ ମଞ୍ଜିକୁ ୧୦୫ ଟଙ୍କା ମୂଲ୍ୟରେ ମୁଗ, ବିରି, ବିହନ କିଟ୍ ଓ ଏଥିସହିତ ରାସାୟନିକ ସାର ଓ କୀଟନାଶକ ଔଷଧ ଚାଷୀମାନଙ୍କୁ ମାଗଣାରେ ସରକାର ଯୋଗାଇ ଦେଲେ । ରାଷ୍ଟ୍ରୀୟ କୃଷିବିକାଶ ଯୋଜନା ମାଧ୍ୟମରେ ରାଜ୍ୟର ୩ଲକ୍ଷ ଚାଷୀଙ୍କୁ ଏହି କିଟ୍ ଦିଆଗଲା । ଗଞ୍ଜାମ, ଗଜପତିରେ ମୁଗମଞ୍ଜିରୁ ଗଜା ନାହିଁ । ଅନ୍ୟ ସବୁଜିଲ୍ଲାରେ ମୁଗ,ବିରିରେ ସାହାବି ରୋଗ । ପ୍ରତ୍ୟେକ ଚାଷୀଙ୍କୁ ୦.୫୦ଡେସିମିଲ ଜମି ପାଇଁ ଏସବୁ କିଟ୍‌ର ବ୍ୟବସ୍ଥା ଅର୍ଥାତ ୧.୫ଲକ୍ଷ ଏକର ଜମିରେ ଫସଲ ସମ୍ପୂର୍ଣ୍ଣ ନଷ୍ଟ । ଏହି କ୍ଷତିର ପରିମାଣ ଏକର ପ୍ରତି ୨କ୍ୱିଣ୍ଟାଲରେ ୩ଲକ୍ଷ କ୍ୱିଣ୍ଟାଲ । ମୁଗ, ବିରି କ୍ୱିଣ୍ଟାଲ ୫ହଜାର ହେଲେ ମୋଟ କ୍ଷତିର ପରିମାଣ ଦେଢ଼ଶହ କୋଟି । ସରକାରଙ୍କ ସହାୟତାରେ ଚାଷୀର ଏଇ ଦେଢ଼ଶହ କୋଟି ଟଙ୍କାର କ୍ଷତି ଯଥାଶୀଘ୍ର ରାଜ୍ୟ ସରକାର ଭରଣା କରନ୍ତୁ । ବିହାରରେ ମନ୍‌ସାଣ୍ଟୋର ହାଇବ୍ରିଡ଼୍ ମକାରେ ଫଳ ଧରିଲା ନାହିଁ । ମୁଖ୍ୟମନ୍ତ୍ରୀ ଚାଷୀମାନଙ୍କୁ ୬୧କୋଟି ଟଙ୍କାର କ୍ଷତିପୂରଣ ଦେଇଛନ୍ତି । ବିହାରରେ ହାଇବ୍ରିଡ଼୍ ବା ଜିଏମ୍ ବିହନ କମ୍ପାନୀମାନେ ରାଜ୍ୟସରକାରଙ୍କ ବିନାନୁମତିରେ ବେପାର କରିପାରିବେ ନାହିଁ ବୋଲି ନିତୀଶକୁମାର ପ୍ରଧାନମନ୍ତ୍ରୀ ଓ କେନ୍ଦ୍ର କୃଷିମନ୍ତ୍ରୀଙ୍କୁ ରୋକଠୋକ୍ ଜଣାଇ ଦେଇଛନ୍ତି । (Hindu April 7, 2001)

ଖରିଫରେ ଓଡ଼ିଶା ସରକାର ଚାଷୀମାନଙ୍କୁ ହାଇବ୍ରିଡ଼୍ ଧାନ ବିହନ, ରାସାୟନିକ ସାର ଓ କୀଟନାଶକ ୧୫ଲକ୍ଷ କିଟ୍ ଯୋଗାଇବା ପାଇଁ ଯୋଜନା କରିଛନ୍ତି । ଯାହା ପୁଅକୁ ସାପ କାମୁଡ଼େ , ତା' ମା ପାଳଦଉଡ଼ି ଦେଖିଲେ ଡରେ । ଚାଷୀମାନେ ଏହି ନକଲି କିଟ୍‌ବ୍ୟବସ୍ଥା ଉଚ୍ଛେଦ ପାଇଁ ଦାବୀ କରୁଛନ୍ତି (ସମାଜ-ତା.୨/୪/୨୦୧୧,ପୃଷ୍ଠା-୧୦) । ହନୁ ମଲାବେଳକୁ ସତ କହିଲା ଭଳି ଆମ କୃଷିମନ୍ତ୍ରୀ ମୁଗ ମଞ୍ଜି ଜାଲିଆତି କଥା ବିଧାନସଭାରେ ସ୍ୱୀକାର କରିଛନ୍ତି ଏବଂ ଚାଷୀଙ୍କୁ କ୍ଷତିପୂରଣ ଦେବା ଓ ସମ୍ପୃକ୍ତ କୃଷି ଅଧିକାରୀଙ୍କୁ ଦଣ୍ଡିତ କରିବା ପାଇଁ ମଧ୍ୟ ସୂଚନା ଦେଇଛନ୍ତି । (New Indian Express, Page-1, Dt-8/4/2011) । ନକଲି ମୁଗ ବିହନର ରହସ୍ୟ ଚାଷୀମାନଙ୍କ ମଧ୍ୟରୁ ଅନେକ ଭେଦ କଲେଣି । ଗତ ରବିଋତୁରେ ସମ୍ରାଟ (ପିଜିଏମ୍ ୮୪-୧୩୯-PDM ୮୪-୧୩୯)ମୁଗ ବିହନ

କିଟ୍ ଚାଷୀମାନଙ୍କୁ ଯୋଗାଇ ଦିଆଯାଇଥିଲା । ଏହି କିସମ ବିହନ ବୁଣାର ପ୍ରକୃଷ୍ଟ ସମୟ ସେପ୍ଟେମ୍ବର-ଅକ୍ଟୋବର । ଡିସେମ୍ବର ମାସକୁ ଅମଳ ହେବା କଥା । ମାତ୍ର ଆମ କୃଷିବିଭାଗ ବିହନ ଡିସେମ୍ବର-ଜାନୁଆରୀ ମାସରେ ଯୋଗାଇଲେ । ସେତେବେଳକୁ ଅମଳ ବେଳ । ବିହନ ବୁଣାହେଲା । ପୁଣି ଏହି କିସମ ବିହନ ସାହେବି ରୋଗ (Yellow Mosaic Virus) ସହଣୀ ଶକ୍ତି ଖୁବ୍ କମ୍ । ଏହାର ସାହେବି ରୋଗ ପ୍ରତିରୋଧକ ଶକ୍ତି ନାହିଁ । (Manual on Agriculture Technology-Rabi 2007-08, Page-20, Director of Agricultuire & Food Production Orissa, BBSR) । କୃଷିବିଭାଗ ଉଚ୍ଚଅଧିକାରୀ ମନ୍ତ୍ରୀଙ୍କ ସହିତ ସଲାସୁତୁରାରେ ଜାତୀୟ ବିହନ ନିଗମ (National Seed Corporation)ଠାରୁ ଏପରି ଅଦରକାରୀ କିସମ ବିହନ କିଣିଥିବା ସ୍ପଷ୍ଟ । ଉତ୍ତରପ୍ରଦେଶରେ ବିହନ ବୁଣା ସମୟ ଗଡ଼ିଯାଇଛି । ବିହନ ବଳିପଡୁଛି । ଓଡ଼ିଶାକୁ ପେଲିଦେଲେ । ଯାହା ନଖାଇବେ ଝିଅ- ତାହା ଜ୍ୱାଇଁଙ୍କ ପତ୍ରରେ ଦିଅ । ଓଡ଼ିଶା ତ' ବିହନ କମ୍ପାନୀମାନଙ୍କ ପାଇଁ ପରୀକ୍ଷାଗାର; ଏଠାରେ ମନ୍ତ୍ରୀ, ଅଫିସର ସବୁ ସୁଧାର । ଅଚଳ ଦୋଅଣି ଚଞ୍ଚଳ ଚଳିଲାଭଳି ସବୁ ନକଲି ବିହନ କାରବାର ପାଇଁ ଓଡ଼ିଶା ପ୍ରକୃଷ୍ଟ ରାଜ୍ୟ । କିଛି କହିନପାରିଲେ ମଧ୍ୟ ଚାଷୀମାନେ ଯେପରି ତାଙ୍କର ଅଶାନ୍ତି ପ୍ରକାଶ କରୁଛନ୍ତି ଓ ସରକାରଙ୍କୁ ଛି' ଛାକର କରୁଛନ୍ତି, କାନରେ ନଶୁଣିଲେ ବିଶ୍ୱାସ ହେବନି । ଗଣମାଧ୍ୟମରେ ନିୟମିତ ସାହେବି ରୋଗ ଖବର । ଚାଷୀ କେତେ ଜାଗାରେ କୃଷି ଅଫିସରେ ତାଲା ପକେଇଲେଣି ।

ଗତ ୨୮.୩.୨୦୧୧ତାରିଖରେ ଜେଏନ୍‌ୟୁର ପ୍ରଫେସର ପ୍ରଳୟ କାନୁନ୍‌ଗୋଙ୍କ ସହିତ ଆମେ କେତେଜଣ ତାଙ୍କ ଗାଁ କଟକ ଜିଲ୍ଲା କଣ୍ଟାପଡ଼ା ବ୍ଲକ୍‌ର ନୋଦାକୁ ଯାଇଥିଲୁ । ସେଠାରେ ଦେଖିଲୁ ମୁଗ କିଆରିରେ ଦୁଇପ୍ରକାର ରଙ୍ଗ । କେତେକ ଜମିରେ ଗଛ ବେଶ୍ ଗାଢ଼ ଶାଗୁଆ ଦିଶୁଛି ଆଉ ବହୁତ ଜମିରେ ହଳଦିଆଛିଟ ଶାଢ଼ୀ ବିଛାହେଲା ଭଳି ଦିଶୁଛି । ସେଇ ଗାଁର ବିପିନ୍‌ଭୋଇ । ମୁଗ ଚାଷ କରିଛନ୍ତି । ଦୁଇକେଜି ପ୍ୟାକେଟ ମୁଗ ମଞ୍ଜିକୁ ୧୦୫ଟଙ୍କା ଦେଇ କଣ୍ଟାପଡ଼ା ବ୍ଲକ୍‌ରୁ କିଣିଲେ । କୀଟନାଶକ ପାଣି ଓ ପାଉଡ଼ର (ସେ ନାଁ କହିପାରିଲେ ନାହିଁ) । ରାସାୟନିକ ସାର ବି ପାଇଥିଲେ । ସଂହାତି ଚାଷୀ ତ । ବିଲରେ ସବୁ ବୁଣିଲେ । ଦେଶୀ ବିହନ ଯୋଗାଡ଼ କରି ଗୋଟିଏ ଏକର ଚାଷ କରିଛନ୍ତି । ଫସଲ ଷୋହଳ ଅଣା । ସରକାରୀ ବିହନ ଏକ ଏକର ଚାଷ । ସେରେ ବି ମିଳିବନି । ମଞ୍ଜି ମିଳିବା ତ' ଦୂରର କଥା । 'ଆଞ୍ଜା ମରିଗଲୁ ଆଞ୍ଜା । ଦେଶୀ ବିହନ ସବୁତକ ବୁଣିଥିଲେ ମୁଗ ୫/୬ଟା ପାଇଥାନ୍ତି (୫/୬ଟା ଅର୍ଥ ୫/୬ବସ୍ତା । ମୁଗ ବସ୍ତାକୁ ଏକ କ୍ୱିଣ୍ଟାଲ) । ସରକାରୀ ଲୋକଙ୍କ ଏକ ଜିଗର,

ଦେଶୀ ବିହନ ଅଳ୍ପ ଫଳିବ। କମ୍ପାନୀ ବିହନରୁ ବେଶୀ ମିଳିବ। ଏବେ ତ ମଞ୍ଜିବି ମିଳିବନି। ଏ' କି ଅନ୍ଧା ସରକାର। ଗତବର୍ଷ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର, କଟକରୁ ମଞ୍ଜି ମିଳିଥିଲା। ଗଛ ହେଲା, ଫଳ ନାହିଁ।' ଚାଷୀକୁ ଥରେ ବିଶ୍ୱାସକୁ ନେଲେ ଆମ ରାଜ୍ୟରେ ଚାଷ ସୁଧୁରି ଯାଆନ୍ତା। ଓଡ଼ିଶାରେ ଡାଲିଜାତୀୟ ଫସଲ ବିବରଣୀ (ସାରଣୀ-୩ ଦ୍ରଷ୍ଟବ୍ୟ)।

ସାରଣୀରେ ପ୍ରଦର୍ଶିତ ହିସାବକୁ ଅନୁଧ୍ୟାନ କଲେ ଆମେ ସ୍ପଷ୍ଟ ଜାଣିପାରିବା ଯେ ଉଭୟ ନିର୍ଦ୍ଦେଶାଳୟର ପଦାଧିକାରୀମାନେ କ୍ଷେତ୍ରକୁ ନଯାଇ ନିଜ ନିଜ ଦପ୍ତରରେ ବସି ଅନୁମାନରେ ପଣକିଆ ଲେଖିଛନ୍ତି। ଦୁଇଟି ନିର୍ଦ୍ଦେଶାଳୟ ଏକାଠି କରି ସେମାନଙ୍କ ଦ୍ୱାରା ପ୍ରସ୍ତୁତ ରିପୋର୍ଟ ସମୀକ୍ଷା କରିନାହାନ୍ତି। ରିପୋର୍ଟରେ ତାଳମେଳ ନାହିଁ। କାହିଁକି ଏତେ ତାରତମ୍ୟ ? ରାଜ୍ୟ କୃଷିମନ୍ତ୍ରୀ, କୃଷିସଚିବ, ତଥାକଥିତ କୃଷି କମିଶନ ରିପୋର୍ଟ ଉପରେ ଅନୁଧ୍ୟାନ କରିଛନ୍ତି କି ? ଏଭଳି ତ୍ରୁଟିପୂର୍ଣ୍ଣ ସୂଚନା ଚାଷୀ ଓ ଖାଉଟୀଙ୍କୁ ଭୂଆଁ ବୁଲାଇବା କଥା ନୁହେଁ କି ? ଉଭୟ ବିଭାଗର ପରିସଂଖ୍ୟାନରୁ ଏକଥା ସ୍ପଷ୍ଟହେଉଛି ଯେ ଓଡ଼ିଶାରେ (୧) ଡାଲିଜାତୀୟ ଫସଲ ଚାଷ ଜମି କମି କମି ଯାଉଛି, (୨) ଉତ୍ପାଦିକା ଶକ୍ତି ଜାତୀୟମାନଠାରୁ ଯଥେଷ୍ଟ କମ୍, (୩)ମୋଟ ଉତ୍ପାଦନ ଅତ୍ୟନ୍ତ ନିରୁତ୍ସାହଜନକ, (୪) ରାଜ୍ୟ ସରକାରଙ୍କ କୃଷି ବିଭାଗ ମିଥ୍ୟା ତଥ୍ୟ ଦେଇ ଲୋକଙ୍କୁ ବିଭ୍ରାଟ କରୁଛନ୍ତି, (୫) ସରକାରୀ ଅଧିକ ଅମଳକ୍ଷମ ବା ହାଇବ୍ରିଡ଼ ମୁଗ, ବିରି ବିହନରୁ ଉତ୍ପାଦନ ଦେଶୀ ବିହନଠାରୁ ଯଥେଷ୍ଟ କମ୍ ହେଉଛି।

ଓଡ଼ିଶାରେ ଖାଲି ମୁଗ, ବିରିରେ ହାଇବ୍ରିଡ଼ ବା ଅଧିକ ଅମଳକ୍ଷମ ବିହନକୁ ପ୍ରୋତ୍ସାହନ ଦିଆଯାଉ ନାହିଁ। ଧାନ, କପା, ମକା, ସୂର୍ଯ୍ୟମୁଖୀ ଓ ସମସ୍ତ ପରିବା ଚାଷପାଇଁ ଓଡ଼ିଶା ସରକାର କେବଳ ହାଇବ୍ରିଡ଼ ବା ଜିଏମ୍ ବିହନ (କପା) ବ୍ୟବହାର ପାଇଁ ଚାଷୀକୁ ଏକପ୍ରକାର ବାଧ୍ୟ କରୁଛନ୍ତି। ନାବାର୍ଡ଼ ଗାଁ ଗାଁରେ କୃଷକ କ୍ଲବ୍ କରି ରାସାୟନିକ କୃଷି ଓ କମ୍ପାନୀ ବିହନ ଚାଷପାଇଁ ଚାଷୀଙ୍କୁ ପ୍ରବର୍ତ୍ତାଉଛି। ୨୦୦୯-୧୦ବର୍ଷ କୃଷକକ୍ଲବ୍ ମାଧ୍ୟମରେ ମୁଗ ଓ ବିରି ଚାଷ କରାଇଲେ। ସବୁ ସରକାରୀ ବା କମ୍ପାନୀ ବିହନ ଗଛ ହେଲା, କିନ୍ତୁ ଫୁଲ ଫଳ ନାହିଁ। ଚାଷୀଭାଗ୍ୟକୁ ଆଦରି ରହିଲେ। ଆମେ ନାବାର୍ଡ଼ ଡାଲି ଚାଷ ଯୋଜନାରେ ୪୦/୫୦ଏକର ଜମିରେ ଦେଶୀମୁଗ ଚାଷ କରି ବିହନ ସଂଗ୍ରହ ପାଇଁ ପ୍ରସ୍ତାବ ଦେଇଥିଲୁ। ମାତ୍ର ନାବାର୍ଡ଼ ଅଧିକାରୀମାନେ ଦେଶୀବିହନରେ ଚାଷପାଇଁ ରୋକ୍‌ଠୋକ୍ ମନା କରିଦେଲେ। ଆମ ଚାଷୀମାନେ ଖୁବ୍ ଖୁସ୍। ସେମାନେ ଦେଶୀ ବିହନରୁ ଏକରକୁ ୩/୪କ୍ୱିଣ୍ଟାଲ ମୁଗ ଅମଳ କରିଥିବା ବେଳେ ନାବାର୍ଡ଼ ବିହନରୁ ଅମଳ ଶୂନ।

ଯାଜପୁର ଜିଲ୍ଲାର ଦଶରଥପୁର ବ୍ଲକ୍। ସେହି ବ୍ଲକ୍‌ର ଚିଡ଼ୋଳ ଗ୍ରାମ ପଞ୍ଚାୟତର ରଘୁପୁର ଗ୍ରାମରେ ନାବାର୍ଡ଼ କେତେକ କୃଷକ କ୍ଲବ୍ ଗଠନ କରାଇ ସେମାନଙ୍କ ଜମିରେ ଶଙ୍କରଜାତୀୟ ଧାନ ବିହନ ଉତ୍ପାଦନ ପାଇଁ ମାଗଣା ବିହନ, ରାସାୟନିକ ସାର ଓ କୀଟନାଶକ (ଆନୁମାନିକ ମୂଲ୍ୟ ୫୦୦୦ଟଙ୍କା ଲେଖାଏଁ) ଦେଇଛନ୍ତି। ଆମେରିକାର ପାୟୋନିୟର ବିହନ କମ୍ପାନୀ ନାବାର୍ଡ଼ ସହାୟତାରେ ଓଡ଼ିଶାର ଚାଷୀ ଓ ଚାଷକୁ ଧ୍ୱଂସ କରିବାପାଇଁ ସେ ଗାଁରେ ଜାଣ ମୂଳଦୁଆ ପକାଇଲା। ଏଣିକି ଖାଲି ଧାନ ନୁହେଁ, ମୁଗ, ବିରି, ବାଇଗଣ, ସୂର୍ଯ୍ୟମୁଖୀ ସବୁ ଫସଲର ହାଇବ୍ରିଡ଼ ଓ ଜିଏମ୍ ବିହନର କ୍ଷେତ୍ର ପ୍ରଦର୍ଶନ ପାଇଁ ରାସ୍ତା ଖୋଲିଯିବ। ଆମ କୃଷିମନ୍ତ୍ରୀ ବା ରାଜ୍ୟ ସରକାର ନଜାଣି କ'ଣ ଏପରି ଅପକର୍ମ ହୋଇପାରେ? (ସମାଜ, ୮/୪/୨୦୧୧)

'ଖଜୁରି ଗଛର କିସ ବାହୁନିବି ମୂଳରୁ ପାହାଚ ପାହାଚ।' ବିହାରରେ ନୀତିଶ କୁମାର ହାଇବ୍ରିଡ଼ ବା ଜିଏମ୍ ବିହନ ପ୍ରବେଶକୁ ନିଷେଧ କରିପାରିଲେ। କେରଳ ସରକାର ଜିଏମ୍ ବିହନର କ୍ଷେତ୍ର ପରୀକ୍ଷା ଉପରେ ଅଙ୍କୁଶ ଲଗାଇଛି। ଓଡ଼ିଶା ସରକାର ତ' ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ବେୟର କ୍ରପ୍ ସାଇନ୍ସ ଭଳି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କୁ ସ୍ୱାଗତ କରୁଛନ୍ତି। ଓଡ଼ିଶାରେ ସେମାନେ ଆସ୍ଥାନ ଜମାଇ ସାରିଲେଣି। ଧନ୍ୟରେ ସରକାର। ଧନ୍ୟ ତୁମର ଚାଷୀମାରଣ ନୀତି। ଧନ୍ୟ ତୁମର କମ୍ପାନୀ ପ୍ରୀତି।

ଓଡ଼ିଶାରେ ଡାଲି ସଙ୍କଟ ଦୂର କରିବା ପାଇଁ ଏବଂ ଡାଲିରେ ଆତ୍ମନିର୍ଭରଶୀଳ ହେବା ସହିତ ଶିଶୁ, ମହିଳା ଓ ଯୁବକମାନଙ୍କୁ ପୁଷ୍ଟିହୀନତାରୁ ସୁରକ୍ଷା ଦେବାକୁ ହେଲେ ସରକାର ଅନୁଭବି ଚାଷୀର ପରାମର୍ଶ ନେଇ ଯୋଜନା ପ୍ରସ୍ତୁତ କରନ୍ତୁ।

## କେତୋଟି ସହଜ କାର୍ଯ୍ୟକ୍ରମ ରାଜ୍ୟ କୃଷିବିଭାଗ ନେଇପାରେ:

୧) ଦେଶୀ ମୁଗ, ବିରି ବିହନ ଉତ୍ପାଦନ, ଗବେଷଣା ଓ ବଣ୍ଟନ ବ୍ୟବସ୍ଥା ଜରୁରୀ। ନୟାଗଡ଼ର ସ୍ଥାଣୁ ପ୍ରାୟ ଡାଲିଜାତୀୟ ଫସଲ ଗବେଷଣା କେନ୍ଦ୍ରକୁ ତୁରନ୍ତ କାର୍ଯ୍ୟକ୍ଷମ କରାଯାଉ।

୨) ଦେଶୀ ଧାନ ବିହନ ଉତ୍ପାଦନ କରି ପ୍ରତିବର୍ଷ ୧୦ହଜାର ହେକ୍ଟର ଜମିରେ ଦେଶୀ ଧାନଚାଷ କଲେ ମାତ୍ର ୫ବର୍ଷ ଭିତରେ ରାଜ୍ୟରେ ନିରନ୍ତର କୃଷି ପୁନଃ ପ୍ରତିଷ୍ଠା କରାଯାଇପାରିବ। ରାସାୟନିକ ସାର ଓ କୀଟନାଶକ ବ୍ୟବହାର ଶୂନ ହେବ। ମୁଗ, ବିରି ଚାଷପାଇଁ ଜମି ଖୁବ୍ ଉପଯୋଗୀ ହୋଇପାରିବ।

୩) ଜଳସେଚନ ବ୍ୟବସ୍ଥା ନିଶ୍ଚିତ କରିପାରିଲେ ପାରିଆ (ଛଟା) ମୁଗ, ବିରି ଚାଷ କରାଯାଇପାରିବ। ଏହାଦ୍ୱାରା ଚାଷୀ ପ୍ରାୟ ମାଗଣାରେ ହେକ୍ଟରକୁ ୪୦/୫୦ହଜାର ଟଙ୍କା ରୋଜଗାର କରିପାରିବ।

୪) ଶୀତଦିନେ ଧାନଚାଷ ବନ୍ଦ କରି ଲଘୁ ଜଳସେଚନ ସୁଯୋଗ ଚାଷୀ ପାଖରେ ପହଞ୍ଚାଇଲେ ଶାରଦ ଧାନ କଟାପରେ ବିଲରେ ପାଣି ମଡ଼ାଇ ଜାନୁଆରୀ, ଫେବୃୟାରୀ ମାସରେ ମୁଗ ବୁଣାଯାଇ ପାରିବ। ଏହି ସମୟରେ ଚାଷ ହେଉଥିବା ମୁଗକୁ ଝାଇଁମୁଗ କୁହାଯାଏ। ଗଣ୍ଡି, ମୁଣ୍ଡ ଫଳିଯିବ।

୫) ୬୦ବର୍ଷରୁ ଅଧିକ ବୟସର ଚାଷୀଙ୍କୁ କୃଷି ବୈଜ୍ଞାନିକ ମାନ୍ୟତା ଦିଆଯାଉ। ରାଜ୍ୟର କୃଷି ବିକାଶ ପାଇଁ ସେମାନଙ୍କର ପରାମର୍ଶ ନୁହେଁ ପ୍ରସ୍ତାବକୁ ଗ୍ରହଣ କରାଯାଉ।

୬) ଦୀର୍ଘମିଆଦି ଯୋଜନା ମାଧ୍ୟମରେ ଦେଶୀ ଗାଈ ପାଳନ ପାଇଁ ପ୍ରୋତ୍ସାହନ ଦେଇ ହଳ, ବଳଦ ପ୍ରବର୍ତ୍ତନ ହିଁ ଚାଷୀ, ଚାଷ, ପରିବେଶ ଓ ଖାଉଟୀଙ୍କୁ ସୁରକ୍ଷା ଦେଇପାରିବ।

ଖୁବ୍ ଶୀଘ୍ର ଏହିସବୁ ପ୍ରସ୍ତାବ କାର୍ଯ୍ୟକାରୀ କରିପାରିଲେ ୪/୫ବର୍ଷ ଭିତରେ ଓଡ଼ିଶାର ଲୋକେ ଥାଳିଏ ଭାତ ଓ ବେଲାଏ ଡାଲି ଖାଇପାରିବେ। କେନ୍ଦ୍ର ସରକାର ଓଡ଼ିଶାରୁ ଡାଲିଜାତୀୟ ଫସଲ ଚାଷର ନୂତନ କୌଶଳ ଶିଖିବାକୁ ବାଧ ହେବେ।

କେନ୍ଦ୍ର ସରକାର ୨୦୧୧-୧୨ବଜେଟରେ ୬୦ହଜାର ଗ୍ରାମରେ ଡାଲିଚାଷ ପାଇଁ ୩୦୦କୋଟି ଟଙ୍କାର ବ୍ୟବସ୍ଥା କରିଛନ୍ତି। ଅର୍ଥାତ ପ୍ରତି ଗ୍ରାମ ପାଇଁ ୫୦,୦୦୦ଟଙ୍କା। ବଜେଟ ବ୍ୟବସ୍ଥା ତ' ସମୁଦ୍ରକୁ ଶଙ୍ଖେ। ତଥାପି ଏହି ଅର୍ଥ କେବଳ କମ୍ପାନୀ ବିହନ, ରାସାୟନିକ ସାର, କୀଟନାଶକ, ଜଳସେଚନ ପାଇଁ ସ୍ପ୍ରିଙ୍କଲର କିଣାକୁ ନିଅଣ୍ଟ ହେବ। ଏଥିରୁ କୌଣସିଟି ଚାଷୀର ଉତ୍ପାଦନ ବୃଦ୍ଧି ପାଇଁ ସାହାଯ୍ୟ କରିବ ନାହିଁ। ଚାଷୀକୁ ଦେଶୀ ବିହନ ମିଳିବ, ପ୍ରତି ଗାଁରୁ ୨୫ଜଣ ଚାଷୀ ମନୋନୀତ କରି ତାଙ୍କୁ ସିଧା ୨୦୦୦ଟଙ୍କା ଦିଆଗଲେ ଡାଲିଜାତୀୟ ଫସଲ ଉତ୍ପାଦନ ଦୁଇଗୁଣ ବଢ଼ିଯିବ। ଓଡ଼ିଶାରେ ଏହି ପ୍ରକାର କାର୍ଯ୍ୟକ୍ରମ ପରୀକ୍ଷା କରାଯାଇପାରେ। ସରକାର କମ୍ପାନୀ ପ୍ରେମ ଛାଡ଼। ଚାଷୀପାଖରେ ଠିଆ ହୁଅ। ଆଗକୁ ଖରାପବେଳ ଆସୁଛି। ମନ୍ତ୍ରୀ, ସାଂସଦ, ବିଧାୟକ, ପଦାଧିକାରୀମାନେ ଆଜହୁଁ ସାବଧାନ ହୁଅନ୍ତୁ।



# ଏଣ୍ଡୋସଲ୍‌ଫାନ୍‌ର ରାଜନୈତିକ ଅର୍ଥନୀତି

ଦିନେ ଆଲବର୍ଟ ସୁଇଜର କହିଥିଲେ ଯେ ମଣିଷ ଆଗକୁ ଦେଖିବା ଓ ଧରିରଖିବାର କ୍ଷମତା ହରାଇ ବସିବ। ସେ ଦୁନିଆକୁ ଧ୍ୱଂସ କରି ନିଜକୁ ସମାପ୍ତ କରିବ। ଏହି ଉକ୍ତିର ସତ୍ୟତା ଦିନକୁ ଦିନ ଅଧିକରୁ ଅଧିକ ପ୍ରମାଣିତ ହେବାରେ ଲାଗିଛି। ଅନ୍ଧଭାବେ ରାସାୟନିକ ସାର ଓ କ୍ଷତିକାରକ କୀଟନାଶକ ବ୍ୟାପକଭାବେ ବ୍ୟବହାର କରି ଖାଦ୍ୟ ଉତ୍ପାଦନକୁ ବହୁଗୁଣିତ କରିବାର ନିଶା ନିଶ୍ଚିତଭାବେ ଏହି ଧରିତ୍ରୀକୁ ନିକଟରେ ହିଁ ଧ୍ୱଂସକରିବ। ଏଣ୍ଡୋସଲଫାନ୍ ହେଉଛି ଏଭଳି ଏକ ସାଂଘାତିକ ରାସାୟନିକ ଦ୍ରବ୍ୟ, ଯାହାର ଭୟଙ୍କର ପ୍ରଭାବ ବୃକ୍ଷ, ମାଟି, ପାଣି, ଓ ପରିବେଶଉପରେ ପଡ଼ିବାର ପ୍ରମାଣ ମିଳିସାରିଛି। ଏହି ହତ୍ୟାକରୀ କୀଟନାଶକ ଏବେ ଭାରତରେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟିଯାଇଛି। ମୁଖ୍ୟସ୍ରୋତର ମୁଦ୍ରିତ ଓ ବୈଦ୍ୟୁତିକ ଗଣମାଧମ ଜୀବଜଗତ ଉପରେ ଏହି କୀଟନାଶକ ଦ୍ୱାରା ପଡୁଥିବା ପ୍ରଭାବଗୁଡ଼ିକୁ ତୁହାକୁ ତୁହା ପ୍ରସାରଣ/ପ୍ରଚାର କରି ଚର୍ଚ୍ଚାକୁ ଆଣିଛନ୍ତି। ଦୈନିକ ଇଂରାଜୀ ଖବରକାଗଜ ହିନ୍ଦୁର ଗତ ୧୫ ମାସ ଭିତରେ ପ୍ରାୟ ୬୦ଟି ଲେଖା ପ୍ରକାଶିତ ହୋଇଛି, ଯେଉଁଥିରେ ଏହାର ଭୟଙ୍କର ପ୍ରଭାବଗୁଡ଼ିକର ବିବରଣୀ ଦିଆଯାଇଛି।

ଜେନେଭାଠାରେ ଏକ ଅନ୍ତଃରାଷ୍ଟ୍ରୀୟ ସନ୍ଧିପାଇଁ ଏପ୍ରିଲ ୨୬-୨୯,୨୦୧୧ ଦିନଗୁଡ଼ିକରେ ଏକାଠି ହୋଇଥିବା ବିଭିନ୍ନଦେଶର ପ୍ରତିନିଧି ସଭାର କାର୍ଯ୍ୟସୂଚୀରେ ଏହି ଭୟଙ୍କର କୀଟନାଶକକୁ ଅସିଦ୍ଧ ଘୋଷଣା କରିବାପାଇଁ ତାଲିକାଭୁକ୍ତ କରାଯାଇଥିଲା। ଏଣ୍ଡୋସଲ୍‌ଫାନ୍ ଉପରେ ଗଢ଼ାଯାଇଥିବା କମିଟି ଏହି କୀଟନାଶକକୁ ସାରାବିଶ୍ୱରେ ଅସିଦ୍ଧ ଘୋଷଣା କରିବାପାଇଁ ଏପ୍ରିଲ୨୮,୨୦୧୧ ଦିନ ସୁପାରିଶ କରିଥିଲା। ଜେନେଭା ସମାବେଶରେ ଏଣ୍ଡୋସଲଫାନ୍‌ର ଉତ୍ପାଦନ ଓ ବିକ୍ରିଉପରେ ଏପ୍ରିଲ ୨୯,୨୦୧୧ର କଟକଣା ଲାଗୁ କରାଗଲା। ( ହିନ୍ଦୁ,ଏପ୍ରିଲ ୨୮-୨୯)

ଜେନେଭା ସମାବେଶର ପୂର୍ବରୁ ୮୧ଟି ଦେଶ ଏଣ୍ଡୋସଲଫାନ୍‌କୁ ଅସିଦ୍ଧ ଘୋଷଣା କରିଛନ୍ତି । ରାସାୟନିକ କୃଷିର ସବୁଠାରୁ ବଡ଼ ପୃଷ୍ଠପୋଷକ ଆମେରିକାର ଏହି କୀଟନାଶକ ଜୁନ୍ ୭,୨୦୧୦ରୁ ଅସିଦ୍ଧ ଘୋଷଣା କରାଯାଇଥିଲା । ଆମେରିକା ଏହି ପଦକ୍ଷେପଟି ନେଇଥିଲା ପ୍ରବଳ ଜନିବରୋଧ ଯୋଗୁଁ ଏବଂ ଯେହେତୁ ପାଣିରେ ରହୁଥିବା ଜୀବମାନଙ୍କ ଉପରେ ଏହାର ପ୍ରଭାବଗୁଡ଼ିକ ଦେଖିବା ପରେ ଆମେରିକାର ପରିବେଶ ସୁରକ୍ଷା ସଂସ୍ଥା ତାକୁ ଅସିଦ୍ଧ ଘୋଷଣା କରିବାପାଇଁ ସୁପାରିଶ କରିଥିଲା । ଏହି ଭୟଙ୍କର ଏଣ୍ଡୋସଲଫାନକୁ ଉତ୍ପାଦନ କରୁଥିବା ପ୍ରମୁଖ କମ୍ପାନୀ ବେୟର ଏହି ଅସିଦ୍ଧ ଘୋଷଣା ଶୁଣିବାପରେ ଉତ୍ପାଦନ ବନ୍ଦ କରିଥିଲା । ଖାଲି ବେୟର କାହିଁକି, ଅନ୍ୟ ବହୁରାଷ୍ଟ୍ରୀୟ କମ୍ପାନୀମାନେ ମଧ୍ୟ ଏଣ୍ଡୋସଲଫାନ୍ ଉତ୍ପାଦନକୁ ବନ୍ଦ କରିସାରିଲେଣି । ନିକଟରେ ଇସ୍ରାଏଲର ଏକ କମ୍ପାନୀ ମଧ୍ୟ ଏଣ୍ଡୋସଲଫାନ୍ କାରବାର ବନ୍ଦ କରିସାରିଛି । ବନ୍ଦ କଲାବେଳେ ମଧ୍ୟ କମ୍ପାନୀଟି ଏକଥା ସ୍ୱୀକାର କରିଛି ଯେ, 'ଏଣ୍ଡୋସଲଫାନ୍ କୃଷିକ୍ଷେତ୍ରର କର୍ମୀ ଓ ଜୀବନ ପ୍ରତି ଯେଉଁ ବିପଦ ଆଣିଦେଉଛି, ତାହା ଗ୍ରହଣ କରାଯାଇ ପାରିବ ନାହିଁ ।' ଷ୍ଟକ୍‌ହୋମ୍‌ଠାରେ ଚାଲିଥିବା ଅଧିବେଶନ ସମୟରେ ହିଁ ୧୨୫ଟି ଦେଶ ଏଣ୍ଡୋସଲଫାନ୍‌କୁ ଅସିଦ୍ଧ ଘୋଷଣା କରିସାରିଥିଲେ । ତେବେ ୟୁରୋପୀୟ ସଂଘ, ଜାପାନ, ଦକ୍ଷିଣ କୋରିଆ, ଅଷ୍ଟ୍ରେଲିଆ ଓ ନ୍ୟୁଜିଲାଣ୍ଡ ଭଳି କେତେକ ଦେଶ ଏହି କୀଟନାଶକକୁ ବୈଜ୍ଞାନିକ ତଥ୍ୟ ଉପରେ ଆଧାର କରି ହିଁ ଅସିଦ୍ଧ ଘୋଷଣା କରିଥିଲେ । କିନ୍ତୁ ଚୀନ୍, ଯିଏକି ଭାରତଠାରୁ ଅଧିକ ଅଞ୍ଚଳରେ ଶଙ୍କର ଧାନ ଓ ବିଟି କପା ଚାଷ କରେ, ଏଭଳି ଅସିଦ୍ଧକୁ ଆଂଶିକଭାବେ ପାଳନ କରିବା ପାଇଁ ସ୍ଥିର କଲା । ବିଡ଼ମ୍ବନାର କଥା ଯେ, ଏହି ଅଧିବେଶନରେ ଉପସ୍ଥିତ ୧୭୩ଟି ଦେଶ ନିଜ ଲୋକମାନଙ୍କ ପାଇଁ ଚିନ୍ତିତ ଥିଲାବେଳେ, ଆମ ଦେଶ ଭାରତର ପ୍ରତିନିଧିମାନେ କୀଟନାଶକ ବିକୁଥିବା କମ୍ପାନୀଙ୍କ ସ୍ୱାର୍ଥରକ୍ଷାପାଇଁ ନିଜ ଉଦ୍ୟମ ଜାରି ରଖିଥିଲେ । ଏଇକଥାଟି ଇଣ୍ଡିଆନ୍ ଏକ୍ସପ୍ରେସ୍ ଖବରକାଗଜର ମେ ୧, ୨୦୧୧ ସଂଖ୍ୟାରେ ମଧ୍ୟ ଆସିଯାଇଛି । ଆମଦେଶର ପ୍ରତିନିଧିମାନେ ଯେ କେବଳ କୀଟନାଶକ କମ୍ପାନୀର ହିତ ପାଇଁ ଆପଣାଛାଏଁ ଉଦ୍ୟମ କରୁଥିଲେ, ତାହା ଆମେ କହିବୁନାହିଁ । ଏମାନଙ୍କ ପଛରେ କେନ୍ଦ୍ର କୃଷିମନ୍ତ୍ରୀ ଶରଦ ପାୱାରଙ୍କର ଆଶୀର୍ବାଦ ଅଛି । ମନ୍ତ୍ରୀ ମହାଶୟ, ଏପ୍ରିଲ ୧୯, ୨୦୧୧ଦିନ ଜାତୀୟ ମାନବ ଅଧିକାର ଆୟୋଗ ସହ ଏକ ବୈଠକରେ ଏଣ୍ଡୋସଲଫାନ୍‌କୁ ଅସିଦ୍ଧ ଘୋଷଣା କରିବାପାଇଁ ସିଧାସଳଖ ମନା କରି ଦେଇଥିଲେ । ତା'ପୂର୍ବରୁ ଫେବୃୟାରୀ ୨୨, ୨୦୧୧ ଦିନ ଲୋକସଭାରେ ଗୋଟିଏ ପ୍ରଶ୍ନର ଉତ୍ତର ଦେଲାବେଳେ, ପାୱାର ମହାଶୟ କହିଥିଲେ

ଯେ ଏହି କୀଟନାଶକକୁ ଅସିଦ୍ଧ ଘୋଷଣା କରିବା ପାଇଁ ଅନେକ ରାଜ୍ୟ ରାଜି ନୁହନ୍ତି। ସେ ଯେଉଁ ସମୟରେ ଏକଥା କହୁଛନ୍ତି, ସେତେବେଳେ ଭାରତୀୟ ଭେଷଜ ଗବେଷଣା ପରିଷଦ (ICMR)ସମେତ ୮୦ଟି ବୈଜ୍ଞାନିକ ଗବେଷଣାଭିତ୍ତିକ ରିପୋର୍ଟ ଆସିଯାଇଛି, ଯେଉଁଥିରେ ଏଣ୍ଡୋସଲଫାନର ଭୟଙ୍କର ପରିଣାମ କଥା କୁହାଯାଇଛି।

କୀଟନାଶକ ଉତ୍ପାଦନକାରୀଙ୍କ ହାତ ବହୁତ ଲମ୍ବା। ୪୫ଟି କୀଟନାଶକ କମ୍ପାନୀମାନଙ୍କ ପାଇଁ କହୁଥିବା କ୍ରପ କେୟାର ଫେଡ଼େରେସନ ଅଫ୍ ଇଣ୍ଡିଆ (CCFI) ଡିସେମ୍ବର ୨୦୧୦ରେ ଏକ ତିନିଦିନିଆ ଅଧିବେଶନ ଡାକି ଭାରତର ରାଷ୍ଟ୍ରପତିଙ୍କଦ୍ୱାରା ଉଦ୍‌ଘାଟିତ କରିଥିଲେ। ଅବଶ୍ୟ ଅଧିବେଶନର ମୁଖ୍ୟ ବକ୍ତା ଥିଲେ ନିଜେ କୃଷି ମନ୍ତ୍ରୀ ଶ୍ରୀ ପାୱାର। ସେଠି ଏଣ୍ଡୋସଲଫାନ୍ କମ୍ପାନୀମାନଙ୍କ ହିତରେ କେବଳ ପ୍ରବଚନ ଦିଆଗଲାନି, ଅନ୍ୟାନ୍ୟ କୀଟନାଶକ ଓ ଜି.ଏମ୍. ବିହନ ସପକ୍ଷରେ ମଧ୍ୟ ଡାକରା ଦିଆଗଲା। ପଇସା କଥା ଯେତେବେଳେ ପଡୁଛି, ଆମ ପ୍ରଧାନମନ୍ତ୍ରୀ ବା ପଛାଇବେ କେମିତି ? ଏଣ୍ଡୋସଲଫାନ୍‌ର ବିକଳ୍ପ କେମିତି ଖୋଜିହେବ, ସେଥିପାଇଁ ସେ ଚିନ୍ତିତ। ବିକଳ୍ପ ବି ମିଳିଯିବ, ବିକଳ୍ପଟି ପରୀକ୍ଷା କରି ତାହା ବି ଠିକ୍ ନୁହେଁ କହିବା ପାଇଁ ତ ଯୁଗଟିଏ ଲାଗିବ। ସେ ଭିତରେ କେତେ ଅର୍ଥ ଯେ କାରବାର ହୋଇସାରିଥିବ, ଏବେ ତ କେବଳ କୀଟନାଶକର ଭାରତୀୟ ବଜାର ହେଉଛି ୪୩,୦୦୦କୋଟି ଟଙ୍କା। କେତେ ଟଙ୍କା ଦଲାଲୀ, ହାତଗୁଞ୍ଜା ବା ପଛପଟ ଦୁଆର ଦେଇ ପଶୁଥିବ, ଜାଣିବାଶୁଣିବା ଲୋକ ଅନୁମାନ କରିପାରିବେ। ଉଦାହରଣ ବି ପାଖରେ ଅଛି, ଉତ୍କୋଚ ଦେଇ କାମହାସଲ କରିବା ମନ୍‌ସାଣ୍ଟୋ କମ୍ପାନୀର ଏକ ପୁରୁଣା ପରିଚୟ। କୁଖ୍ୟାତ କମ୍ପାନୀ ‘ଦାଉ’ ବିରୁଦ୍ଧରେ ଭାରତର ସି.ବି.ଆଇ ମକଦ୍ଦମା ଆରମ୍ଭ କରିଛି ଯେ, ଏହି କମ୍ପାନୀଟି ଦେଶର କୀଟନାଶକ ବିଭାଗରେ ବସୁଥିବା ଅଫିସରମାନଙ୍କୁ ଲାଞ୍ଚ ଦେଇ କାମ କରୁଛି। ଏହାର ପରିଣାମସ୍ୱରୂପ ୪୪ଟି କୀଟନାଶକର ନିୟନ୍ତ୍ରଣ ଓ ୨୨ଟି ଫସଲରେ ଏଣ୍ଡୋସଲଫାନ୍ ପ୍ରୟୋଗ ପାଇଁ ସମ୍ପୃକ୍ତ କମିଟିଠାରୁ ଭାରତ ଛାଡ଼ ପାଇଯାଇଛି। ଏହି କମିଟି ଏହି ପଛପଟୁଆ କାରବାର ଯୋଗୁଁ ୧୧ବର୍ଷ ପାଇଁ ଏଣ୍ଡୋସଲଫାନ୍‌ର ବ୍ୟବହାର ଉପରେ ପ୍ରତିବନ୍ଧ ଲଗାଇଲା ନାହିଁ। ଏଣ୍ଡୋସଲଫାନ୍‌ର ବିକଳ୍ପ ଅଛି କଥାଟି ଆମ ପ୍ରତିନିଧିମାନେ ଗୁରୁତ୍ୱର ସହ କହୁଥିବା ବେଳେ, ଭାରତର କୃଷି ଗବେଷଣା ପରିଷଦ (ICAR) ପାଖରେ ସେଭଳି କିଛି ତଥ୍ୟ ନଥିଲା।

ବିକଳ୍ପ ଅଛି, କିନ୍ତୁ ସରକାରୀ ସଂସ୍ଥାମାନଙ୍କ ପାଖରେ ନୁହେଁ। ୬୦ବର୍ଷରୁ ଊର୍ଦ୍ଧ୍ୱ ପ୍ରତିଟି ଚାଷୀକୁ ଯଦି ପଚରାଯାଏ, ସେମାନେ ରାସାୟନିକ କୀଟନାଶକର ଶହ ଶହ ଦେଶୀ ତଥା ଜୈବିକ ବିକଳ୍ପ କଥା କହିବେ। ଆମ ସରକାର ଆମ ଚାଷୀକୁ ଖାତିର କରନ୍ତି ନାହିଁ, ବିଶ୍ୱାସକୁ ନେବା ତ'ଦୂରର କଥା। ଏହି ବିକଳ୍ପର ଗୁରୁତ୍ୱ ବୁଝି ଦୈନିକ ଇଂରାଜୀ 'ଦି ହିନ୍ଦୁ'ର ମେ ୪, ୨୦୧୧ସଂଖ୍ୟାରେ କୁହାଯାଇଛି, ଏଣ୍ଡୋସଲଫାନ୍‌କୁ ବନ୍ଦ କରାଯିବା ଦରକାର ଏବଂ ଜୈବିକ କୃଷି ହିଁ ଏକମାତ୍ର ଏହାର ବିକଳ୍ପ। ବିକଳ୍ପର ତାଲିକାଟି ବି ବେଶ୍ ଲମ୍ବା ଯେମତିକି ନିମ୍ବ, କରଞ୍ଜ, ଗାଇମୂତ ଏବଂ ଅନେକ ଗଛଲତା ଓ ଛୋଟବଡ଼ ହିତକାରୀ କୀଟପତଙ୍ଗ ଏହି ଜୈବିକ ଔଷଧର ଆଧାର। କେବଳ ପରିବେଶ ଦୃଷ୍ଟିରୁ ଏମାନେ ଉପକାରୀ ନୁହଁନ୍ତି, ଏମାନେ ମାଟିର ପୁଷ୍ଟିକର ଗୁଣଗୁଡ଼ିକୁ ବଢ଼େଇଥାନ୍ତି ମଧ୍ୟ। ଭୟାନକ କୀଟନାଶକ କମ୍ପାନୀମାନେ ଆମ ଭାରତ ସରକାରଙ୍କ ପ୍ରତିନିଧିମାନଙ୍କୁ ନିଜ କବ୍‌ଜାରେ ରଖି ଷ୍ଟକ୍‌ହୋମ୍ ଅଧିବେଶନର ଏଣ୍ଡୋସଲଫାନ୍ ବିରୋଧୀ ବାତାବରଣକୁ ହାଲ୍‌କା କରିଦେଲେ। ଆମ ବଜାରରେ ଏଣ୍ଡୋସଲଫାନ୍ ମିଳିବ କିନ୍ତୁ କେବଳ ୨୨ଟି ଫସଲ ପାଇଁ। ତେବେ ୨୨ରୁ ୨୩ହେବନି ଏକଥାକୁ ଜଗିବ କିଏ ବା ୨୨କାହିଁକି ଏଭଳି ପ୍ରଶ୍ନର କିଛି ଯୁକ୍ତିଯୁକ୍ତ ଉତ୍ତର ନାହିଁ। ପରିଣାମ ହେବ ଯେ ଏବେ ବହୁ ପରିମାଣରେ ଏଣ୍ଡୋସଲଫାନ୍ ବିକ୍ରି ହେବ। ବିଟି କପା ଯାହାକି ମନ୍‌ସାଣ୍ଟୋ କମ୍ପାନୀର ଏକ ଜି.ଏମ୍. ବିହନ; ୨୦୦୧ରେ ଭାରତରେ ପ୍ରଚଳନ କରାଯାଇଥିଲା ଏହା କହିକି ଯେ ଏଥିରେ ଆଉ ପୋକ ଲାଗିବନି। କିନ୍ତୁ ଏବେ ଏହି ବି.ଟି. କପାରେ ବୋଲ୍ ଓ୍ୱାର୍ମ ନାମକ ଏକ କୀଟ ଏତେ ବ୍ୟାପକ ଭାବେ ଲାଗୁଛି ଯେ ଏହି ଏଣ୍ଡୋସଲଫାନ୍‌କୁ ବହୁଳ ମାତ୍ରାରେ ବ୍ୟବହାର କରାଯାଉଛି ବୋଲଓ୍ୱାର୍ମ କୀଟକୁ ମାରିବା ପାଇଁ। ଦେଶୀ କପା ଅପେକ୍ଷା ବି.ଟି. କପାରେ ବେଶୀ ପୋକ; ଏକଥା ଆଉ ଅଛପା ନାହିଁ। ବି.ଟି.କପା ବଜାରକୁ ଆସିବାପରେ ବେଶି କୀଟନାଶକ ବିକ୍ରି ହେଉଛି ଯଦିଓ ଆଉ କୀଟନଶକ ଦରକାର ପଡ଼ିବନି କହି ଏହି ଭୟଙ୍କର କପାବିହନ ବି.ଟି.କପାକୁ ମନ୍‌ସାଣ୍ଟୋ ବଜାରକୁ ଛାଡ଼ିଥିଲା। ଭାରତରେ ତ' ପ୍ରାୟ ୫୦ଭାଗରୁ ଅଧିକ କୀଟନାଶକ ଆମର କପା ଚାଷରେ ବ୍ୟବହାର ହେଉଛି। ତା'ସାଙ୍ଗକୁ ବଢ଼ିଚାଲିଛି କପାଚାଷୀର ଆତ୍ମହତ୍ୟା। ଅଧିକ ବି.ଟି. କପା ବିହନ ପାଇଁ ଅଧିକ ପଇସା ବି ଦରକାର, ଅଧିକ ଋଣ ଦରକାର। ଏବେ ତ'ଭାରତର ବିହନ ସଂଘ ବି.ଟି. କପା ବିହନର ଦର ୨୦୧୧ପାଇଁ ବଢ଼ାଇବା ପାଇଁ ଦାବୀ କରିଛି। ଏଥିପାଇଁ ଆନ୍ଧ୍ର, ମହାରାଷ୍ଟ୍ର ଓ ଗୁଜୁରାଟର ସରକାରମାନେ ସଙ୍କଟରେ ପଡ଼ିଯାଇଛନ୍ତି ବୋଲି ଇକୋନୋମିକ ଟାଇମ୍ସ ଖବରକାଗଜ ମେ ୧୧, ୨୦୧୧ରେ ପ୍ରକାଶ କରିଛି।

ଆମେ ଯଦି ସବୁ କଥାଗୁଡ଼ିକୁ ଏକାଠି କରି ଦେଖିବା , ଆମେ ବୁଝିପାରିବା ଯେ ବିହନର ଦର ବଢ଼ିଲେ, ସାର, ଔଷଧ ଓ ଅନ୍ୟାନ୍ୟ କୃଷି ସାମଗ୍ରୀର ମଧ୍ୟ ଦର ବୃଦ୍ଧି ହୁଏ। ଭାରତର କୃଷିବିଭାଗ ଏହି ସବୁ କାରବାର କରୁଥିବା କମ୍ପାନୀମାନଙ୍କ ହାତବାରିସୀ ହୋଇ କାମ କରିଥାଏ। ଭାରତରେ ଏମାନଙ୍କ କାରବାର ପ୍ରାୟ ୬ଲକ୍ଷ କୋଟି ଟଙ୍କା। ଏତେ ବଡ଼ ବ୍ୟବସାୟରେ କେତେଟଙ୍କା ପକେଟ୍‌କୁ ଯାଉଥିବ,ଅନୁମାନ କରାଯାଇ ପାରେ। ପ୍ରଧାନମନ୍ତ୍ରୀଙ୍କ ଦପ୍ତର ବି ଏଥିରୁ ମୁକ୍ତ ନୁହେଁ। ବିକ୍ରିଚାଲିଛି ଭାରତୀୟ କୃଷି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ହାତରେ। ପ୍ରାୟ ୫୦ଭାଗରୁ ଅଧିକ କୃଷିଜମି ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ହାତରେ-ଆରମ୍ଭ ହୋଇଛି କମ୍ପାନୀ ଚାଷର ସୁବର୍ଣ୍ଣଯୁଗ।

୧୯୫୦ରେ ଏଣ୍ଡୋସଲଫାନ୍‌ର ବ୍ୟବହାର ଆମ ମାଟିରେ ଆରମ୍ଭ ହୋଇଥିଲା। କେବଳ ୨୦୦୭ରେ ଏହି କୀଟନାଶକ ୯୫୦୦ଟନ୍ ପ୍ରୟୋଗ କରାଯାଇ ଥିଲା। ଏହିବର୍ଷ କେବଳ ୫୫୦୦ଟନ୍ ଏଣ୍ଡୋସଲଫାନ୍ ଘରୋଇ ବ୍ୟବହାରରେ ଲାଗିଥିଲା। ଭାରତରେ ସରକାରଙ୍କ ଅଧିନସ୍ତ ହିନ୍ଦୁସ୍ଥାନ୍ ଇନ୍‌ସେକ୍‌ଟି ସାଇଡ୍ ଲିମିଟେଡ୍ ବର୍ଷକୁ ୧୫୦୦ ଟନ୍‌ର ବୈଷୟିକ ମାନର ଏଣ୍ଡୋସଲଫାନ୍ ପ୍ରସ୍ତୁତ କରେ ଏବଂ ୧୯୦୦କିଲୋ ଲିଟର ତରଳ ଏଣ୍ଡୋସଲଫାନ୍ ତିଆରି କରିଥାଏ। ଏଣ୍ଡୋସଲଫାନ୍‌ର ବାର୍ଷିକ ବଜାର ମୂଲ୍ୟ ହେଉଛି ୧୩୪୦ କୋଟିଟଙ୍କା। ଯାହା ଏଣ୍ଡୋସଲଫାନ୍ ଆମର ପ୍ରସ୍ତୁତ ହୁଏ, ସେଥିରୁ ୫୦ଭାଗ ଆମ ଚାଷୀ ବ୍ୟବହାର କରନ୍ତି ଏବଂ ଆଉ ବାକି ବିଦେଶକୁ ରପ୍ତାନୀ ହୁଏ। ସାମୟିକଭାବେ ଯଦିଓ ସୁପ୍ରିମ୍‌କୋର୍ଟ ଏହି କୀଟନାଶକର ଉତ୍ପାଦନ ଉପରେ ରୋକ୍ ଲଗାଇଛନ୍ତି, ତେବେ ଏହାକୁ ସମ୍ପୂର୍ଣ୍ଣଭାବେ ଅସିଦ୍ଧ ଘୋଷଣା କରାଯିବା ଦରକାର। କେବଳ କେରଳରେ ଏଣ୍ଡୋସଲଫାନ୍‌ଜନିତ ଶିଶୁ, ମହିଳା, ବୃଦ୍ଧଙ୍କ ସମେତ ୫୬୧ଟି ମୃତ୍ୟୁଘଟିଛି। ଆକାଶମାର୍ଗରୁ ଏଣ୍ଡୋସଲଫାନ୍ କାଜୁ ବଗିଚାରେ ସିଞ୍ଚନ ଫଳରେ ଏଭଳି ଅଘଟଣ ଘଟି ବିଶ୍ୱରେ ଚର୍ଚ୍ଚାକୁ ଆସିଥିଲା। ତିନି ହଜାରରୁ ଅଧିକ ଲୋକ କୀଟନାଶକ ଯୋଗୁଁ କେରଳରେ ଏବେ ପୀଡ଼ିତ ଅଛନ୍ତି। ବିଶ୍ୱସ୍ତ ସୂତ୍ରରୁ ଜଣାପଡୁଛି ଯେ ଏହି ସଂଖ୍ୟା ୮ ବା ୯ହଜାର ହେବ। ଯଦିଓ କେରଳରେ କାଜୁଚାଷ ୧୯୬୩ରେ ଆରମ୍ଭ ହୋଇଥିଲା, ୨୦୦୬ରେ କେରଳ ସରକାର ଏଣ୍ଡୋସଲଫାନ୍‌ର ପ୍ରୟୋଗକୁ ଅସିଦ୍ଧ ଘୋଷଣା କଲେ। ପ୍ରଶ୍ନଉଠୁଛି ସରକାର ୪୦ ବର୍ଷରୁ ଊର୍ଦ୍ଧ୍ୱ କାଳ ଏବଂ ମୃତ ଓ ପୀଡ଼ିତଙ୍କ ସଂଖ୍ୟା ଏତେ ବଢ଼ିବା ଯାଏଁ ଅପେକ୍ଷା କରିଥିଲେ କାହିଁକି ? କେରଳରେ ବାମପନ୍ଥୀ ସରକାର ସମ୍ପୂର୍ଣ୍ଣଭାବେ ଏଣ୍ଡୋସଲଫାନ୍‌କୁ ଅସିଦ୍ଧ ଘୋଷଣା କରିପାରିଥାନ୍ତେ। କେରଳରେ ପ୍ରଦୂଷଣ ନିୟନ୍ତ୍ରଣବୋର୍ଡ଼ ଯେଉଁ କେତୋଟି ପ୍ରତିବନ୍ଧକ ସହ

ହିନ୍ଦୁସ୍ଥାନ୍ ଇନ୍‌ସେକ୍‌ଟିସାଇଡ଼୍ ଲିମିଟେଡ଼ କମ୍ପାନୀକୁ ଅନୁମତି ଦେଇଛି, ତାହା ଧର୍ମକୁ ଆଖିଠାର ଭଳି। ଯଦି ବାମପନ୍ଥୀ ସରକାର ଅସିଦ୍ଧ ଘୋଷଣା କରିପାରିଲେନି, କଂଗ୍ରେସ ସରକାର ଯିଏ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ପୃଷ୍ଠପୋଷକତାରେ ବଞ୍ଚି ଆସିଛନ୍ତି ସେମାନଙ୍କଠୁଁ ବା ଆଶା କରିବା କ'ଣ ?

ଏମିତିରେ ସାଧାରଣ ଚାଷୀ ବା ଖାଉଟିର ମନରେ ପ୍ରଶ୍ନ ଆସିପାରେ ଏହି କୀଟନାଶକ କ'ଣ ସତରେ ଏତେ ମାରାତ୍ମକ। ସମଗ୍ର ବିଶ୍ୱରେ ଚିନ୍ତାଶୀଳ ବ୍ୟକ୍ତି ଓ ବିଜ୍ଞାନୀମାନେ ଏହି କୀଟନାଶକ ପାଇଁ ଏତେ ଚିନ୍ତିତ କାହିଁକି ? ଏହି କୀଟନାଶକ ଅନେକ କୀଟକୁ ମୁକାବିଲା କରିପାରେ ବୋଲି କୁହାଯାଏ ଯଥା ଖାଦ୍ୟଶସ୍ୟ, କପା, ଫଳ, ତୈଳବୀଜ, ଆଳୁ, ପନିପରିବା ଏବଂ ଏମିତି କିଛି ଫସଲ ସେ ଭିତରେ ଅଛି। କିନ୍ତୁ ଏହାର ବିଷ ଅନେକ ଦିନ ଧରି ଏହି ଖାଦ୍ୟକୁ ଭକ୍ଷଣ ବା ବ୍ୟବହାର କରୁଥିବା ଲୋକଙ୍କ ଭିତରେ ରହିଯାଏ। ଆମେରିକାର ରାଚେଲ କାରସନ୍‌ଙ୍କ ସୂତ୍ରରୁ ଜଣାପଡ଼େ ଯେ କିଡ୍‌ନୀ, ଆଖି ଏବଂ ଅନ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଏହାଦ୍ୱାରା କ୍ଷତିଗ୍ରସ୍ତ ହୋଇଥାଏ। ଏପରିକି ଏହାର ପ୍ରଭାବ ମାଛ, ମାଛି ଇତ୍ୟାଦି ଅନେକ ଜୀବପାଇଁ ମଧ୍ୟ ଅତି କ୍ଷତିକାରକ। କେରଳର କସରଗଡ଼ ଅଞ୍ଚଳରେ, ଯେଉଁଠି ଏହି କୀଟନାଶକର ଶିକାର ବହୁତ ଲୋକ ହୋଇଥିଲେ, ସେଠି ନବଜାତ ଶିଶୁମାନଙ୍କର ଜନ୍ମରେ ଅନେକ ତ୍ରୁଟି ଓ ବ୍ୟତିକ୍ରମ ଦେଖିବାକୁ ମିଳିଥିଲା। ଝିଅମାନଙ୍କ କ୍ଷେତ୍ରରେ ରଜୋବତୀ ହେବାରେ ବିଳମ୍ବ ଦେଖାଯାଉଥିଲା। ମାନସିକ ବିକଳାଙ୍ଗ, ମାନସିକ ରୋଗୀଙ୍କ ସଂଖ୍ୟା ବଢ଼ିଥିଲା, ପ୍ରଜନନ କ୍ଷମତା କମିଥିଲା, ଶିଶୁମାନେ ଅନ୍ଧହେବା ଏବଂ ସମସ୍ତଙ୍କ କ୍ଷେତ୍ରରେ କର୍କଟ ରୋଗୀଙ୍କ ସଂଖ୍ୟା ବଢ଼ିବା ଦେଖାଯାଇଥିଲା। ସ୍ତ୍ରୀ ଲୋକମାନଙ୍କର ରକ୍ତ ଓ ସ୍ତନରେ ଅତିମାତ୍ରାରେ ଏଣ୍ଡୋସଲଫାନ୍‌ର ନଷ୍ଟ ହୋଇପାରୁନଥିବା ଅଂଶସବୁ ଦେଖିବାକୁ ମିଳିଥିଲା। ସ୍ତ୍ରୀ ଲୋକମାନଙ୍କର ପ୍ରଜନନ ଶକ୍ତି ଓ ସ୍ନାୟୁତନ୍ତ୍ର ଦୁର୍ବଳ ହେବା ଏବଂ ପୁରୁଷମାନଙ୍କର ବୀର୍ଯ୍ୟରେ ଶୁକ୍ରାଣୁ ପରିମାଣ କମିବା ଇତ୍ୟାଦି ବହୁମାତ୍ରାରେ ଦେଖିବାକୁ ମିଳିଥିଲା। ଏହି କୀଟନାଶକର ଯେଉଁ ଅଂଶବିଶେଷ ଦେହରେ ରହିଯାଏ, ସେଥିପାଇଁ କିଡ୍‌ନୀ ନଷ୍ଟ, ଗର୍ଭନଷ୍ଟ, ଅସ୍ୱାଭାବିକ ଭ୍ରୂଣ, ଲିଭର ନଷ୍ଟ, ଅଣ୍ଡକୋଷ ଓ ସ୍ତନକର୍କଟ, ମୂତ୍ରନଳୀ କର୍କଟ ଇତ୍ୟାଦି ସବୁ ରୋଗ ହୋଇଥାଏ। ଏଣ୍ଡୋସଲଫାନ୍‌ର ଟୁକୁରା ହୋଇଯାଇ ଥିବା ଅଂଶ, ଏଣ୍ଡୋସଲଫାନ୍‌ମୂଳ କୀଟନାଶକ ଅପେକ୍ଷା ଅଧିକ ମାରାତ୍ମକ। ୨୦୦୨ରେ ଭାରତର ଭେଷଜ ସଂଘ ଏହି କସରଗଡ଼ ଜିଲ୍ଲାରେ ଏଣ୍ଡୋସଲଫାନ୍‌ର ବିଭୀଷିକାକୁ ନେଇ ଯେଉଁ ଅନୁସନ୍ଧାନଟି କଲେ, ତାହାର ବିବରଣୀରେ ପଶ୍ଚିମ ଆଫ୍ରିକାର ବେନିନ୍‌ରେ ଏହି କୀଟନାଶକୁ ନେଇ ଯେଉଁ

ତଥ୍ୟ ଆସିଥିଲା, ତା'ର ଏକ ଭୟଙ୍କର ଚିତ୍ରକୁ ସ୍ଥାନ ଦେଇଥିଲେ । ସେଠି ଯାହା କୁହାଯାଇଥିଲା ଆମେ ସମସ୍ତଙ୍କୁ ବ୍ୟଥିତ କରିବ ନିଶ୍ଚୟ- 'ମାଟିର ପୋକମାନେ ମାଟିତଳୁ ମୁଣ୍ଡ ଟେକି ବାହାରିଲେ, ସଙ୍ଗେ ସଙ୍ଗେ ମରିଗଲେ । ସେହି ପୋକଗୁଡ଼ିକୁ ଖାଇବା ପାଇଁ ପକ୍ଷୀମାନେ ଉଡ଼ି ଆସିଲେ, ଖାଇଲେ, ସେମାନେ ମଧ୍ୟ ମରିଗଲେ ।' 'ଗୋଟିଏ କପାକ୍ଷେତରେ ଯେଉଁଠି ଏଣ୍ଡୋସଲଫାନ୍ ଛିଞ୍ଚା ଯାଇଥିଲା,ଉଇମାନେ ମରିଗଲେ । ଗୋଟିଏ ବେଙ୍ଗ ସେଇ ମଲା ଉଇଗୁଡ଼ିକୁ ଖାଇଥିଲା, କିଛି ସମୟ ପରେ ମୃତ୍ୟୁ ହୋଇଯାଇଥିଲା ବେଙ୍ଗଟିର । କିଛି ଦୂରରୁ ସ୍ଥିର ବେଙ୍ଗଟିକୁ ଦେଖି ପେଚାଟିଏ ଉଡ଼ି ଆସିଲା । ଆଧାର ମିଳିଗଲା ଭାବି ଗଛ ଡାଳକୁ ନେଇଗଲା ନିଜର ଆହାର ପାଇଁ । ୧୦ମିନିଟ୍ ପରେ ପେଚାଟି ଗଛତଳକୁ ଖସିପଡ଼ିଲା ଓ ମରିଗଲା । (ଫ୍ରେଣ୍ଟଲାଇନ୍, ୧୭ ଡିସେମ୍ବର୨୦୧୦) ।

ରାଚେଲ କାରସନ 'ନିସ୍ତବ୍ଧ ବସନ୍ତ' ନାମରେ ୧୯୬୨ମସିହାରେ ଏକ ପୁସ୍ତକଲେଖି ବିଂଶ ଶତାବ୍ଦୀର ସବୁଠାରୁ ଭୟଙ୍କର କୀଟନାଶକ ଡି.ଡି.ଟି.ଠାରୁ ମଣିଷ ସମାଜକୁ କେମିତି ବଞ୍ଚାଇ ହେବ, ଯୁକ୍ତି ବାଢ଼ିଥିଲେ । ଡି.ଡି.ଟିକୁ ସମଗ୍ର ବିଶ୍ୱରେ ଅସିଦ୍ଧ ଘୋଷଣା କରାଗଲା । ଏକବିଂଶ ଶତାବ୍ଦୀର ସବୁଠାରୁ ଭୟଙ୍କର କୀଟନାଶକ ହେଉଛି ଏଣ୍ଡୋସଲଫାନ୍ । ଏହି କୀଟନାଶକ ଏବଂ ଏଭଳି ସବୁ କୀଟନାଶକକୁ ତୁରନ୍ତ ଅସିଦ୍ଧ ଘୋଷଣା କରାଯିବା ଦରକାର । 'ଆମର ଚୋରି ହୋଇଥିବା ଭବିଷ୍ୟତ' ନାମକ ପୁସ୍ତକର ପୃଷ୍ଠାଗୁଡ଼ିକରେ ସେହି ସବୁ ଭୟଙ୍କର ଚିତ୍ରଗୁଡ଼ିକୁ ସ୍ଥାନ ଦିଆଯାଇଛି, ଯେଉଁଠି କୁହାଯାଇଛି କେମିତି ଏହି କୀଟନାଶକଗୁଡ଼ିକ ଆମକୁ ପଙ୍ଗୁ କରିଦେବ, ଆମର ଧୀଶକ୍ତିକୁ ଧ୍ୱଂସ କରିବ ଏବଂ ଆମେ ବଞ୍ଚିବାଟା ଦୁର୍ବିସହ ହେବ । ଥିଓ ତୋଲ୍‌ବର୍ଣ୍ଣ, ଡାଏନି ଡୁମାନସ୍କି ଏବଂ ଜନ୍ ପିଟେ୍ରସନ୍ ମାଇରସ୍‌ଙ୍କ ଦ୍ୱାରା ଲିଖିତ ଏହି ପୁସ୍ତକଟିକୁ ଆମର ବୁଦ୍ଧିଜୀବୀ, ଗବେଷକ, ବୈଜ୍ଞାନିକ, ସାମାଜିକ କର୍ମୀ, ଅଧ୍ୟାପକ, ଖାଉଟୀ ଇତ୍ୟାଦି ସମସ୍ତେ ତୁହାକୁ ତୁହା ପଢ଼ିବା ଦରକାର । ସେମାନେ ନିଜର ହଜେଇଥିବା ବୁଦ୍ଧିମତାକୁ ଏହାର ପୃଷ୍ଠାଗୁଡ଼ିକରୁ ପାଇବେ ଏବଂ ମାନବ ସମାଜ ଉପରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଏହି ରାସାୟନିକ ଯୁଦ୍ଧ ବିରୁଦ୍ଧରେ ସଂଗ୍ରାମ ପାଇଁ ଶକ୍ତି ଓ ପ୍ରେରଣା ପାଇବେ । ଅନ୍ତତଃ ଆମ ଆଖି ଆଗରେ ସମଗ୍ର ବିଶ୍ୱ ଯେଉଁଭଳି ଭାବେ ମରୁଭୂମିରେ ରୂପାନ୍ତରିତ ହେବାରେ ଲାଗିଛି, ସେ ପ୍ରକ୍ରିୟା ବନ୍ଦ ହେବ ।

ଏକଥା ପୁଣିଥରେ ମନେ ପକାଇଦେବା ଉଚିତ ମନେକରୁଛି ଯେ, ଯଦି ଆମେ ଏକ ମୁକ୍ତ ପରିବେଶ, ଖାଦ୍ୟ ସାର୍ବଭୌମତା ଓ ସ୍ୱାସ୍ଥ୍ୟକର ଖାଦ୍ୟ କଥା ଚିନ୍ତା କରୁଛୁ; ତେବେ

ଜୈବିକ ଚାଷ, ବିଶେଷ କରି ଦେଶୀଚାଷକୁ ଏକମାତ୍ର ପନ୍ଥା ଓ ଅବଲମ୍ବନ ବୋଲି ସ୍ୱୀକାର କରିବାକୁ ପଡ଼ିବ। ଦେଶୀ ଚାଷର ପ୍ରଥମ ଆବଶ୍ୟକତା ହେଉଛି ବିହନଉପରେ ଅଧିକାର ଚାଷୀର ରହିବ ଏବଂ ତା' ହାତପାହାନ୍ତାରେ ବିହନ ରହିବ। ଯଦି ଦେଶୀ ବିହନ ଉପରେ ଚାଷୀର ଅଧିକାରକୁ ସ୍ୱୀକାର କରି ବିହନର ପ୍ରସାର ଓ ଦେଶୀ ଚାଷର ପ୍ରଚଳନ ବ୍ୟାପକ କରାଯାଏ-ତେବେ ଏଣ୍ଡୋସଲଫାନ୍ କାହିଁକି ଆମର କୌଣସି କୀଟନାଶକର ଆବଶ୍ୟକତା ଆଉ ପଡ଼ିବନି। ତେବେ ଏଣ୍ଡୋସଲଫାନ୍ ବିରୁଦ୍ଧରେ ସାମୟିକ ବିଜୟକୁ ଆମେ କେତେଦୂର ଆଗକୁ ନେଇ ପାରୁଛେ, ତାହା ଆମର ଦେଶୀ ଚାଷ ଓ ଦେଶୀ ବିହନକୁ ନେଇ କ'ଣ ଦୃଷ୍ଟିକୋଣ ଓ ଆନ୍ତରିକତା ରହିଛି, ତା'ରି ଉପରେ ନିର୍ଭର କରିବ।

ଖାଲି ବେୟର କାହିଁକି, ଅନ୍ୟ ବହୁରାଷ୍ଟ୍ରୀୟ କମ୍ପାନୀମାନେ ମଧ୍ୟ ଏଣ୍ଡୋସଲଫାନ୍ ଉତ୍ପାଦନକୁ ବନ୍ଦ କରିସାରିଲେଣି। ନିକଟରେ ଇସ୍ରାଏଲର ଏକ କମ୍ପାନୀ ମଧ୍ୟ ଏଣ୍ଡୋସଲଫାନ୍ କାରବାର ବନ୍ଦ କରିସାରିଛି। ବନ୍ଦ କଲାବେଳେ ମଧ୍ୟ କମ୍ପାନୀଟି ଏକଥା ସ୍ୱୀକାର କରିଛି ଯେ, 'ଏଣ୍ଡୋସଲଫାନ୍ କୃଷିକ୍ଷେତ୍ରର କର୍ମୀ ଓ ଜୀବନ ପ୍ରତି ଯେଉଁ ବିପଦ ଆଣିଦେଉଛି, ତାହା ଗ୍ରହଣ କରାଯାଇ ପାରିବ ନାହିଁ।' ଷ୍ଟକ୍‌ହୋମ୍‌ଠାରେ ଚାଲିଥିବା ଅଧିବେଶନ ସମୟରେ ହିଁ ୧୨୫ଟି ଦେଶ ଏଣ୍ଡୋସଲଫାନ୍‌କୁ ଅସିଦ୍ଧ ଘୋଷଣା କରିସାରିଥିଲେ। ତେବେ ୟୁରୋପୀୟ ସଂଘ, ଜାପାନ, ଦକ୍ଷିଣ କୋରିଆ, ଅଷ୍ଟ୍ରେଲିଆ ଓ ନ୍ୟୁଜିଲାଣ୍ଡ ଭଳି କେତେକ ଦେଶ ଏହି କୀଟନାଶକକୁ ବୈଜ୍ଞାନିକ ତଥ୍ୟ ଉପରେ ଆଧାର କରି ହିଁ ଅସିଦ୍ଧ ଘୋଷଣା କରିଥିଲେ। କିନ୍ତୁ ଚୀନ୍, ଯିଏକି ଭାରତଠାରୁ ଅଧିକ ଅଞ୍ଚଳରେ ଶଙ୍କର ଧାନ ଓ ବିଟି କପା ଚାଷ କରେ, ଏଭଳି ଅସିଦ୍ଧକୁ ଆଂଶିକଭାବେ ପାଳନ କରିବା ପାଇଁ ସ୍ଥିର କଲା। ବିଡ଼ମ୍ବନାର କଥା ଯେ, ଏହି ଅଧିବେଶନରେ ଉପସ୍ଥିତ ୧୭୩ଟି ଦେଶ ନିଜ ଲୋକମାନଙ୍କ ପାଇଁ ଚିନ୍ତିତ ଥିଲାବେଳେ, ଆମ ଦେଶ ଭାରତର ପ୍ରତିନିଧିମାନେ କୀଟନାଶକ ବିକୁଥିବା କମ୍ପାନୀଙ୍କ ସ୍ୱାର୍ଥରକ୍ଷାପାଇଁ ନିଜ ଉଦ୍ୟମ ଜାରି ରଖିଥିଲେ। ଏଇକଥାଟି ଇଣ୍ଡିଆନ୍ ଏକ୍ସପ୍ରେସ୍ ଖବରକାଗଜର ମେ ୧, ୨୦୧୧ ସଂଖ୍ୟାରେ ମଧ୍ୟ ଆସିଯାଇଛି। ଆମଦେଶର ପ୍ରତିନିଧିମାନେ ଯେ କେବଳ କୀଟନାଶକ କମ୍ପାନୀର ହିତ ପାଇଁ ଆପଣାଛାଏଁ ଉଦ୍ୟମ କରୁଥିଲେ, ତାହା ଆମେ କହିବୁନାହିଁ। ଏମାନଙ୍କ ପଛରେ କେନ୍ଦ୍ର କୃଷିମନ୍ତ୍ରୀ ଶରଦ ପାୱାରଙ୍କର ଆଶୀର୍ବାଦ ଅଛି। ମନ୍ତ୍ରୀ ମହାଶୟ, ଏପ୍ରିଲ ୧୯, ୨୦୧୧ଦିନ ଜାତୀୟ ମାନବ ଅଧିକାର ଆୟୋଗ ସହ ଏକ ବୈଠକରେ ଏଣ୍ଡୋସଲଫାନ୍‌କୁ ଅସିଦ୍ଧ ଘୋଷଣା କରିବାପାଇଁ ସିଧାସଳଖ ମନା କରି ଦେଇଥିଲେ। ତା'ପୂର୍ବରୁ ଫେବୃୟାରୀ ୨୨, ୨୦୧୧ ଦିନ ଲୋକସଭାରେ ଗୋଟିଏ

ପ୍ରଶ୍ନର ଉତ୍ତର ଦେଲାବେଳେ, ପାୱାର ମହାଶୟ କହିଥିଲେ ଯେ ଏହି କୀଟନାଶକକୁ ଅସିଦ୍ଧ ଘୋଷଣା କରିବା ପାଇଁ ଅନେକ ରାଜ୍ୟ ରାଜି ନୁହନ୍ତି। ସେ ଯେଉଁ ସମୟରେ ଏକଥା କହୁଛନ୍ତି, ସେତେବେଳେ ଭାରତୀୟ ଭେଷଜ ଗବେଷଣା ପରିଷଦ (ICMR) ସମେତ ୮୦ଟି ବୈଜ୍ଞାନିକ ଗବେଷଣାଭିତ୍ତିକ ରିପୋର୍ଟ ଆସିଯାଇଛି, ଯେଉଁଥିରେ ଏଣ୍ଡୋସଲଫାନର ଭୟଙ୍କର ପରିଣାମ କଥା କୁହାଯାଇଛି।

କୀଟନାଶକ ଉତ୍ପାଦନକାରୀଙ୍କ ହାତ ବହୁତ ଲମ୍ବା। ୪୫ଟି କୀଟନାଶକ କମ୍ପାନୀମାନଙ୍କ ପାଇଁ କହୁଥିବା କ୍ରପ କେୟାର ଫେଡ଼େରେସନ ଅଫ୍ ଇଣ୍ଡିଆ (CCFI) ଡିସେମ୍ବର ୨୦୧୦ରେ ଏକ ତିନିଦିନିଆ ଅଧିବେଶନ ଡାକି ଭାରତର ରାଷ୍ଟ୍ରପତିଙ୍କଦ୍ୱାରା ଉଦ୍‌ଘାଟିତ କରିଥିଲେ। ଅବଶ୍ୟ ଅଧିବେଶନର ମୁଖ୍ୟ ବକ୍ତା ଥିଲେ ନିଜେ କୃଷି ମନ୍ତ୍ରୀ ଶ୍ରୀ ପାୱାର। ସେଠି ଏଣ୍ଡୋସଲଫାନ୍ କମ୍ପାନୀମାନଙ୍କ ହିତରେ କେବଳ ପ୍ରବଚନ ଦିଆଗଲାନି, ଅନ୍ୟାନ୍ୟ କୀଟନାଶକ ଓ ଜି.ଏମ୍. ବିହନ ସପକ୍ଷରେ ମଧ ଡାକରା ଦିଆଗଲା। ପଇସା କଥା ଯେତେବେଳେ ପଡୁଛି, ଆମ ପ୍ରଧାନମନ୍ତ୍ରୀ ବା ପଛାଇବେ କେମିତି ? ଏଣ୍ଡୋସଲଫାନ୍‌ର ବିକଳ୍ପ କେମିତି ଖୋଜିହେବ, ସେଥିପାଇଁ ସେ ଚିନ୍ତିତ। ବିକଳ୍ପ ବି ମିଳିଯିବ, ବିକଳ୍ପଟି ପରୀକ୍ଷା କରି ତାହା ବି ଠିକ୍ ନୁହେଁ କହିବା ପାଇଁ ତ ଯୁଗଟିଏ ଲାଗିବ। ସେ ଭିତରେ କେତେ ଅର୍ଥ ଯେ କାରବାର ହୋଇସାରିଥିବ, ଏବେ ତ କେବଳ କୀଟନାଶକର ଭାରତୀୟ ବଜାର ହେଉଛି ୪୩,୦୦୦କୋଟି ଟଙ୍କା। କେତେ ଟଙ୍କା ଦଲାଲୀ, ହାତଗୁଞ୍ଜା ବା ପଛପଟ ଦୁଆର ଦେଇ ପଶୁଥିବ, ଜାଣିବାଶୁଣିବା ଲୋକ ଅନୁମାନ କରିପାରିବେ। ଉଦାହରଣ ବି ପାଖରେ ଅଛି, ଉତ୍କୋଚ ଦେଇ କାମହାସଲ କରିବା ମନ୍‌ସାଣ୍ଟୋ କମ୍ପାନୀର ଏକ ପୁରୁଣା ପରିଚୟ। କୁଖ୍ୟାତ କମ୍ପାନୀ 'ଦାଉ' ବିରୁଦ୍ଧରେ ଭାରତର ସି.ବି.ଆଇ ମକଦ୍ଦମା ଆରମ୍ଭ କରିଛି ଯେ, ଏହି କମ୍ପାନୀଟି ଦେଶର କୀଟନାଶକ ବିଭାଗରେ ବସୁଥିବା ଅଫିସରମାନଙ୍କୁ ଲାଞ୍ଚ ଦେଇ କାମ କରୁଛି। ଏହାର ପରିଣାମସ୍ୱରୂପ ୪୪ଟି କୀଟନାଶକର ନିୟନ୍ତ୍ରଣ ଓ ୨୨ଟି ଫସଲରେ ଏଣ୍ଡୋସଲଫାନ୍ ପ୍ରୟୋଗ ପାଇଁ ସମ୍ପୃକ୍ତ କମିଟିଠାରୁ ଭାରତ ଛାଡ଼ ପାଇଯାଇଛି। ଏହି କମିଟି ଏହି ପଛପଟୁଆ କାରବାର ଯୋଗୁଁ ୧୧ବର୍ଷ ପାଇଁ ଏଣ୍ଡୋସଲଫାନ୍‌ର ବ୍ୟବହାର ଉପରେ ପ୍ରତିବନ୍ଧ ଲଗାଇଲା ନାହିଁ। ଏଣ୍ଡୋସଲଫାନ୍‌ର ବିକଳ୍ପ ଅଛି କଥାଟି ଆମ ପ୍ରତିନିଧିମାନେ ଗୁରୁତ୍ୱର ସହ କହୁଥିବା ବେଳେ, ଭାରତର କୃଷି ଗବେଷଣା ପରିଷଦ (ICAR) ପାଖରେ ସେଭଳି କିଛି ତଥ୍ୟ ନଥିଲା।

ଏକଥା ପୁଣିଥରେ ମନେ ପକାଇଦେବା ଉଚିତ ମନେକରୁଛି ଯେ, ଯଦି ଆମେ ଏକ ମୁକ୍ତ ପରିବେଶ, ଖାଦ୍ୟ ସାର୍ବଭୌମତା ଓ ସ୍ୱାସ୍ଥ୍ୟକର ଖାଦ୍ୟ କଥା ଚିନ୍ତା କରୁଛୁ; ତେବେ ଜୈବିକ ଚାଷ, ବିଶେଷ କରି ଦେଶୀଚାଷକୁ ଏକମାତ୍ର ପନ୍ଥା ଓ ଅବଲମ୍ବନ ବୋଲି ସ୍ୱୀକାର କରିବାକୁ ପଡ଼ିବ। ଦେଶୀ ଚାଷର ପ୍ରଥମ ଆବଶ୍ୟକତା ହେଉଛି ବିହନଉପରେ ଅଧିକାର ଚାଷୀର ରହିବ ଏବଂ ତା' ହାତପାହାନ୍ତାରେ ବିହନ ରହିବ। ଯଦି ଦେଶୀ ବିହନ ଉପରେ ଚାଷୀର ଅଧିକାରକୁ ସ୍ୱୀକାର କରି ବିହନର ପ୍ରସାର ଓ ଦେଶୀ ଚାଷର ପ୍ରଚଳନ ବ୍ୟାପକ କରାଯାଏ-ତେବେ ଏଣ୍ଡୋସଲଫାନ୍ କାହିଁକି ଆମର କୌଣସି କୀଟନାଶକର ଆବଶ୍ୟକତା ଆଉ ପଡ଼ିବନି। ତେବେ ଏଣ୍ଡୋସଲଫାନ୍ ବିରୁଦ୍ଧରେ ସାମୟିକ ବିଜୟକୁ ଆମେ କେତେଦୂର ଆଗକୁ ନେଇ ପାରୁଛେ, ତାହା ଆମର ଦେଶୀ ଚାଷ ଓ ଦେଶୀ ବିହନକୁ ନେଇ କ'ଣ ଦୃଷ୍ଟିକୋଣ ଓ ଆନ୍ତରିକତା ରହିଛି, ତା'ରି ଉପରେ ନିର୍ଭର କରିବ।



# ବିଶ୍ୱ ଖାଦ୍ୟ ସଙ୍କଟ ଓ ଓଡ଼ିଶା

ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ପୃଥିବୀରେ ପାଣି ପାଇଁ ଯୁଦ୍ଧ ମୁଣ୍ଡଟେକିଲା। ସାମ୍ରାଜ୍ୟବାଦୀ ଆମେରିକା ଓ ଏହାର ସହଯୋଗୀ ୟୁରୋପୀୟ ପୁଞ୍ଜିବାଦୀ ରାଷ୍ଟ୍ରମାନେ ଜଳର ବଜାରୀକରଣ କରି ଭୂପୃଷ୍ଠ ଓ ଭୂତଳ ଜଳର ମାଲିକାନା ହାସଲ କରିଚାଲିଛନ୍ତି। ଭାତ, ରୁଟି ଭଳି ପାଣି ଏବେ ଏକ ପଣ୍ୟଦ୍ରବ୍ୟ ଏବଂ ଏହାର କିଣାବିକା ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ନିୟନ୍ତ୍ରଣରେ। ଏକବିଂଶ ଶତାବ୍ଦୀର ଯୁଦ୍ଧ ଖାଦ୍ୟପାଇଁ ହେବ। ଏଣିକି ଆମେରିକା ଭଳି ସାମ୍ରାଜ୍ୟବାଦୀ ଶକ୍ତିମାନେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଗରିବ ଦେଶଗୁଡ଼ିକୁ ହାତରେ ନମାରି ଭାତରେ ମାରିବାର ଦୀର୍ଘମିଆଦି ଯୋଜନା କାର୍ଯ୍ୟକାରୀ କଲେଣି। ବର୍ତ୍ତମାନ ଉପୁଜିଥିବା ଖାଦ୍ୟସଙ୍କଟ ଏହାର ଜ୍ୱଳନ୍ତ ପ୍ରମାଣ। ପାଣିପାଗ ପରିବର୍ତ୍ତନ, ଖାଦ୍ୟପଦାର୍ଥକୁ ଜୈବ ଇନ୍ଧନକୁ ରୂପାନ୍ତର ଓ ଉତ୍ପାଦିକା ଶକ୍ତି ହ୍ରାସ ଯୋଗୁଁ ପୃଥିବୀରେ ଖାଦ୍ୟସଙ୍କଟ ଦେଖାଦେବା କଥା ଜାତିସଂଘ, ବିଶ୍ୱ ଖାଦ୍ୟ ସଂସ୍ଥା ଓ ବିଶ୍ୱବ୍ୟାଙ୍କ ଭଳି ଆମେରିକା ନିର୍ଦ୍ଦେଶରେ ପରିଚାଳିତ ସଂସ୍ଥାମାନେ କହିବୁଲୁଛନ୍ତି। ମାତ୍ର ଏହା ପଛରେ ଏକ ବିରାଟ ଷଡ଼ଯନ୍ତ୍ର ଅଛି। ଭାରତ ବିଶେଷ କରି ଓଡ଼ିଶାଭଳି ଗରିବ ରାଜ୍ୟ ଏଭଳି ଏକ ଉଦ୍‌ବେଗଜନକ ପରିସ୍ଥିତିରେ ଖୁବ୍ ପ୍ରଭାବିତ ହେବ, ଏହା ଦୃଢ଼ତାର ସହିତ କୁହାଯାଇପାରେ।

## ପୃଥିବୀରେ ଖାଦ୍ୟର ସ୍ଥିତି:

ଗତ ୨୫ବର୍ଷର ଖାଦ୍ୟପଦାର୍ଥର ସ୍ଥିତି ଆକଳନ କଲେ ଜଣାପଡ଼େ ୨୦୦୮ମସିହାରେ ପୃଥିବୀର ଗଚ୍ଛିତ ଖାଦ୍ୟ ପରିମାଣ ସବୁଠାରୁ କମ୍। ବିଶ୍ୱଖାଦ୍ୟ ସଂସ୍ଥାର ମହାନିର୍ଦ୍ଦେଶକ ଯାକ୍ୟୁମ ଡ଼ାଇପୋଂ କୁହନ୍ତି ଏପ୍ରିଲ ପହିଲା, ୨୦୦୮ସୁଦ୍ଧା ପୃଥିବୀରେ ଯାହା ଖାଦ୍ୟ ଅଛି ଏହା ମାତ୍ର ୧୨ ସପ୍ତାହ ବା ୩ମାସ ପାଇଁ ଚଳିଯିବା ସମ୍ଭବ ହୋଇପାରେ। ପରିସ୍ଥିତିର ସୁଯୋଗ ନେଇ କାର୍ଗିଲ, ହିନ୍ଦୁସ୍ଥାନ ଲିଭର, ଓ୍ୱାଲମାର୍ଟ ଭଳି ପୃଥିବୀର ବହୁରାଷ୍ଟ୍ରୀୟ ଖାଦ୍ୟବ୍ୟବସାୟୀମାନେ ଖାଦ୍ୟଦ୍ରବ୍ୟର ମୂଲ୍ୟ ଅହେତୁକ ଭାବେ ବଢ଼ାଇ ଚାଲିଛନ୍ତି। ଗହମ,

ଚାଉଳ, ଡାଲି, ଖାଇବାତେଲ, ଦୁଧ, ମାଛ, ମାଂସର ମୂଲ୍ୟ ୨୦୦୭ ତୁଳନାରେ ୪୦ ପ୍ରତିଶତରୁ ୮୪ ପ୍ରତିଶତ ବଢ଼ିଛି। ଆମେ ଯେତେବେଳେ କୃଷକମାନଙ୍କ ସ୍ୱାର୍ଥ ପାଇଁ ଦାବିକରୁଛୁ; ବୁଦ୍ଧିଜୀବୀ, ରାଜନେତା ଓ କୃଷି ବିଜ୍ଞାନୀମାନେ ଯୁକ୍ତି କରିପାରନ୍ତି ଖାଦ୍ୟଦ୍ରବ୍ୟର ମୂଲ୍ୟ ବୃଦ୍ଧିଯୋଗୁଁ ଖାଉଟି ପ୍ରଭାବିତ ହୋଇପାରେ ମାତ୍ର ଚାଷୀ ତ' ତା'ର ଉତ୍ପାଦନ ପାଇଁ ଅଧିକ ମୂଲ୍ୟ ପାଇବ। ମାତ୍ର ବାସ୍ତବତା ଅନ୍ୟପ୍ରକାର। ପୃଥିବୀସାରା ଠିକାଚାଷ ଓ ବ୍ୟବସାୟିକ କୃଷିର ଜାଲମେଲି ଯାଇଥିବା ଯୋଗୁଁ ଚାଷୀମାନେ କମ୍ପାନୀମାନଙ୍କ ଠାରୁ ବିହନ, ସାର, କୀଟନାଶକ ଋଣସୂତ୍ରରେ ଆଣି ଚାଷ କରୁଛନ୍ତି। ଏହି ସୁଯୋଗରେ କମ୍ପାନୀମାନେ ଉତ୍ପନ୍ନ ଦ୍ରବ୍ୟର ଆଗୁଆ ମୂଲ୍ୟ ସ୍ଥିର କରୁଛନ୍ତି (Future Trading)। ଏହି ମୂଲ୍ୟ ସର୍ବନିମ୍ନ ସହାୟକ ମୂଲ୍ୟଠାରୁ ଢେର କମ୍ ହୋଇଥାଏ। ଚାଷୀର ଚାରା ନାହିଁ। ଧାନ, ଗହମ, ଡାଲି ବା ତୈଳବୀଜ ଉତ୍ପାଦନପରେ କମ୍ପାନୀକୁ ଶାଗମାଛ ଦରରେ ମାପି ଦେଇଥାଏ। ତଥାପି ଋଣ ପରିଶୋଧ ପାଇଁ ଏହା ଯଥେଷ୍ଟ ନହେବାରୁ ଚାଷୀ ଆତ୍ମହତ୍ୟା କରୁଛି। ଭାରତରେ ପ୍ରତି ୩୦ ମିନିଟ୍‌ରେ ଜଣେ ଚାଷୀ ଆତ୍ମହତ୍ୟା କରେ। କମ୍ପାନୀମାନଙ୍କ ହାତକୁ ଖାଦ୍ୟ ଆସିଗଲା ପରେ ସେମାନେ ମନଇଚ୍ଛା ମୂଲ୍ୟବୃଦ୍ଧି କରିଚାଲିଛନ୍ତି। ସେମାନେ ଆମ ଲୋକ ପ୍ରତିନିଧି, ସରକାରଙ୍କ ନିକଟରେ ଉତ୍ତରଦାୟୀ ନୁହଁନ୍ତି।

ଆଗକୁ ଖାଦ୍ୟ ସଙ୍କଟ ଭୟଙ୍କର ରୂପନେବାର ପୂର୍ବ ସୂଚନା ମିଳିଗଲାଣି। ଇଜିପ୍ଟ, କାମେରୁନ, ହାଇତି, ବୁରିକିନା ଫାସୋ, ବଙ୍ଗଳାଦେଶ, ଇଟାଲୀ ଓ ମେକ୍ସିକୋ ଭଳି ବହୁଦେଶରେ ଖାଦ୍ୟ ପାଇଁ ଦଙ୍ଗା, ମାରପିଟ, ଦଳାଚକଟା ଆରମ୍ଭ ହୋଇଗଲାଣି। ମୋଜାମ୍ବିକ, ଜିମ୍ବାୱେ ଏବଂ ନାମିବିୟାରେ ଖାଦ୍ୟ ଶସ୍ୟ ଆମଦାନୀ ହ୍ରାସଯୋଗୁଁ ସରକାରଙ୍କ ବିରୁଦ୍ଧରେ ରାଜରାସ୍ତାରେ ବିକ୍ଷୋଭ ଆରମ୍ଭ ହୋଇଗଲାଣି। ଫେବୃୟାରୀ ୨୦୦୮ରେ କାଇରୋ ସହରରେ ଖାଦ୍ୟଧାଡ଼ିରେ ଦଳାଚକଟା ଯୋଗୁଁ ୨ଜଣ ପ୍ରାଣ ହରାଇଛନ୍ତି। ଗତ ୩ମାସ ମଧ୍ୟରେ ଇଜିପ୍ଟ ଖାଦ୍ୟ ସବ୍‌ସିଡ଼ି ୫୨ ପ୍ରତିଶତ ବଢ଼ାଇଥିଲେ ମଧ୍ୟ ଗହମ ଯୋଗାଇବା ସମ୍ଭବ ହେଉନାହିଁ। ଚିନିରେ ଖାଦ୍ୟଦ୍ରବ୍ୟର ମୂଲ୍ୟ ୨୫ ପ୍ରତିଶତରୁ ୫୦ପ୍ରତିଶତ ପର୍ଯ୍ୟନ୍ତ ବଢ଼ିଥିବାରୁ ସେଠାରେ ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କୁ ୪୦ ପ୍ରତିଶତ ରିହାତିରେ ଖାଦ୍ୟ ଯୋଗାଇବା ଆରମ୍ଭ ହୋଇଛି। ଚୀନ୍‌ରେ ଘୁଷୁରୀମାଂସର ମୂଲ୍ୟ ୬୩ ପ୍ରତିଶତ ବଢ଼ିଛି। ଇଟାଲୀ, କାନାଡ଼ା ଓ ସିରିଆରୁ ଗହମ ଆମଦାନୀ କରେ। ବିଶ୍ୱଖାଦ୍ୟ ସଙ୍କଟକୁ ଲକ୍ଷ୍ୟ ରଖି କାନାଡ଼ା ବା ସିରିଆ ଇଟାଲୀକୁ ଗହମ ରପ୍ତାନୀ ଉପରେ ଅଙ୍କୁଶ ଲଗାଇଛନ୍ତି। ଇଟାଲୀରେ ଦୁରୁମ ଗହମର ମୂଲ୍ୟ ୮୦ ପ୍ରତିଶତ ବଢ଼ିଥିଲେ ମଧ୍ୟ ଗହମ ନାହିଁ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

ଭାରତର କୃଷିମନ୍ତ୍ରୀ ସଂସଦରେ ବୟାନ ଦେଇଛନ୍ତି 'ଆମର ଯଥେଷ୍ଟ ଖାଦ୍ୟ ମହଜୁଦ ଅଛି। ଖାଦ୍ୟାଭାବର ଆଶଙ୍କା ନାହିଁ'। ଆମ ବଜାରରେ ଅଟା କିଲୋ ୧୮ଟ ରୁ ୨୦ଟ, ଚାଉଳ ୧୨ଟ ରୁ ୨୫ଟ, ଖାଇବା ତେଲ ୭୦ଟରୁ ୯୦ଟ, ଡାଲି ୪୫ଟରୁ ୫୦ଟ, ମାଛ ୮୦ଟରୁ ୧୦୦ଟ, ମାଂସ ୨୦୦ଟଙ୍କା ଓ କ୍ଷୀର ୧୮ଟଙ୍କାରୁ ୨୦ଟଙ୍କାରେ ମଧ ଆବଶ୍ୟକ ପରିମାଣରେ ମିଳୁନାହିଁ। ହେଲେ କୌଣସି ଦ୍ରବ୍ୟର ଅଧିକମୂଲ୍ୟରୁ ଚାଷୀହାତକୁ ଟଙ୍କାଟିଏ ବି ଆସୁନାହିଁ। ଭିତ୍ତିଭୂମିର ଉନ୍ନତି ନାମରେ ଗାଁ ଗାଁକୁ ଯେଉଁ ସିମେଣ୍ଟ କଂକ୍ରିଟ ରାସ୍ତା ହେଲା କମ୍ପାନୀ, ବେପାରୀ ଓ ମୁନାଫାଖୋରମାନଙ୍କର ୧୮ଚକିଆ ଗାଡ଼ିଗାଁ ଭିତରକୁ ପଶି ଚାଷୀଠାରୁ ଶାଗମାଛ ଦରରେ ଖାଦ୍ୟପଦାର୍ଥ କିଣିନେଇ ବଜାରରେ ଆକାଶଛୁଆଁ ଦରରେ ବିକ୍ରୀ କରିପାରୁଛନ୍ତି। ଏଥିପାଇଁ ସରକାରୀ ପ୍ରୋତ୍ସାହନ ଅଛି। ପନିପରିବା ଦାମ ନିଆଁଧୂଆଁ। ଚାଷୀଠାରୁ କ୍ଷୀରଲିଟର ୯ଟଙ୍କାରେ କିଣି ଓମ୍‌ଫେଡ଼ ୧୮ଟଙ୍କାରେ ବିକୁଛି। ଭାତହାଣ୍ଡିରୁ ଗୋଟିଏ ଚିପିଲେ ହୁଏ।

ସହରୀବାବୁମାନଙ୍କୁ ଖାଦ୍ୟଦ୍ରବ୍ୟର ମୂଲ୍ୟବୃଦ୍ଧି ବାଧୁଥିବ ନିଶ୍ଚୟ। ହେଲେ କେନ୍ଦ୍ର ଓ ରାଜ୍ୟ ସରକାର ମୂଲ୍ୟ ସୂଚକାଙ୍କ ବୃଦ୍ଧି ଅନୁପାତରେ ସେମାନଙ୍କ ଚାକିରିଆମାନଙ୍କ ଦରମା ଓ ଭତ୍ତା ବଢ଼ାଇଥାନ୍ତି। କେନ୍ଦ୍ର ବେତନ କମିସନ ନିକଟରେ ସରକାରୀ ଚାକିରିଆ ମାନଙ୍କର ଦରମା ୩୦ରୁ ୪୦ ପ୍ରତିଶତ ବୃଦ୍ଧି କରିଛନ୍ତି। ବ୍ୟାଙ୍କ୍, କମ୍ପାନୀ ଓ ବେସରକାରୀ ଅନୁଷ୍ଠାନମାନେ ସେମାନଙ୍କ ଚାକିରିଆମାନଙ୍କ ଦରମା ଅନୁରୂପ ବଢ଼ାଇବା ପାଇଁ କେନ୍ଦ୍ର ସରକାର ନିର୍ଦ୍ଦେଶ ମଧ ଦେଇଛନ୍ତି। ମାତ୍ର ସହରର ଝୁମ୍ପୁଡ଼ିବାସିନ୍ଦା, ଗାଁର ଚାଷୀ, ମୂଲିଆ, ଖଟିଖିଆ, କିଣିଖିଆ କଥା ଭାବନ୍ତୁତ। ପରିବାରର ସବଳ ବ୍ୟକ୍ତିକୁ ମାସକୁ ୧୦ଦିନ କାମ ବି ମିଳୁନି। ଓଡ଼ିଶାରେ ହାରାହାରି ମୁଣ୍ଡପିଛା ଆୟ ୧୨ଟଙ୍କା। ଏଥିରୁ କେତେ ଚାଉଳ, କେତେ ଡାଲି କ'ଣ ବା ସେ କିଣିପାରିବ। ପିଲାଙ୍କୁ ଢୋକ ଦେବ ? ଏହିପରି ବିକଳ ଅବସ୍ଥା ଭାରତରେ ୭୦କୋଟି ଲୋକଙ୍କର।

୧୯୫୧ବେଳକୁ ଜଣେ ଭାରତୀୟ ନିଜକୁ ୪୭୫ଗ୍ରାମ ଚାଉଳ ବା ଗହମ, ୬୧ଗ୍ରାମ ଡାଲି ଖାଇବାକୁ ପାଉଥିଲା। ୨୦୦୭ର ହିସାବ-ମୁଣ୍ଡପିଛା ଚାଉଳ ବା ଗହମ-୪୦୦ ଗ୍ରାମ ଓ ଡାଲି ୩୩ ଗ୍ରାମ। ଜଣେ ଶ୍ରମିକ ପାଇଁ ଦିନକୁ ୨୪୦୦ କ୍ୟାଲୋରୀ ଶକ୍ତି ଆବଶ୍ୟକ ହେଉଥିଲା। ସରକାରୀ ହିସାବରେ ବର୍ତ୍ତମାନ ବିଶ୍ୱଖାଦ୍ୟ ସଂସ୍ଥା ଏହି ସୀମାକୁ କମାଇ ୧୬୦୦ କ୍ୟାଲୋରୀ ପାଇଁ ସୁପାରିଶ କଲେଣି। ଖାଦ୍ୟ ସଙ୍କଟ ପାଇଁ ପେଟରୁ କାଟିବାପାଇଁ ସୁପାରିଶ।

ଆଜିଦିନରେ ପଇସାବାଲା ପରିବାରରେ ମାସକୁ ୨୦ଦିନ ଡାଲି ରୋଷେଇଶାଳକୁ ଯାଉନାହିଁ। ଚାଷୀ ମୂଲିଆ, ହରିଜନ, ଗିରିଜନ, ବସ୍ତିବାସିନ୍ଦାମାନଙ୍କୁ ଦୁଇଓଳି ପେଟପୁରା ଭାତଗଣ୍ଡିଏତ ମିଳୁନି। ଡାଲି, ତେଲ, ମସଲା, ପନିପରିବା କଥାଉଠୁଛି କୁଆଡୁ। ମାଛ, ମାଂସ, ଦୁଧ ସ୍ୱପ୍ନ। ପୁଷ୍ଟିହୀନତା, ଅନାହାର, ଅର୍ଦ୍ଧାହାର ବା ଶେଷକୁ ଅନାହାରଜନିତ ମୃତ୍ୟୁ ସେମାନଙ୍କ ପାଇଁ ସରକାରଙ୍କର ଯୋଜନା। ବିଶ୍ୱବ୍ୟାଙ୍କର ପ୍ରେସିଡେ଼ଣ୍ଟ ରର୍ବଟ ଜୋଏଲିକ୍ ନିଜେ ସ୍ୱୀକାର କରିଛନ୍ତି ଭାରତ ଭଳି ବିକାଶଶୀଳ ଦେଶମାନଙ୍କରେ ୧୦ କୋଟିଲୋକ ପ୍ରତିଦିନ କ୍ଷୁଧାର୍ଥ ରହୁଛନ୍ତି। (ହିନ୍ଦୁ-ଏପ୍ରିଲ ୧୬)। ବିଶ୍ୱ ମୁଦ୍ରାପାଣ୍ଠିର ପରିଚାଳନାନିର୍ଦ୍ଦେଶକ ଡୋମିନକୁ ଷ୍ଟ୍ରସକାନ୍ କୁହନ୍ତି ବିଶ୍ୱଖାଦ୍ୟ ସଙ୍କଟ ଏହିପରି ଲାଗିରହିଲେ ପୃଥିବୀର ଶହେକୋଟି ଲୋକଙ୍କୁ ଅନାହାର ବା ଅର୍ଦ୍ଧାହାରରେ ଦିନ କାଟିବାକୁ ପଡ଼ିବ।

ଭାରତର କୃଷିମନ୍ତ୍ରୀ ସରକାରଙ୍କ ବିଫଳତାକୁ ଘଣ୍ଟ ଘୋଡ଼ାଇବାକୁ ଯାଇ କୁହନ୍ତି ଆମଦେଶରେ ଖାଦ୍ୟର ଅଭାବନାହିଁ। ଏଣେ ଦେଶସାରା ସାଧାରଣ ବଣ୍ଟନ ବ୍ୟବସ୍ଥା ଭୁଷୁଡ଼ି ପଡ଼ିଲାଣି। କଣ୍ଟ୍ରୋଲ ଦୋକାନରେ ଗହମ, ଚାଉଳ ନାହିଁ। ଅଭିଜିତ୍ ସେନ ରିପୋର୍ଟ ମିଳିଲାପରେ ସାଧାରଣ ବଣ୍ଟନ ବ୍ୟବସ୍ଥାରେ ସଂସ୍କାର ଅଣାଯିବ। ଏଣେ ଅଭିଜିତ୍ ସେନ୍ ମତପୋଷଣ କରନ୍ତି ସାଧାରଣ ବଣ୍ଟନ ବ୍ୟବସ୍ଥାରେ ବହୁତ ଦୁର୍ନୀତି ସରକାରୀ ପଦାଧିକାରୀ, ରାଜନେତା ବା ମୁନାଫାଖୋର ବ୍ୟବସାୟୀ ଗୋଷ୍ଠୀ କରୁଛନ୍ତି। ଏଥିପାଇଁ ଦଣ୍ଡିତ ହେବ ସାଧାରଣ ଖାଉଟୀ। ବିଚିତ୍ର ବିଚାର। ଅବୁଝ ରଜାକୁ ପାଳଚୁଣ୍ଡା ମନ୍ତ୍ରୀ। ସତ କଥାଟି କିନ୍ତୁ ଅନ୍ୟପ୍ରକାର। ବିଶ୍ୱବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂସ୍ଥାର କଣ ନିର୍ଦ୍ଦେଶ 'ଭାରତ ସରକାର, ତୁମେ ସାଧାରଣ ବ୍ୟବସ୍ଥା ବନ୍ଦକର। ଏଫ୍.ସି.ଆଇ. ଗୋଦାମରେ ଖାଦ୍ୟ ମହଜୁଦ ବନ୍ଦକର। ଖାଉଟୀଙ୍କୁ ରିହାତି ଦରରେ ଖାଦ୍ୟଯୋଗାଣ ବନ୍ଦକର'। ଆଜି ଏଫ୍.ସି.ଆଇ. ଗୋଦାମ ପ୍ରାୟତଃ ଖାଲି ପଡ଼ିଲାଣି। କାର୍ଗିଲ, ହିନ୍ଦୁସ୍ଥାନ ଲିଭର ଭଳି କମ୍ପାନୀମାନେ ଆମ ଦେଶର ଖାଦ୍ୟବଣ୍ଟନ ଦାୟିତ୍ୱ ନେବେ। ବିଲେଇ ହାତରେ ଶୁଖୁଆପୋଡ଼ା।

ଜାତୀୟ ନମୁନା ସର୍ବେକ୍ଷଣ ୨୦୦୬ରିପୋର୍ଟ ଅନୁସାରେ ଭାରତବର୍ଷରେ ପ୍ରତି ୭ଜଣରେ ଜଣେ ଲୋକ ପ୍ରତିଦିନ ଅନାହାରରେ ରୁହେ। ଓଡ଼ିଶାରେ ଏହି ହାର ପ୍ରତି ୫ ଜଣରେ ଜଣେ। ଓଡ଼ିଶାରେ ପ୍ରାୟ କୋଟିଏ ଲୋକ ବର୍ଷକୁ ୮ମାସ ଆମ୍ବଟାକୁଆ, ସଲପ, ବାଉଁଶ କରଡ଼ି ବା ବଣବୁଦାରୁ ଫଳମୂଳ, ଛତୁଖାଇ ଭୋକ ଉପାସରେ ସଢୁଛନ୍ତି।

ଏମାନେ ସବୁ ଆଦିବାସୀ ବା ଗିରିଜନ। କେବଳ ଭୋଟବେଳେ ସରକାରୀ ଲୋକ, ରାଜନେତାମାନେ ଏମାନଙ୍କୁ ହିସାବକୁ ନେଇଥାନ୍ତି।

ଆମ କେନ୍ଦ୍ର ସରକାର ଖାଦ୍ୟ ସଙ୍କଟକୁ ମୁକାବିଲା କରିବାକୁ ବିଦେଶରୁ ଖାଇବାତେଲ ନିୟୁତ ମେଟ୍ରିକଟନ ଓ ଡାଲି ୧୫ ନିୟୁତଟନ୍ ଆମଦାନୀ କରୁଛନ୍ତି। ଏଥିପାଇଁ ଖାଦ୍ୟ ରପ୍ତାନୀକାରୀ ଦେଶମାନଙ୍କୁ ଆମଦାନୀ ଶୁଳ୍କ ମଧ ଯଥେଷ୍ଟ ହ୍ରାସ କରାଯାଇଛି। ୨୦୦୭ରେ ଆମେ ୫ ଲକ୍ଷ ଟନ୍ ଗହମ ଅଷ୍ଟ୍ରେଲିଆ, କାନାଡ଼ା ଓ ଅନ୍ୟାନ୍ୟ ଗହମ ଉତ୍ପାଦନକାରୀ ଦେଶରୁ ଆମଦାନୀ କରିଥିଲୁ। ଆମଚାଷୀଙ୍କଠାରୁ କ୍ୱିଣ୍ଟାଲ ୮୦୦ଟଙ୍କାରେ ୫.୮ ନିୟୁତଟନ୍ ଗହମ କିଣିଥିଲା ବେଳେ ବିଦେଶ ଗହମକୁ କ୍ୱିଣ୍ଟାଲ ପ୍ରତି ୧୪୦୦ଟଙ୍କାରେ ଖର୍ଚ୍ଚ କରିଥିଲୁ। ଚଳିତ ବର୍ଷ ଆମଦେଶରେ ଗହମ ଉତ୍ପାଦନ ସାମାନ୍ୟ ବୃଦ୍ଧି ହେବାକଥା କୁହାଯାଉଥିଲେ ମଧ ଅସମ୍ଭବ ବର୍ଷା ଓ ଫଙ୍ଗସ୍ ରୋଗ ଯୋଗୁଁ ଏହି ଉତ୍ପାଦନ ହ୍ରାସ ପାଇବାର ସମ୍ଭାବନା ମଧ ଅଛି। ସରକାର କ୍ୱିଣ୍ଟାଲ ୧୬୦୦ଟଙ୍କା ମୂଲ୍ୟରେ ୩ଲକ୍ଷଟନ୍ ଗହମ ବିଦେଶରୁ ଆମଦାନୀ କରିବାକୁ ନିଷ୍ପତ୍ତି ନେଉଛନ୍ତି। ଆମ ଚାଷୀପାଇଁ ସର୍ବନିମ୍ନ ସହାୟକ ମୂଲ୍ୟ କୁଣ୍ଟାଲ ୧୦୦୦ଟଙ୍କା। ଗତ ଦୁଇବର୍ଷ ଭିତରେ ଗହମର ମୂଲ୍ୟ ବିଶ୍ୱବଜାରରେ ୧୮୨ ପ୍ରତିଶତ ବଢ଼ିଛି। କେନ୍ଦ୍ର କୃଷିମନ୍ତ୍ରୀ ସଂସଦରେ ଦୃଢ଼ଭାବେ ବୟାନ ଦେଇଛନ୍ତି କି ଗହମ ବା ଧାନର ସହାୟକ ମୂଲ୍ୟ କୌଣସି ପରିସ୍ଥିତିରେ ଆଉ ବଢ଼ିବ ନାହିଁ। ଧାନର ମୂଲ୍ୟ ୭୫୦ଟଙ୍କା ଓ ଗହମର ମୂଲ୍ୟ ୧୦୦୦ ଟଙ୍କା ରଖାଗଲେ ଉଷୁନା ଚାଉଳର ମୂଲ୍ୟ କିଲୋପ୍ରତି ୧୦ ଟଙ୍କା ଓ ଅଟାରମୂଲ୍ୟ ୧୨ ଟଙ୍କାରୁ କୌଣସି ପରିସ୍ଥିତିରେ ଅଧିକ ହେବାକଥା ନୁହେଁ। ଉଷୁନା ଚାଉଳ କିଲୋପ୍ରତି ୧୪ଟଙ୍କା ଓ ଅଟା ୧୮ଟଙ୍କାରେ ବିକ୍ରିହେବା ପାଇଁ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଦାୟୀ ନୁହଁନ୍ତି କି ?

ଆମ ଦେଶରେ ମୁଦ୍ରାସ୍ଫୀତି ୭.୪କୁ ଏପ୍ରିଲ ପ୍ରଥମ ସପ୍ତାହରେ ବଢ଼ିଛି। ଖାଦ୍ୟ ପଦାର୍ଥର ମୂଲ୍ୟ ସୂଚକାଙ୍କକୁ ଆଧାର କରି ଏହା ହିସାବ କରାଯାଏ। ମାତ୍ର ବାସ୍ତବ କ୍ଷେତ୍ରରେ ପାଇକାରୀ ମୂଲ୍ୟକୁ ବିଚାର କଲେ ମୁଦ୍ରାସ୍ଫୀତିରୁ ୮.୫ରୁ ଅଧିକ ହେବ। ଅର୍ଥମନ୍ତ୍ରୀ ଖାଦ୍ୟଦ୍ରବ୍ୟର ଦରବୃଦ୍ଧି ପାଇଁ ନରମସ୍ୱରରେ ଆମେରିକା ଓ ୟୁରୋପିୟାନ୍ ୟୁନିୟନ୍‌କୁ ଦାୟୀକରି ନିଜେ ଆତ୍ମରକ୍ଷାର ପ୍ରୟାସ ଜାରି ରଖିଛନ୍ତି। ବହୁରାଷ୍ଟ୍ରୀୟ କମ୍ପାନୀ, ବିଶ୍ୱଖାଦ୍ୟ ସଂସ୍ଥା ଓ ବିଶ୍ୱବ୍ୟାଙ୍କ ଭଳି ସଂସ୍ଥାମାନେ ଖାଦ୍ୟସଙ୍କଟକୁ ଆଳ କରି ଏବେ ଯୋଜନା କରୁଛନ୍ତି ଭାତ ବା ରୁଟି ଭଳି ଲୋକମାନେ ଆଳୁକୁ ମୁଖ୍ୟଖାଦ୍ୟ ରୂପେ ବ୍ୟବହାର

କରନ୍ତୁ। ଆଳୁଚାଷ କମ୍ ପାଣି ଦରକାର କରେ। ଅତ୍ୟନ୍ତ ଲାଭଜନକ। ୟୁରୋପ ମହାଦେଶରେ କେତେକ ଦେଶରେ ଆଳୁ ପ୍ରଧାନ ଖାଦ୍ୟରୂପେ ୫୦୦ବର୍ଷ ହେଲା ବ୍ୟବହାର ହେଉଛି। ଏଥିରେ କିନ୍ତୁ ଗୋଟିଏ ବଡ଼ ବେପାର ଲୁଚିରହିଛି। ଏବେ ୧ ବିଟିଆଳୁ ବା ଜି.ଏମ୍ ଆଳୁ ମନ୍‌ସାଣ୍ଟୋ ଓ ଏହାର ସହଯୋଗୀ ଦଳମାନେ ବଜାରକୁ ଛାଡ଼ିଲେଣି, ଏହାକୁ ପ୍ରୋଟାଟୋ କୁହାଯାଉଛି। ବିଟି ଧାନ, ସୁନେଲୀ ଧାନ ସାଙ୍ଗକୁ ପ୍ରୋଟାଟୋ ଚାଷ ବହୁଳଭାବେ ପ୍ରଚଳନ ହେଲେ ମଞ୍ଜି, ରାସାୟନିକ ସାର ଓ କୀଟନାଶକ ବେପାର ଜମିଯିବ। ଛୋଟ ଓ ନାମମାତ୍ର ଚାଷୀ ତଳିତଳାନ୍ତ ହୋଇଯିବେ।

ଗତ ୧୦ବର୍ଷହେଲା ଭାରତବର୍ଷରେ ଧାନ, ଗହମ ଓ ମକା ଭଳି ଖାଦ୍ୟଦ୍ରବ୍ୟର ଉତ୍ପାଦନ ପ୍ରାୟ ସ୍ଥିର ଅଛି। ଧାନର ହେକ୍ଟରପ୍ରତି ଉତ୍ପାଦନ କ୍ଷମତା ୨.୪ ମେଟ୍ରିକ ଟନ୍‌ରେ ସୀମିତ ଅଛି। ଓଡ଼ିଶାରେ ଏହିହାର ୧.୬ ମେଟ୍ରିକଟନ୍ ୨୦୦୭-୦୮ପାଇଁ କୃଷିର ଅଭିବୃଦ୍ଧି ହାର ୪ ପ୍ରତିଶତ ଲକ୍ଷ୍ୟ ରଖାଯାଇଥିଲା । ଏହି ବର୍ଷର ଅର୍ଥନୈତିକ ସର୍ଭେ ରିପୋର୍ଟ କୁହେ ଏହି ହାର ମାତ୍ର ୨.୩ ରହିଛି।

କୃଷିକ୍ଷେତ୍ରରେ ଏହି ବିପର୍ଯ୍ୟୟ ଏବଂ ଖାଦ୍ୟ ସଙ୍କଟର କାରଣ ନିର୍ଣ୍ଣୟ କରି ଭବିଷ୍ୟତ ଯୋଜନା ପ୍ରସ୍ତୁତ କରିବା ଲକ୍ଷ୍ୟରେ ବିଶ୍ୱ ଖାଦ୍ୟସଂସ୍ଥା ଏପ୍ରିଲ ୮ରୁ୧୧, ୪ ଦିନ ଧରି ଦିଲ୍ଲୀରେ ଆଗ୍ରୋଇଣ୍ଡଷ୍ଟ୍ରିଜ୍ ଫୋରମ୍ ନାମରେ ଏକ ଆଲୋଚନା ବୈଠକ କରିସାରିଛନ୍ତି। ଏହାକୁ ପୃଥିବୀର ପ୍ରଥମ ବିଶ୍ୱ କୃଷି ଫୋରମ୍ କୁହାଯାଉଛି।

ବିଶ୍ୱ ଖାଦ୍ୟସଂସ୍ଥାର ମହାନିର୍ଦ୍ଦେଶକ ଜାକୁଇସ୍ ଡିଫୋ ଏହି ଅବସରରେ ଭାରତର ପ୍ରଧାନମନ୍ତ୍ରୀଙ୍କୁ ଖାଦ୍ୟ ସଂସ୍ଥାର ସର୍ବୋଚ୍ଚ ପୁରସ୍କାର ଏଗ୍ରି-କୋଲା ଅର୍ପଣ କରିଛନ୍ତି। ଭାରତୀୟ କୃଷିକ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ଯୋଗୁଁ ତାଙ୍କରି ଉଦ୍ୟମରେ ୧୯୯୧ରେ ଅର୍ଥନୈତିକ ସଂସ୍କାର ନାମରେ ଭାରତରେ ଜଗତୀକରଣ, ଉଦାରୀକରଣ, ଘରୋଇକରଣ ଓ ମୁକ୍ତବଜାର ନୀତି ସଂସଦରେ ଗୃହୀତ ହୋଇଗଲା। ଭାରତରେ କୃଷି ଓ କୃଷକର ସର୍ବନାଶ ପାଇଁ ଉପନିବେଶ ସରକାରଠାରୁ ଆରମ୍ଭ ହୋଇଥିବା ଉଦ୍ୟମ ୧୯୯୧ରେ ଦୃଢ଼ୀଭୂତ ହୋଇଗଲା। ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ଡୁ-ପଣ୍ଟ, ଡୋ କେମିକାଲ, ବେୟର, କ୍ରପସାଇନ୍ସ ଭଳି ଆମେରିକୀୟ ଓ ୟୁରୋପୀୟ ବହୁରାଷ୍ଟ୍ରୀୟ କମ୍ପାନୀମାନେ କୃଷିକ୍ଷେତ୍ରରେ ଅବାଧ ପ୍ରବେଶ କଲେ। ବିହନ, ରାସାୟନିକ ସାର, କୀଟନାଶକର ବେପାର ବହୁମାତ୍ରାରେ ବଢ଼ିଗଲା। ବର୍ତ୍ତମାନ ୩୦୦ରୁ ଊର୍ଦ୍ଧ୍ୱ ଦେଶୀ-ବିଦେଶୀ କମ୍ପାନୀ ଠିକାଚାଷ, ବ୍ୟବସାୟିକ

ଚାଷ ଓ ଜି.ଏମ୍ ବିହନ ବେପାରକରି ଭାରତର କୃଷିକୁ ସେମାନଙ୍କ ଅକ୍ତିଆରରେ ରଖିଲେଣି। ୨୦୦୬ରେ ବୁଶ୍-ମନମୋହନ ଗୁପ୍ତ ଚୁକ୍ତି ଦ୍ୱାରା କୃଷିକ୍ଷେତ୍ରରେ ଜ୍ଞାନକୌଶଳ ପ୍ରୟୋଗ ନାମରେ ଘରୋଇ ଓ ବିଦେଶୀ କମ୍ପାନୀମାନେ କୃଷି ଯନ୍ତ୍ରପାତି ବେପାର, ଫୁଲ ଓ ଫଳଚାଷ, ଚା,କଫିଚାଷ ଓ ଜୈବଇନ୍ଧନ ପାଇଁ ବାଇଗବା ଚାଷ ଆରମ୍ଭ କରିଦେଲେଣି। ଗତ ୧୫ବର୍ଷ ଭିତରେ କୃଷି କ୍ଷେତ୍ରରୁ ୧୦ କୋଟିରୁ ଊର୍ଦ୍ଧ୍ୱ କୃଷିଶ୍ରମିକ, ଛୋଟ ଓ ନାମମାତ୍ର ଚାଷୀ ଜୀବିକା ହରାଇ ସହରରେ ସର୍ବହରା ହୋଇ ବୁଲୁଛନ୍ତି। ଦାଦନ ଖଟୁଛନ୍ତି। ବସ୍ତିରେ ସଢୁଛନ୍ତି। ନିକଟରେ ସଂସଦରେ ପୁଣି ପ୍ରଧାନମନ୍ତ୍ରୀ ଦୃଢ଼ ଘୋଷଣା କରିଛନ୍ତି 'ଅର୍ଥନୈତିକ ସଂସ୍କାର ଜୋରଦାର ଭାବେ କାର୍ଯ୍ୟକରିବ। ଭାରତରେ ଅର୍ଥନୈତିକ ଅଭିବୃଦ୍ଧି ପାଇଁ ସଂସ୍କାରର ବିକଳ୍ପ ନାହିଁ।' ଆଙ୍ଗୁଠିଗଣତି ୧୦୦/୨୦୦ ଧନୀକ ପରିବାରଙ୍କ ସ୍ୱାର୍ଥ ଅଭିବୃଦ୍ଧି ପାଇଁ ୧୦୦ କୋଟି ଲୋକଙ୍କର ସର୍ବନାଶ ଆମ ପ୍ରଧାନମନ୍ତ୍ରୀଙ୍କ କୃଷିକ୍ଷେତ୍ର ପାଇଁ ଉଲ୍ଲେଖନୀୟ ଅବଦାନ। ଏଥିପାଇଁ ଆଗ୍ରି-କୋଲା ପୁରସ୍କାର। କୋକାକୋଲା କମ୍ପାନୀ ଭାରତରେ ମୃଦୁପାନୀୟ ବେପାର ଯୋଗୁଁ ଗତ ୩/୪ ବର୍ଷ ହେଲା ବେଶ୍ ବଦନାମ ହୋଇଛି। ସଚେତନ ଭାରତୀୟ ଏବେ କୋକାକୋଲା ପ୍ରତି ଦୁର୍ବଳତା କମାଇଲେଣି। କମ୍ପାନିର ଧର୍ମ ସମ୍ପୂର୍ଣ୍ଣ ବେପାର। ଏବେ ଆଗ୍ରି-କୋଲା ନାମରେ ନୂଆ ରୂପନେଇ ଭାରତୀୟ କୃଷିକ୍ଷେତ୍ରରେ ପ୍ରବେଶ ପାଇଁ ଏହି ପୁରସ୍କାର ମାଧ୍ୟମରେ ପ୍ରଧାନମନ୍ତ୍ରୀ ସବୁଜବତୀ ଦେଖାଇ ସ୍ୱୀକୃତି ଦେଇଦେଲେ।

ଆଗ୍ରୋ-ଇଣ୍ଡଷ୍ଟ୍ରିଜ୍ ଫୋରମରେ ୧୦୦ଟି ଦେଶରୁ ୫୦୦ପ୍ରତିନିଧି ଯୋଗ ଦେଇଥିଲେ। ସେଥିରୁ ୩୦୦ ଅଧିକ ପ୍ରତିନିଧି ବହୁରାଷ୍ଟ୍ରୀୟ ଦେଶୀବିଦେଶୀ କମ୍ପାନୀର ପ୍ରତିନିଧିତ୍ୱ କରୁଥିଲେ। ଖାଦ୍ୟସଙ୍କଟ ସ୍ଥିତିରୁ ଫାଇଦା ଉଠାଇବା ସେମାନଙ୍କର ଲକ୍ଷ୍ୟଥିଲା।

୨୦୦୧ ମସିହାରୁ ମନ୍‌ସାଣ୍ଟୋ ଓ ଅନ୍ୟାନ୍ୟ କମ୍ପାନୀମାନେ ଭାରତରେ ବିଟି ଧାନ, ସୁନେଲୀଧାନ (ଗୋଲଡ଼େନ୍ ରାଇସ୍) ଭଳି ଜି.ଏମ୍ ଧାନବିହନ ପ୍ରଚଳନ ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ ଜାରି ରଖିଥିଲେ। ୨୦୦୮ ଖାଦ୍ୟସଙ୍କଟ ସେମାନଙ୍କୁ ଏଥିପାଇଁ ପ୍ରୋତ୍ସାହନ ଯୋଗାଇଥିଲା। ଜି.ଏମ୍ ଧାନ, ଜି.ଏମ୍ ବାଇଗଣ, ଜି.ଏମ୍ ମକା, ଜି.ଏମ୍ ଆଳୁ, ଜି.ଏମ୍ ଟମାଟୋ ଭଳି ଫସଲଚାଷ ପାଇଁ ଏହିସବୁ ବିହନ ବେପାର ବଢ଼ିଯିବ। ଛୋଟ ଓ ନାମମାତ୍ର ଚାଷୀ ଠିକାଚାଷ ମାଧ୍ୟମରେ କମ୍ପାନୀଠାରୁ ଋଣ କରି ଏହି ଚାଷ କରିବେ। ପ୍ରତିବର୍ଷ କମ୍ପାନୀ ବିହନ କିଣିବେ। ଋଣ ସୁଝିନପାରି ଆତ୍ମହତ୍ୟା କରିବେ। କମ୍ପାନୀ,

ରାଜନୈତିକ ନେତୃବୃନ୍ଦ, ପ୍ରଶାସନିକ ଅଧିକାରୀମାନେ ମାଲାମାଲ୍ ହେବେ। ଏହାହିଁ ଗ୍ଲୋବାଲ ଆଗ୍ରୋ ଇଣ୍ଡଷ୍ଟ୍ରିଜ୍ ଫୋରମ୍‌ର ଆଭିମୁଖ୍ୟ। ଭାରତ ସରକାର ଏଥିପାଇଁ ସ୍ୱୀକୃତିର ମୋହର ଦେଇସାରିଲେଣି। ପ୍ରଧାନମନ୍ତ୍ରୀ ମଧ୍ୟ ତାଙ୍କଭାଷଣ ଭିତରେ ଆମେରିକା ଓ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ପ୍ରଶଂସା କରିବାକୁ ଭୁଲିନାହାଁନ୍ତି।

## ଖାଦ୍ୟ ସଙ୍କଟର କାରଣ:

ଖାଦ୍ୟ ସଙ୍କଟପାଇଁ ୩ଗୋଟି ପ୍ରମୁଖ କାରଣ କଥା କୁହାଯାଉଛି।

୧. ଆମେରିକା ଓ ୟୁରୋପିୟାନ ୟୁନିୟନ ସେମାନଙ୍କର ଉତ୍ପାଦିତ ଗହମ ଓ ମକାର ୩୦ ପ୍ରତିଶତ ଜୈବଇନ୍ଧନ ପାଇଁ (Bio-Diesel) ବ୍ୟବହାର କରିବା ଦ୍ୱାରା ଖାଦ୍ୟ ଦ୍ରବ୍ୟ କମିଯାଉଛି।

୨. ଜଳବାୟୁ ପରିବର୍ତ୍ତନ ଯୋଗୁଁ ଉତ୍ପାଦନ କମିଯାଉଛି।

୩. ସବୁଜବିପ୍ଳବର ଜନକ ବୋଲାଉଥିବା ଡ. ଏମ୍.ଏସ୍.ସ୍ୱାମୀନାଥନଙ୍କ ମତ- ରାସାୟନିକ କୃଷି ଯୋଗୁଁ ମୃତ୍ତିକାର ଉର୍ବରତା କମିଗଲାଣି। ଉତ୍ପାଦନ ସେଥିପାଇଁ କମିଯାଉଛି। ହନୁ ମଲାବେଳକୁ ସତ କହିଲା। ତାଙ୍କର ନୂଆ ପରାମର୍ଶ- (କ) କୃଷିକ୍ଷେତ୍ରରେ ନୂତନ ଜ୍ଞାନ କୌଶଳର ପ୍ରୟୋଗ (ଖ) ଦ୍ୱିତୀୟ ସବୁଜବିପ୍ଳବ ବା ଚିରସବୁଜ ବିପ୍ଳବ ଆରମ୍ଭ (ଗ) ବାୟୋଟେକ୍ନୋଲୋଜି ଏବଂ ଜେନେଟିକ ଇଞ୍ଜିନିୟରିଂର କୃଷିକ୍ଷେତ୍ରରେ ପ୍ରୟୋଗ। ଅର୍ଥାତ୍ ପ୍ରକାରାନ୍ତରେ ଜେନେଟିକ ମଡିଫାଏଡ୍ ବିହନ ବ୍ୟବହାର ପାଇଁ ପରାମର୍ଶ।

ଖାଦ୍ୟସଙ୍କଟର କେତୋଟି ମୂଳକାରଣ ଫୋରମ୍‌ରେ ଆଲୋଚନା ହୋଇନି। ସେଗୁଡ଼ିକ ହେଲା-

୧) ରାସାୟନିକ କୃଷି, କମ୍ପାନୀଚାଷ, ଠିକା ଚାଷ, ବ୍ୟବସାୟିକ ଚାଷ ଖାଦ୍ୟଶସ୍ୟ ଉତ୍ପାଦନକୁ ନିରୁତ୍ସାହିତ କରି ଫୁଲ, କଫି,ଚା ଓ ଫଳଚାଷ ଭଳି ଅର୍ଥକାରୀ ଫସଲ ଚାଷକୁ ପ୍ରୋତ୍ସାହନ।

୨) ଏଥନଲ ବା ଜୈବଇନ୍ଧନ ପାଇଁ ବାଇଗବା ଭଳି ଫସଲ ଚାଷ।

୩) ବ୍ୟବସାୟିକ ଗୋପାଳନ, ଘୁଷୁରି ପାଳନ, କୁକୁଡ଼ାପାଳନ ଯୋଗୁଁ ଉତ୍ପାଦିତ ଖାଦ୍ୟର ୩୦ପ୍ରତିଶତ ବିନିଯୋଗ। ପଶୁପକ୍ଷୀମାନେ ମଣିଷ ସହିତ ଖାଦ୍ୟ ପାଇଁ ପ୍ରତିଯୋଗିତା

କରୁଛନ୍ତି। ପାରମ୍ପରିକ ଗୋପାଳନ ଓ କୁକ୍କୁଟପାଳନରେ ମକା, ଗହମ, ବାଜରା ଭଳି ମଣିଷର ଖାଦ୍ୟଉପରେ ଚାପ ପଡୁନଥିଲା।

୪) ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ, ରାସ୍ତାଘାଟ, କୋଠାବାଡ଼ି ନିର୍ମାଣ ପାଇଁ ପ୍ରତିବର୍ଷ ଲକ୍ଷଲକ୍ଷ ହେକ୍ଟର ଚାଷଜମି ସରକାର କମ୍ପାନୀମାନଙ୍କୁ ଦେଇ ଦେବା ଦ୍ୱାରା ଚାଷଜମି କମିଯିବ।

୫) ଶିଳ୍ପ, ଆଖୁଚାଷ ପାଇଁ ଜଳଯୋଗାଣ ସୁରକ୍ଷିତ କରିବା ଲକ୍ଷ୍ୟରେ ଧାନଚାଷକୁ ନିରୁତ୍ସାହିତ କରିବା, ଆମ ଓଡ଼ିଶାରେ ହୀରାକୁଦ ଜଳ ସମ୍ବଲପୁର ଚାଷୀଙ୍କୁ ନଦେଇ ଶିଳ୍ପକୁ ଦେବାଦ୍ୱାରା କୃଷକ ଆନ୍ଦୋଳନ ଏହାର ଏକ ଜ୍ୱଳନ୍ତ ଉଦାହରଣ। (ସାରଣୀ-୧ ଦ୍ରଷ୍ଟବ୍ୟ)

ପଞ୍ଜାବରେ ଗହମ ଚାଷକୁ ନିରୁତ୍ସାହିତ କରିବାପାଇଁ ଜିଲ୍ଲାପାଳମାନେ ବିଦ୍ୟୁତ୍ ବିଭାଗକୁ ଉଠା ଜଳସେଚନ ପଏଣ୍ଟକୁ ଶକ୍ତି ଯୋଗାଇବା ଉପରେ ସାମୟିକ କଟକଣା ଜାରି କରିବା ଆରମ୍ଭ କରିଛନ୍ତି।

୬) ଛୋଟ ଓ ନାମମାତ୍ର ଚାଷୀ, ଭାଗଚାଷୀମାନେ ସମବାୟ ଋଣରୁ ବଞ୍ଚିତ ରହୁଥିବାରୁ କୃଷିକ୍ଷେତ୍ର ପାଇଁ ସାଧନ ଯୋଗାଇ ପାରୁନାହାଁନ୍ତି।

କେନ୍ଦ୍ରସରକାରଙ୍କର ୬୦,୦୦୦ କୋଟି ଟଙ୍କାର କୃଷିଋଣ ଛାଡ଼ ମୋଟା ଅଂଶ ଚାଷକରୁଥିବା ଜମିମାଲିକ, ଅନୁପସ୍ଥିତ ଜମି ମାଲିକ, ଗାଁରେ ଥିବା ରାଜନୈତିକ ଦଳର କର୍ମୀମାନଙ୍କ ସ୍ୱାର୍ଥସାଧନ କରିବ ନିଶ୍ଚୟ। ମାତ୍ର ଭାଗଚାଷୀ ଏଥିରୁ ଟଙ୍କାଟିଏ ସାହାଯ୍ୟ ପାଇବ ନାହିଁ। ଏହାଦ୍ୱାରା କୃଷିର ଉତ୍ପାଦନ ହ୍ରାସ ହେବାରେ ସନ୍ଦେହ ରହିବ କି ?

## ଓଡ଼ିଶାର ସ୍ଥିତି:

୧. ଓଡ଼ିଶା ସରକାରଙ୍କ କୃଷକବିରୋଧୀ ନୀତି ଅତ୍ୟନ୍ତ ସ୍ପଷ୍ଟ। ୨୦୦୧ରେ ପାଣିପଞ୍ଚାୟତ ଆଇନ ପ୍ରଣୟନ କରି ଚାଷୀକୁ ପାଣି ନଦେଇ କମ୍ପାନୀମାନଙ୍କୁ, ଶିଳ୍ପକୁ ପାଣିଦେବାର ବାଟ ପରିଷ୍କାର କରିଦେଲେ। ରାଜ୍ୟର ୩୫ପ୍ରତିଶତ ଜମିକୁ ଜଳସେଚନ ସୁବିଧାଥିବା କଥା ସରକାରୀ କାଗଜପତ୍ରରେ ଅଛି ସତ ମାତ୍ର ବାସ୍ତବତା ହେଉଛି ୧୦ପ୍ରତିଶତ ଜମିକୁ ମଧ୍ୟ ୨ଟି ଫସଲ ପାଇଁ ପାଣି ମିଳୁନାହିଁ।

୨. ୨୦୦୪ରେ କୃଷିଦ୍ରବ୍ୟ ବିପଣନ ଓ ଠିକାଚାଷ ଆଇନ ପ୍ରଣୟନକରି ରାଜ୍ୟରେ ୫୦ରୁ ଉର୍ଦ୍ଧ୍ୱ ଦେଶୀ-ବିଦେଶୀ କମ୍ପାନୀମାନଙ୍କୁ ଛୋଟ ଓ ନାମମାତ୍ର ଚାଷୀକୁ ଜମିରୁ ଉଚ୍ଛେଦ କରି କମ୍ପାନୀମାନଙ୍କୁ ଲକ୍ଷ ଲକ୍ଷ ହେକ୍ଟର ଚାଷଜମି ହସ୍ତାନ୍ତର କରିଛନ୍ତି।

୩. ସ୍ୱତନ୍ତ୍ର ଅର୍ଥନୈତିକ ଅଞ୍ଚଳ ନାମରେ ଏକଲକ୍ଷ ହେକ୍ଟରରୁ ଅଧିକ ଜମି କମ୍ପାନୀମାନଙ୍କୁ ହସ୍ତାନ୍ତର କରିବା ଅନ୍ୟଏକ କୃଷକ ବିରୋଧୀ ନିଷ୍ପତ୍ତି।

ଓଡ଼ିଶା ସରକାର ପ୍ରଚଳିତ କୃଷିନୀତି ୩ଟି ବିଷୟରେ ପ୍ରାଧାନ୍ୟ ଦେଉଛି।

(କ) ଫସଲ ପରିବର୍ତ୍ତନ (ଖ) ଜଳ ପରିଚାଳନା (ଗ) କୃଷି କ୍ଷେତ୍ରରେ ନୂତନ ଜ୍ଞାନକୌଶଳ ପ୍ରୟୋଗ ଓ କୃଷି ଯନ୍ତ୍ରପାତିର ବହୁଳ ବ୍ୟବହାର। ଏଗୁଡ଼ିକ କମ୍ପାନୀ ଚାଷପାଇଁ ଅଭିପ୍ରେତ। ଜି.ଏମ୍ ବିହନ ପ୍ରଚଳନ, ଫୁଲ ଚାଷ, ବାଇଗବା ଚାଷ, ଉଦ୍ୟାନ କୃଷି କମ୍ପାନୀମାନଙ୍କ ଦ୍ୱାରା ପରିଚାଳିତ କରି ଗ୍ରାମାଞ୍ଚଳ ଜୀବିକା ଉଚ୍ଛେଦ ପାଇଁ ଏହା ଉଦ୍ଦିଷ୍ଟ। ଓଡ଼ିଶାରୁ ୧୦ଲକ୍ଷ ଯୁବକ ବର୍ତ୍ତମାନ ବାହାରରାଜ୍ୟରେ ଦାଦନ ଖଟି ବହୁ ନିର୍ଯାତନାର ଶିକାର ହେଉଛନ୍ତି। ପ୍ରଚଳିତ କୃଷିନୀତି ବା ଖୁବ୍ ଶ୍ରୀଘ୍ର ପ୍ରକାଶ ପାଇବାକୁଥିବା ନୂତନ କୃଷିନୀତି ସମ୍ପୂର୍ଣ୍ଣ କୃଷକମାରଣ ନୀତି। ଏହାର ବିସ୍ତୃତ ବିତର୍କ ଆବଶ୍ୟକ।

ଇଫ୍‌କୋ ସାର କମ୍ପାନୀ ମାଟିପରୀକ୍ଷା ନାମରେ ଗାଁ-ଗାଁରେ ପଶି ରାସାୟନିକ ସାର, କୀଟନାଶକ ଓ କମ୍ପାନୀବିହନ ବିକ୍ରିପାଇଁ ଯୋଜନା ମେଲିଦେଲାଣି। ଇଫ୍‌କୋ ସହିତ ମନ୍‌ସାଣ୍ଟୋର ଭାରତ ସହଯୋଗୀ ମାହିକୋ ବିହନ କମ୍ପାନୀ ମିଳିତଭାବେ ଏ କାର୍ଯ୍ୟକ୍ରମରେ ଅଛନ୍ତି।

ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକ-ବାଲେଶ୍ୱର, ଭଦ୍ରକ, ଯାଜପୁର, ଜଗତ୍‌ସିଂହପୁର, କଟକ, ଖୋର୍ଦ୍ଧା, ପୁରୀ ଓ ଗଞ୍ଜାମରେ ୭୦ରୁ ୮୦ପ୍ରତିଶତ ଚାଷୀ ଭାଗଚାଷୀ। ଜମିମାଲିକମାନେ ଚାଷ ଲାଭଜନକ ନୁହେଁ ବା ସରକାରୀ ଚାକିରି, ଠିକାଦାରୀ, ରାଜନୀତି ଯୋଗୁଁ ନିଜେ ଚାଷକରନ୍ତି ନାହିଁ। କୃଷିରଣର ୮୦ପ୍ରତିଶତ ଏଇ ୨୦ପ୍ରତିଶତ ଜମିମାଲିକମାନେ ହିଁ ଲୁଣ୍ଠନ କରିଥାନ୍ତି। ମାତ୍ର ଓଡ଼ିଶା ସରକାରଙ୍କ ଜନଗଣନା ରିପୋର୍ଟ, କୃଷି ବିଭାଗର ତଥ୍ୟ ବା ରାଜସ୍ୱ ବିଭାଗରେ ଏହି ଭାଗଚାଷୀଙ୍କ କଥା ଉଲ୍ଲେଖ ମଧ୍ୟ ନାହିଁ। ଧନ୍ୟରେ ଓଡ଼ିଶା ସରକାର ପ୍ରତି ଆଠଦିନରେ କୃଷି ଓ କୃଷକପାଇଁ ଗୋଟିଏ ନୂଆ

ପ୍ୟାକେଜ୍ ଘୋଷଣା । ବ୍ୟବସ୍ଥା ଦୃଷ୍ଟିରୁ ବିଚାର କଲେ ସରକାରୀ ଦଳ ଓ ବିରୋଧୀଦଳ ଏଥିପାଇଁ ମୁଦ୍ରାର ଦୁଇଟି ପାର୍ଶ୍ୱମାତ୍ର । ଅନ୍ୟ କିଛି ଫରକ ନାହିଁ । କୃଷି ଓ କୃଷକର ଏହିଭଳି ଏକ ଦୟନୀୟ ସ୍ଥିତିରେ ଓଡ଼ିଶା ସରକାର କେନ୍ଦ୍ରସରକାରଙ୍କ ଠାରୁ ଖାଦ୍ୟ ନିରାପତ୍ତା ଯୋଜନାର ଟଙ୍କାଆଣି ବିଭାଗୀୟ ଅଧିକାରୀ, ରାଜନେତାମାନଙ୍କୁ ପୋଷିବେ ସିନା ଖାଦ୍ୟ ନିରାପତ୍ତା ଯୋଜନା ଓଡ଼ିଶାରେ ସମ୍ପୂର୍ଣ୍ଣ ବିଫଳ ହେବାକୁ ଯାଉଛି ।

**ବିକଳ୍ପ:**

ଗ୍ରାମର ୭୦ବର୍ଷରୁ ଅଧିକ ବୟସର ପୁରୁଷ,ସ୍ତ୍ରୀମାନଙ୍କୁ କୃଷି ବୈଜ୍ଞାନିକର ମାନ୍ୟତା ଦେଇ ଦେଶୀ ଚାଷ, ଦେଶୀବିହନ, ହଳ ଲଙ୍ଗଳର ପ୍ରବର୍ତ୍ତନ ସହିତ ଚାଷୀକୁ ପାଣିର ଅଧିକାର ଦିଆଯାଇପାରିଲେ ଆସନ୍ନ ଖାଦ୍ୟ ସଙ୍କଟକୁ ମୁକାବିଲା କରାଯାଇପାରିବ । ସମବାୟ ବା ବ୍ୟାଙ୍କଋଣ ଭାଗଚାଷୀଙ୍କୁ ନଦେଲେ ଆଗକୁ ଆନ୍ଦୋଳନ ହେବା ନିଶ୍ଚିତ । କୃଷକ ଆନ୍ଦୋଳନ ଥରେ ସଂଗଠିତ ହେଲେ ସରକାରୀ ବା ବିରୋଧୀଦଳମାନଙ୍କୁ ମୁକାବିଲା କରିବା କଷ୍ଟସାଧ ହେବ । ସରକାର ଆଗକୁ ସାବଧାନ ହୁଅନ୍ତୁ । 'ବୁଭୁକ୍ଷିତଂ କିଂ ନ କରୋତି ପାପ' । ଚାଷୀକୁ ଠେଙ୍ଗା ଧରିବାକୁ ବାଧ୍ୟ ନକରି କମ୍ପାନୀପ୍ରେମ ଛାଡ଼ି ଚାଷୀକୁ ନ୍ୟାୟ ଦେବା ସରକାରଙ୍କୁ ଚେତାବନୀ ।



# ସାଆନ୍ତିଆ ସମବାୟ

ପୃଥିବୀରେ ବର୍ତ୍ତମାନ ତିନିଗୋଟି ସଙ୍କଟ ଦେଖାଦେଇଛି । ଖାଦ୍ୟସଙ୍କଟ, ତୈଳ ସଙ୍କଟ ଏବଂ ଅର୍ଥସଙ୍କଟ । ପୃଥିବୀର ସବୁଦେଶ ଊଣାଅଧିକେ ଏହିସବୁ ସଙ୍କଟଦ୍ୱାରା ପ୍ରଭାବିତ । ସାମ୍ରାଜ୍ୟବାଦୀ ଆମେରିକା ଏହି ତିନି ସଙ୍କଟ ପାଇଁ ଦାୟୀ । ଭାରତ ବର୍ଷରେ ଆଉ ଏକ ସଙ୍କଟ ଦୀର୍ଘ ୪୦ବର୍ଷ ହେଲା ଅନୁଭୂତ ହେଲାଣି, ତାହା ହେଉଛି ସମବାୟ ସଙ୍କଟ । ଖାଦ୍ୟସଙ୍କଟରୁ ମୁକ୍ତିପାଇଁ ଆମେରିକା, ଏହାର ସହଯୋଗୀ ୟୁରୋପୀୟ ବନ୍ଧୁମାନେ ଏବଂ ସେମାନଙ୍କର ବହୁରାଷ୍ଟ୍ରୀୟ କମ୍ପାନୀମାନେ ଯେଉଁ ସୂତ୍ର ବାହାର କରିଛନ୍ତି ତାହା ହେଲା କମ୍ପାନୀ ଚାଷ ଏବଂ ଗୁଣସୂତ୍ର ପରିବର୍ତ୍ତିତ ବିହନ । ଭାରତବର୍ଷର କ୍ଷୁଦ୍ର ଓ ନାମମାତ୍ର ଚାଷୀ ପାଇଁ ଏହି ସୂତ୍ର ମରଣଯନ୍ତା । ହେଲେ ଆମ କେନ୍ଦ୍ର ସରକାର ଓ ରାଜ୍ୟ ସରକାରମାନେ ଏହି ସୂତ୍ରକୁ ଆପଣେଇ ସାରିଲେଣି । ୨୦୦୮ ନଭେମ୍ବର ୧୧ ତାରିଖରେ ହାଇଦ୍ରାବାଦରେ ଏସିଆ ବିହନ କଂଗ୍ରେସରେ ଯୋଗଦେଇ କେନ୍ଦ୍ର କୃଷିମନ୍ତ୍ରୀ ଜି.ଏମ୍. ବିହନ ଏବଂ ଠିକାଚାଷ ଖାଦ୍ୟ ନିରାପତ୍ତା ପାଇଁ ଅପରିହାର୍ଯ୍ୟ ବୋଲି ଘୋଷଣା କରିଛନ୍ତି । (ଦି ହିନ୍ଦୁ, ୧୨.୧୧.୨୦୦୮, ପୃଷ୍ଠା-୪) । ମୂଲୁ ମାଇଲେ ଯିବ ସରି, ଦେବଙ୍କ ସଙ୍ଗେ କିମ୍ପା କଳି । ଖାଦ୍ୟସଙ୍କଟ ଦ୍ୱାହିଦେଇ ଭାରତବର୍ଷର କୃଷି ଓ କୃଷକ (ବିଶେଷକରି କ୍ଷୁଦ୍ର ଓ ନାମମାତ୍ରଚାଷୀ, ଭାଗଚାଷୀ)କୁ ଧ୍ୱଂସ କରିବାପାଇଁ ପଥ ପରିଷ୍କାର ହେଉଛି । ତୈଳ ସଙ୍କଟରୁ ମୁକୁଳିବା ପାଇଁ ଯାନବାହାନ ଉତ୍ପାଦନକୁ ସୀମିତ କରିବା ସର୍ବୋତ୍ତମ ଉତ୍ତର ହେବ । ମାତ୍ର ବିକଶିତ ଓ ବିକାଶଶୀଳ ଦେଶମାନେ ଜୈବଇନ୍ଧନ ଉପରେ ଗୁରୁତ୍ୱ ଦେଉଛନ୍ତି । ବାଇଗବା ଚାଷରୁ ବାୟୋଡିଜେଲ ଏବଂ ଗହମ, ମକା, ସୋୟାବିନ ଓ ଆଖୁ ଭଳି ଖାଦ୍ୟ ସାମଗ୍ରୀରୁ ବାୟୋପେଟ୍ରୋଲ ବା ଏଥନଲ ପ୍ରସ୍ତୁତି କାମ ଜୋରସୋରରେ ଆରମ୍ଭ ହୋଇଯାଇଛି । ଚାଷୀ ମରିବ, ଖାଉଟି ମରିବ ଖାଦ୍ୟ ସଙ୍କଟ ଆହୁରି ତୀବ୍ରହେବ । ଅର୍ଥସଙ୍କଟର ଜନକ ଆମେରିକା । ଅନ୍ୟ ଦେଶମାନେ ଏଥିରେ ପ୍ରଭାବିତ ହେଲେଣି । ପୁଞ୍ଜିବାଦୀ ଶକ୍ତି ବ୍ୟାଙ୍କ, ଶିଳ୍ପପତିମାନଙ୍କୁ ସୁରକ୍ଷା ଦେବାପାଇଁ ସବୁ ଦେଶ ସରକାରୀ

ତହବିଲ ଖୋଲି ଚାଲିଛନ୍ତି। ମାତ୍ର ଏହି ପ୍ରକ୍ରିୟା ଚାଲୁରହିଲେ ଅର୍ଥସଙ୍କଟରୁ ତ ମୁକୁଳି ହେବନାହିଁ ବରଂ ସମାଜ କଲ୍ୟାଣ କାର୍ଯ୍ୟକ୍ରମ ସଙ୍କୁଚିତ ହୋଇଯିବ ଅର୍ଥାତ ଗରିବି ବଢ଼ିବ (ଦି ହିନ୍ଦୁ-୧୪.୧୧.୨୦୦୮, The Present Crisis and the way forward, Prof.Pravat Pattnaik)।

ଚତୁର୍ଥ ସଙ୍କଟ ଯାହାକି ଆମ ଦେଶରେ ଦୀର୍ଘଦିନ ହେଲା କ୍ରିୟାଶୀଳ ହୋଇଛି, ତାହା ହେଲା ସମବାୟ ସଙ୍କଟ। କ୍ଷୁଦ୍ର ଓ ନାମମାତ୍ର ଚାଷୀ, ବୁଣାକାର, ଗ୍ରାମାଞ୍ଚଳ ଛୋଟ ବ୍ୟବସାୟୀ ଓ ଗ୍ରାମ କାରିଗର ମାନଙ୍କର ଜୀବିକା ସୁରକ୍ଷିତକରିବା ସହିତ ଅର୍ଥନୈତିକ ଅଭିବୃଦ୍ଧିରେ ସାହାଯ୍ୟ କରିବାରେ ସମବାୟର ଭୂମିକା ଉଲ୍ଲେଖନୀୟ ହୋଇପାରନ୍ତା। ମାତ୍ର ଏଗୁଡ଼ିକରେ ରାଜନେତା ଓ ପ୍ରଶାସନର ଅନୁପ୍ରବେଶ ଯୋଗୁଁ ଏମାନେ ଲକ୍ଷ୍ୟପଥରୁ ବିଚ୍ୟୁତ ହୋଇଚାଲିଛନ୍ତି। ଏହି ସଙ୍କଟରୁ ମୁକ୍ତିପାଇଁ ପ୍ରତିବର୍ଷ ନଭେମ୍ବର ୧୪ରୁ ୨୦ତାରିଖ ସମବାୟ ସପ୍ତାହ ପାଳନ ଆଳରେ ସମବାୟ ମନ୍ତ୍ରୀ,ମୁଖ୍ୟମନ୍ତ୍ରୀ ଓ ନିର୍ବାଚିତ ପ୍ରତିନିଧିମାନେ 'କ୍ଷୁଦ୍ରଚାଷୀ ଓ ନାମମାତ୍ର ଚାଷୀଙ୍କ ରକ୍ଷାକବଚ ସମବାୟ' ବୟାନ କରି ବହୁ ଛଳନାତ୍ମକ କୁମ୍ଭୀର କାନ୍ଦଣା କାନ୍ଦିଥାନ୍ତି। ବାସ୍, ପୁଣି ବର୍ଷେ ଚାଲିବ। ବର୍ଷସାରା ସମବାୟକୁ ହରିଲୁଟ୍ କରି ପୁଣି ସମବାୟ ସପ୍ତାହକୁ ଅପେକ୍ଷା ରଖିଥାନ୍ତି ଏହି ନେତା ଓ ରାଜ୍ୟ ପ୍ରଶାସନିକକଳ।

ସମବାୟ ଦର୍ଶନ, ତତ୍ତ୍ୱ ଓ ମଣିଷସମାଜ ପାଇଁ ଏହାର ଉପାଦେୟତା ସମ୍ପର୍କରେ ଯେଉଁମାନଙ୍କର ସମ୍ୟକ ଜ୍ଞାନ ଅଛି, ସେମାନେ ହୃଦ୍‌ବୋଧ କରୁଥିବେ ସଫଳ ସମବାୟ ଆନ୍ଦୋଳନ ଦ୍ୱାରା ଖାଲି ଯେ ଖାଦ୍ୟସଙ୍କଟ,ତୈଳସଙ୍କଟ,ଆର୍ଥିକସଙ୍କଟ ବା ସମବାୟ ସଙ୍କଟକୁ ଏଡ଼ାଇ ଦିଆଯାଇ ପାରିବ, ସେତିକି ନୁହେଁ। ଏଥିସହିତ ଶିକ୍ଷା,ସ୍ୱାସ୍ଥ୍ୟ, ସଂସ୍କୃତି, ପରିବେଶ ଏପରିକି ଜଳବାୟୁ ପରିବର୍ତ୍ତନ ବା ଗ୍ଲୋବାଲୱାର୍ମିଂ ଭଳି ସଙ୍କଟମାନଙ୍କର ସମାଧାନ ସୂତ୍ର ସମବାୟରେ ଅଛି। କେହି କେହି ଏହାକୁ ଉଦ୍ଭଟ ଚିନ୍ତା କହିପାରନ୍ତି। ବିତର୍କକୁ ଆସିଲେ କଥାଗୁଡ଼ିକ ପରିଷ୍କାର ହୋଇଯିବ।

ଜଗତୀକରଣ, ମୁକ୍ତ ଅର୍ଥନୀତି, ଘରୋଇକରଣ ଓ ଉଦାରୀକରଣ ପ୍ରକ୍ରିୟା ହିଁ ଆଜିର ଆର୍ଥିକ ସଙ୍କଟର ପ୍ରମୁଖ କାରଣ। ବହୁରାଷ୍ଟ୍ରୀୟ କମ୍ପାନୀ ଓ କର୍ପୋରେଟ ବ୍ୟବସାୟକୁ ନିୟନ୍ତ୍ରଣରେ ରଖିବା ପାଇଁ ଆମେରିକା, କାନାଡ଼ା, ଆର୍ଜେଣ୍ଟିନା, ଓ ୟୁରୋପୀୟ ଦେଶମାନେ ସମବାୟକୁ ମଧ୍ୟ ଉପଯୋଗ କରୁଛନ୍ତି। ଋଷ, ଚୀନ୍, ପୂର୍ବ ୟୁରୋପୀୟ ସାମ୍ୟବାଦୀ ରାଷ୍ଟ୍ରମାନେ ସାମୟିକ ଦିଗହରା ହେଉଥିଲେ ମଧ୍ୟ କ୍ଷୁଦ୍ର ଓ ନାମମାତ୍ର ଚାଷୀ, ଭୂମିହୀନ,

ଛୋଟଛୋଟ ବ୍ୟବସାୟୀ,ବୁଣାକାର, କୁଶଳୀ କାରିଗର ଓ କୁଟୀରଶିଳ୍ପର ଅଭିବୃଦ୍ଧି ପାଇଁ 'ସମବାୟ, ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଚାଲିଛନ୍ତି। ଭାରତବର୍ଷରେ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଗଣତନ୍ତ୍ରର ଦ୍ୱାହିଦେଇ ସବୁ ଜନକଲ୍ୟାଣ ସଂସ୍ଥା ଭଳି ସମବାୟ ସଂସ୍ଥାମାନଙ୍କର ଦୁରୁପଯୋଗ କରି ଏହାକୁ ମାତ୍ରାଧିକ ରାଜନୀତି ଓ ଉଚ୍ଚ ପ୍ରଶାସନିକ ଅଧିକାରୀମାନେ ସଭାସମିତିରେ ସମବାୟର ଗୁଣଗାନ କଲାବେଳେ କୁହନ୍ତି 'ସମବାୟ ସଭ୍ୟମାନଙ୍କ ଦ୍ୱାରା, ସଭ୍ୟମାନଙ୍କ ପାଇଁ ଏବଂ ସଭ୍ୟମାନଙ୍କର ନିଜସ୍ୱ ଅନୁଷ୍ଠାନ'। ଏତିକି କହିଦେଇ କାମଧେନୁକୁ ଦୁହିଁଲା ଭଳି ସମବାୟକୁ ଲୁଣ୍ଠନ କରିଥାନ୍ତି।

ଭାତହାଣ୍ଡିରୁ ଗୋଟିଏ ଚିପିଲାଭଳି ଏଠାରେ କେତୋଟି ଉଦାହରଣ ଦେଲେ କଥାଟା ସ୍ପଷ୍ଟ ହୋଇଯିବ। ଭାରତବର୍ଷରେ ସମବାୟ ଆଇନ ପ୍ରଣୟନ ଓ ପରିଚାଳନା ରାଜ୍ୟ ସରକାରମାନଙ୍କ ଦାୟିତ୍ୱ। କେବଳ ଆନ୍ତଃରାଜ୍ୟ ସମବାୟ ଗଠନ ଓ କାର୍ଯ୍ୟକାରୀପାଇଁ ଭାରତ ସରକାରଙ୍କ ସମବାୟ ରେଜିଷ୍ଟ୍ରାରଙ୍କଠାରୁ ପଞ୍ଜିକରଣ ଆବଶ୍ୟକ ହୋଇଥାଏ। ଗୁଜୁରାଟର ମାଧବପୁରା ମର୍ଚ୍ଚାଣ୍ଟାଇଲ କୋ-ଅପେରେଟିଭ ବ୍ୟାଙ୍କ୍ ୧୯୬୮ରେ ପଞ୍ଜିକୃତ ହେଲା। ୧୯୯୯ମସିହାକୁ ଏହା ଗୁଜୁରାଟର ଦ୍ୱିତୀୟ ବୃହତ୍ତମ ତଫସିଲଭୁକ୍ତ ବ୍ୟାଙ୍କ୍‌ର ମାନ୍ୟତା ପାଇଗଲା। ପରେ ପରେ ଏହି ବ୍ୟାଙ୍କ୍ ଅନ୍ୟ ପଡ଼ୋଶୀ ରାଜ୍ୟରେ ବ୍ୟବସାୟ କରିବାଲକ୍ଷ୍ୟରେ ରିଜର୍ଭବ୍ୟାଙ୍କ ସୁପାରିଶରେ ଭାରତସରକାରଙ୍କ ମଲ୍ଟିଷ୍ଟେଟ କୋ - ଅପରେଟିଭ ସୋସାଇଟିଜ୍ ଆକ୍ଟରେ ପଞ୍ଜିକୃତ ହୋଇଗଲା। ସେତେବେଳକୁ ଏହାର ସଭ୍ୟସଂଖ୍ୟା ୮୪୦୦୦ଏବଂ ସଭ୍ୟମାନଙ୍କ ଅଂଶଧନ,ଜମା ଏବଂ ଅନ୍ୟ କେତେକ ଛୋଟ ଛୋଟ ବ୍ୟାଙ୍କ୍ ଓ ସମବାୟର ଜମାରେ ଏହାର କାରବାର ୧୨୦୦କୋଟି ହୋଇଗଲା।୨୦୦୧ମାର୍ଚ୍ଚ ୮ତାରିଖକୁ ବ୍ୟାଙ୍କ୍‌ର ଜାଲିଆତି ବାହାରକୁ ଜଣାପଡ଼ିଗଲା। ବ୍ୟାଙ୍କ୍‌ର ଅଧ୍ୟକ୍ଷ ରମେଶ ପାରିଖ ବ୍ୟାଙ୍କ୍‌ରୁ ଅସାଧୁ ଉପାୟରେ ରୋଜଗାର କରିବାଲକ୍ଷ୍ୟରେ ସେୟାର ବଜାରର ଦଲାଲ କେତନ ପାରିଖକୁ ବିନା ସିକ୍ୟୁରିଟିରେ ୨୦୦କୋଟିଟଙ୍କା ସେୟାର ବେପାର ପାଇଁ ଦେଇ ଦେଲେ। ଘୋଟାଲା ସମ୍ପର୍କରେ ସଞ୍ଚୟକାରୀମାନଙ୍କ କାନକୁ ଆସିଲା। ସେମାନେ ବିବ୍ରତ ହୋଇ ସଞ୍ଚୟଟଙ୍କା ଉଠାଇନେବାକୁ ବ୍ୟାଙ୍କରେ ଧାଡ଼ିବାନ୍ଧିଲେ। ୬୫ କୋଟି ଟଙ୍କାର ପେ-ଅର୍ଡ଼ର ଧରି ବ୍ୟାଙ୍କ୍‌ରେ ଭଙ୍ଗାଇବାକୁ ଯାଇଦେଖିଲେ ସେତେବେଳକୁ ବ୍ୟାଙ୍କ୍‌ରେ ଟଙ୍କା ନାହିଁ। ବ୍ୟାଙ୍କ୍‌ର ଅଧ୍ୟକ୍ଷ ରମେଶ ପାରିଖ, ମୁଖ୍ୟ କାର୍ଯ୍ୟନିର୍ବାହୀ ଦେବେନ୍ଦ୍ର ପାଣ୍ଡିଆ ଏବଂ ସେୟାର ଦଲାଲ କେତନ ପାରିଖ ୧୨୦୦କୋଟି ଟଙ୍କାର ବ୍ୟାଙ୍କ୍‌କୁ ଚଲୁ କରିଦେଲେ। ରକ୍ଷକ ଭକ୍ଷକ ହୋଇଗଲେ।

ଅବଶ୍ୟ ଦୋଷୀମାନେ ଗିରଫ ହେଲେ। କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କ ଆର୍ଥିକ ସାହାଯ୍ୟରେ ବ୍ୟାଙ୍କଟି ପୁଣି କାର୍ଯ୍ୟକ୍ଷମ ହେଲା। ମାତ୍ର ଏହି ଜାଲିଆତି ସଞ୍ଚୟକାରୀ ବା ସେବା-ଗ୍ରହଣକାରୀମାନଙ୍କର ଆସ୍ଥାକୁ ଏପର୍ଯ୍ୟନ୍ତ ଆସିପାରି ନାହିଁ।

ଆମରାଜ୍ୟ ଓଡ଼ିଶାରେ ସରକାରଙ୍କ ସମବାୟ ଉପରେ ବଳାତ୍କାର, ଧର୍ଷଣ ଓ ଲୁଣ୍ଠନର ବହୁ ନଜିର ଅଛି। ଗୋଟିଏ ଉଦାହରଣ ଏଠାରେ ରଖିବା। ୨୦୦୧ ଏପ୍ରିଲ ମାସ କଥା। ରାଜ୍ୟ ସରକାର ଓଡ଼ିଶା ରାଜ୍ୟ ସମବାୟବ୍ୟାଙ୍କ୍‌ର ନିର୍ବାଚିତ ବୋର୍ଡ଼କୁ ଭାଙ୍ଗିଦେଲେ। ବ୍ୟାଙ୍କ୍ ପରିଚାଳନା ଦାୟିତ୍ୱ ସମବାୟ ବିଭାଗ ସଚିବଙ୍କୁ ଦେଲେ। କି ଅସୀମ ଶକ୍ତି ସରକାରଙ୍କର। ବୋର୍ଡ଼ ନିର୍ଦ୍ଦେଶକମାନଙ୍କର ବା ସାଧାରଣ ସଭାର ମତାମତ ମଧ୍ୟ ଦରକାର ପଡ଼ିଲାନି। ଆର୍ଥିକ ଅନିୟମିତତା ଓ ପରିଚାଳନାଗତ ତ୍ରୁଟି ଯୋଗୁଁ ବୋର୍ଡ଼କୁ ଭାଙ୍ଗିଦେବା ଦରକାର ପଡ଼ିଲା ବୋଲି ସରକାର ସଫେଇ ଦେଲେ। ବ୍ୟାଙ୍କ୍‌ର କର୍ମଚାରୀ ମାନେ କିନ୍ତୁ ଭିତିରି କଥାଟି ଖୋଲାସା କରିଦେଲେ। ଓଡ଼ିଶା ରାଜ୍ୟ ସମବାୟ କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ୍ (OSCARDB) ରାଜ୍ୟସରକାରଙ୍କ ମନୋନୀତ ବୋର୍ଡ଼ ଏବଂ ସରକାରୀଦଳର ଜଣେ ଟାଣୁଆ ନେତାଙ୍କ ଅଧ୍ୟକ୍ଷତାରେ ଚାଲୁଥାଏ। ୨୦୦୧ ମାର୍ଚ୍ଚ ବେଳକୁ ଅଧ୍ୟକ୍ଷ, ପରିଚାଳନା କମିଟି (ବୋର୍ଡ଼) ଏବଂ କର୍ମଚାରୀମାନଙ୍କ ସମ୍ମିଳିତ ଉଦ୍ୟମରେ ବ୍ୟାଙ୍କ୍ ହରିଲୁଟ ହୋଇ ଅଚଳ ହୋଇପଡ଼ିଥାଏ। ରାଜ୍ୟ ସରକାର OSCARDB ବ୍ୟାଙ୍କ୍‌କୁ ସୁଧାରିବା ପାଇଁ ରାଜ୍ୟ ସମବାୟ ବ୍ୟାଙ୍କ୍‌କୁ ୧୭କୋଟି ଟଙ୍କାର ଏକ ପ୍ୟାକେଜ ମଞ୍ଜୁର କରିବା ପାଇଁ ନିର୍ଦ୍ଦେଶ ଦେଲେ। ମାତ୍ର ରାଜ୍ୟ ସମବାୟବ୍ୟାଙ୍କ୍‌ର ପରିଚାଳନା ନିର୍ଦ୍ଦେଶକ ସାହସର ସହିତ ରାଜ୍ୟ ସରକାରଙ୍କ ବ୍ୟାଙ୍କ୍ ସ୍ୱାର୍ଥବିରୋଧୀ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲେ। ସଭ୍ୟମାନଙ୍କ ପାଣ୍ଠିକୁ ପାଣିରେ ପକାଇଦେବାକୁ ସେ ବା କିପରି ଚାହିଁଥାନ୍ତେ ? ମାଙ୍କଡ଼ ହାତରେ ଶାଳଗ୍ରାମ ପରି ଓଡ଼ିଶାରେ ଶାସକ ଦଳ ସମବାୟଗୁଡ଼ିକୁ ହସ୍ତମୁଦି ମାହାଲ ଭାବେ ବ୍ୟବହାର କରିଥାନ୍ତି। ରାଜ୍ୟ ସମବାୟ ବ୍ୟାଙ୍କ୍ ସରକାରଙ୍କ ରୋଷର ଶିକାର ହୋଇଗଲା। ସରକାର ରାଜ୍ୟ ସମବାୟ ବ୍ୟାଙ୍କ୍‌ର ପରିଚାଳନା ସଭ୍ୟମାନଙ୍କ ହାତରୁ ଛଡ଼ାଇନେଲେ।

ଓଡ଼ିଶାରେ ୧୯୬୨ସମବାୟ ଆଇନ ଆଜି ବି ବଳବତ୍ତର ରହିଛି। କ୍ଷମତାସୀନ ଦଳକୁ ସୁହାଇଲା ଭଳି ସମବାୟ ଆଇନର ସାମୟିକ ସଂଶୋଧନ ହୋଇଥାଏ। ୧୯୬୨ସମବାୟରେ ସଭ୍ୟର ଭୂମିକା ଗୌଣ। ସରକାର ନିଜଇଚ୍ଛାରେ ଉପବିଧି

ବଦଳାଇଥାନ୍ତି। ସରକାରଙ୍କ ମନୋନୀତ ବ୍ୟକ୍ତିମାନେ ପରିଚାଳନା ପରିଷଦରେ ଡାଇରେକ୍ଟର ନିଯୁକ୍ତି ପାଇଥାନ୍ତି। ସରକାର ନିର୍ବାଚନ ପରିଚାଳନା କରନ୍ତି। ସାଧାରଣ ନିର୍ବାଚନରେ ହାରିଯାଉଥିବା ବା ଟିକେଟ ନପାଇଥିବା ସରକାରୀଦଳର ନେତାମାନଙ୍କୁ ସମବାୟର ମୁଖ୍ୟ ପଦବୀରେ ଅନୁକମ୍ପାମୂଳକ ନିଯୁକ୍ତି ଦିଆଯାଇଥାଏ। ସେମାନେ ନାମକୁମାତ୍ର ସମବାୟର ସଭ୍ୟ ହୋଇଥାନ୍ତି। ଲେଖକ ସମବାୟ, ପାଠକ ସମବାୟ ବା ଅଟୋଚାଳକ ସମବାୟ ଭଳି କିଛି ଗୋଟିଏ ସମବାୟ ଗଠନକରିଦେଇ ଏହି ନେତାମାନେ ସମବାୟର ସଭ୍ୟ ହୋଇପଡ଼ନ୍ତି। ନିର୍ବାଚନବେଳେ ପ୍ରାର୍ଥୀମାନେ ନିଜ ନିଜର ଜାଲ୍ ସଭ୍ୟ ସଂଖ୍ୟା ବଢ଼ାଇଥାନ୍ତି। ନିର୍ବାଚନରେ ବେଶ୍ ପଇସା ବି ଖର୍ଚ୍ଚହୁଏ। ପ୍ରାଥମିକ ସମବାୟ ବୋର୍ଡ଼ ମେମ୍ବର ପାଇଁ ୫୦ହଜାରରୁ ଲକ୍ଷେ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ, ଏହି ସମବାୟର ଅଧକ୍ଷ ପଦପାଇଁ ଲକ୍ଷେଠାରୁ ଦୁଇଲକ୍ଷ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚକରି ଭୋଟ କିଣିବାକୁ ପଡ଼ିଥାଏ। ଜିଲ୍ଲା କେନ୍ଦ୍ରୀୟ ସମବାୟ ବ୍ୟାଙ୍କ୍‌ର ଅଧକ୍ଷ ପାଇଁ ୧୦ଲକ୍ଷରୁ ୨୦ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ ହେଉଥିବାର ନଜିର ମଧ ଅଛି। କ୍ଷମତାକୁ ଆସିଗଲେ ଏମାନେ ବ୍ୟାଙ୍କ୍ ବା ପ୍ରାଥମିକ ସମବାୟରେ ଆସ୍ଥାନ ଜମାଇ କୋଟିକୋଟି ଟଙ୍କା ଗର୍ଭସ୍ଥ କରିଥାନ୍ତି। ସଭ୍ୟମାନଙ୍କର ଧାରଣା ରହିଛି ସମବାୟ ସରକାରଙ୍କର। ସରକାର ସେମାନଙ୍କୁ ଋଣଦେଉଛନ୍ତି। ସମବାୟ ବୁଡିଗଲେ ତାଙ୍କର କିଛି ଲାଭ କ୍ଷତି ନାହିଁ।

ଅତୀତରେ ଗାଁ ଗାଁରେ କୋଠ ତହବିଲ ଥିଲା। ଭାଗବତ ଟୁଙ୍ଗି ବା କୋଠଘରେ ଶସ୍ୟଭଣ୍ଡାର ଓ ବିହନ ଜମାରହୁଥିଲା। ଗାଁର ଚାଷୀ ମୂଲିଆଙ୍କୁ ତିରୋଟ ବେଳେ କୋଠରୁ ଖାଦ୍ୟଶସ୍ୟ ଋଣସୂତ୍ରରେ ଦିଆଯାଉ ଥିଲା। ବିହନ ନିଜପାଖରେ ନଥିଲେ କୋଠ ଘରୁ ବିହନ ନେଉଥିଲେ। ଖର୍ଚ୍ଚବାର୍ଚ୍ଚ ପାଇଁ ଟଙ୍କା ବି କରଜ ନେଉଥିଲେ। ଗାଁର ମୁରବୀ ପାଞ୍ଚଜଣ ଏହାର ପରିଚାଳନା କରୁଥିଲେ। ମୁହଁ ହିସାବରେ, ବିନା କାଗଜପତ୍ରରେ ଏହା ଚାଲୁଥିଲା। କୋଠଧନ ଖାଇଯିବା, ତୋଷରପାତ କରିବା ଭଳି ଧାରଣା ବି ନଥିଲା। ଚାଷୀମାନେ ଏହି ଜରୁରୀକାଳୀନ ସେବାପାଇଁ ଟଙ୍କା ଓ ଧାନର କିଛି କିଛି ସୁଧ ବି ଦେଉଥିଲେ। ସେତେବେଳର ମୁଣ୍ଡ ଆଜିର କମ୍ପ୍ୟୁଟରଠାରୁ କିଛି କମ୍ ନଥିଲା। ପୁଷମାସରେ ଧାନ ଅମଳ ହୁଏ। ଗାଁର ପ୍ରତ୍ୟେକ ସ୍ୱଚ୍ଛଳ ପରିବାର ନିଜର ଶକ୍ତିମୁତାବକ ଧାନ ଓ କିଛି ଟଙ୍କା ଏହି କୋଠ ଫଣ୍ଡକୁ ଦେଉଥିଲେ। ସେତେବେଳର ଏହି ବ୍ୟବସ୍ଥାକୁ ମଧ ଏକପ୍ରକାର ସମବାୟ ବୋଲି ଆମେ କହିପାରିବା। ଗ୍ରାମ୍ୟ ଅର୍ଥନୀତିର ଅଭିବୃଦ୍ଧି ଓ ଖାଦ୍ୟ ନିରାପତ୍ତାଯୋଗୁଁ ଏହାର ସଫଳତା ଆଜିବି ଆଲୋଚନାର ବସ୍ତୁ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

ବିଧିବଦ୍ଧ ସମବାୟ ଆତ୍ମପ୍ରକାଶ କଲା ୧୮୨୯ ମସିହାରେ। ବିଲାତରେ ସେତେବେଳକୁ ଶିଳ୍ପପତି, ସରକାର, ବ୍ୟବସାୟଗୋଷ୍ଠୀ, ଶିଳ୍ପଶ୍ରମିକ, ବୁଣାକାର, କୃଷକ, କୁଶଳୀ କାରିଗରମାନଙ୍କୁ ଶୋଷଣ ଆରମ୍ଭ କରିଦେଇଥାନ୍ତି। ସାଧାରଣ ନାଗରିକର ଜୀବିକା, ସ୍ୱାସ୍ଥ୍ୟ,ଶିକ୍ଷା ବିପନ୍ନ ହୋଇପଡ଼ିଥାଏ। ବୃଦ୍ଧ, ଅକର୍ମଣ୍ୟ, ମହିଳା ଓ ଦୁର୍ବଳଶ୍ରେଣୀର ଲୋକମାନଙ୍କର ସାମାଜିକ ନିରାପତ୍ତା ନଥାଏ। ଏପରିକି ମୃତ୍ୟୁ ପରେ ଅନ୍ତ୍ୟେଷ୍ଟିକ୍ରିୟା ମଧ୍ୟ ପରିବାରପକ୍ଷେ ସମ୍ଭବ ହେଉ ନଥାଏ। ସାଧାରଣ ଲୋକମାନଙ୍କର ଏହି ସବୁ ସମସ୍ୟାର ସମାଧାନ ଲକ୍ଷ୍ୟରେ କେତେକ ଚିନ୍ତାଶୀଳ ବ୍ୟକ୍ତି ଗୋଟିଏ ଅନୁଷ୍ଠାନ ଗଢ଼ିବାର କଳ୍ପନା କଲେ। ସରକାରଙ୍କଠାରୁ କିଛି ସାହାଯ୍ୟନନେଇ ଏହି ଅନୁଷ୍ଠାନର ସଭ୍ୟମାନେ ନିଜ ପ୍ରଚେଷ୍ଟାରେ ନିଜପାଇଁ ସମ୍ବଳ ଯୋଗାଡ଼କରିବେ ଏବଂ ଅନୁଷ୍ଠାନଟି ସଭ୍ୟମାନଙ୍କ ଦ୍ୱାରା ପରିଚାଳିତ ହେବ ଏବଂ ସଭ୍ୟମାନଙ୍କର ଅଧିକାରରେ ରହିବ, ତେବେ ଯାଇ ଏହାର ଲକ୍ଷ୍ୟସାଧନ ହୋଇପାରିବ। ସେମାନେ ବିଲାତର ରୋକ୍‌ଡେଲେ ସହରରେ ବସି ଏହି ଲକ୍ଷ୍ୟ ଓ କାର୍ଯ୍ୟକ୍ରମକୁ ଲିପିବଦ୍ଧ କଲେ। 'ରୋକ୍‌ଡେଲ ସୋସାଇଟି ଅଫ୍ ଇକ୍ୱିଟେବଲ ପାଇଓନିୟରସ୍ ଫ୍ରେଣ୍ଡଲି ସୋସାଇଟି ଆକ୍ଟସ୍ ୧୮୨୯ ଏବଂ ୧୮୩୪' ଅନୁଯାୟୀ ଏହା ପଞ୍ଜିକୃତ ହେଲା। ସାଧାରଣ ବର୍ଗ ଲୋକଙ୍କଉପରେ ବିଲାତ ସରକାରଙ୍କ ଅତ୍ୟାଚାର ଏହି ସମୟକୁ ଚରମସୀମାରେ ପହଞ୍ଚି ଯାଇଥିଲା। ୧୮୫୨ମସିହା,ବିଲାତ ପାର୍ଲିଆମେଣ୍ଟରେ ଶିଳ୍ପ ଓ ସମବାୟ ଆଇନ ମଞ୍ଜୁରୀ ପାଇଗଲା। ସେତେବେଳକୁ ରୋକ୍‌ଡେଲର ୨୮ଜଣ ବୁଣାକାର ଶିଳ୍ପଜାତ ବସ୍ତ୍ର ସହିତ ଓ ଶିଳ୍ପପତିମାନଙ୍କ ଶୋଷଣରୁ ମୁକ୍ତି ପାଇଁ ଅଣ୍ଟା ଭିଡ଼ିଲେଣି।

ରୋକ୍‌ଡେଲ ସମବାୟ ଘୋଷଣାନାମାରେ ସମବାୟ ପାଇଁ ସାତଟି ନୀତି ସ୍ଥାନ ପାଇଥିଲା।

୧- ପ୍ରତ୍ୟେକ ଯୋଗ୍ୟ ଓ ସେବାଗ୍ରହଣ ପାଇଁ ପ୍ରତିଶ୍ରୁତିବଦ୍ଧ ବ୍ୟକ୍ତି ସମବାୟର ସଭ୍ୟପଦ ପାଇଁ ଆବେଦନ କଲେ ତାଙ୍କୁ ସଭ୍ୟଭାବେ ଗ୍ରହଣ କରାଯାଇ ପାରିବ।

୨- ଗଣତାନ୍ତ୍ରିକ ନିୟନ୍ତ୍ରଣ-ଜଣେ ସଭ୍ୟ ଗୋଟିଏ ଭୋଟ

୩- ସମବାୟରୁ ସେବା ଗ୍ରହଣ କରିଥିବା ଅନୁପାତରେ ସମବାୟର ଲାଭାଂଶ ପ୍ରତ୍ୟେକ ସଭ୍ୟଙ୍କୁ ବର୍ଷକୁ ଥରେ ବଣ୍ଟନ କରାଯିବ।

୪- ଅଂଶ କ୍ରୟକରିଥିବା ସଭ୍ୟମାନଙ୍କପାଇଁ ସୀମିତ ସୁଧ ମିଳିବ।

୫- ସମବାୟ ସଭ୍ୟର ଅର୍ଥନୈତିକ ଅଭିବୃଦ୍ଧି ପାଇଁ କାର୍ଯ୍ୟ କରିବ, ବ୍ୟବସାୟ କରିପାରିବ। ଏଥିରେ ରାଜନୀତି ଓ ଧାର୍ମିକ ନିରପେକ୍ଷତା ଅକ୍ଷରେ ଅକ୍ଷରେ ପାଳନ କରାଯିବ।

୬- ବ୍ୟବସାୟ ନଗଦ ଆକାରରେ କରାଯିବ। ବାକିର ପ୍ରଶ୍ନ ହିଁ ରହିବ ନାହିଁ।

୭- ସମବାୟ କାର୍ଯ୍ୟକ୍ଷମ ହେବାକ୍ଷଣି ସଭ୍ୟ, ଅନ୍ୟାନ୍ୟ ସମବାୟ ଅନୁଷ୍ଠାନ,ବୋର୍ଡ଼ ମେମ୍ବର ଏପରିକି ସରକାରଙ୍କ ବିଭିନ୍ନ ବିଭାଗର କର୍ମଚାରୀଙ୍କ ପାଇଁ ସମବାୟଶିକ୍ଷା କାର୍ଯ୍ୟକ୍ରମ ପରିଚାଳନା କରିବେ। ୧୯୩୭, ୧୯୬୬ ଏବଂ ୧୯୯୫ରେ ଆନ୍ତର୍ଜାତିକ ସମବାୟ ପ୍ରତିଷ୍ଠାନ (International Co-operative Alliance-ICA) ଏହି ନୀତି ଗୁଡ଼ିକର ଆବଶ୍ୟକ ସ୍ଥଳେ ସଂଶୋଧନ ମଧ୍ୟ କରିଛନ୍ତି।

୧୯୯୫ ସେପ୍ଟେମ୍ବର ୨୦-୨୩ମଧ୍ୟରେ ବିଲାତର ମାଞ୍ଚେଷ୍ଟର ସହରରେ ଆନ୍ତର୍ଜାତିକ ସମବାୟ ପ୍ରତିଷ୍ଠାନ (International Co-operative Alliance)ର ସାଧାରଣ ଅଧିବେଶନରେ ମୂଳ ୭ଟି ନୀତିକୁ ସଂଶୋଧନ କରି ସମବାୟ ପରିଚୟ ପାଇଁ ନିମ୍ନଲିଖିତ ଉକ୍ତିଗୁଡ଼ିକ ଲିପିବଦ୍ଧ କଲେ।

କ- ସଂଜ୍ଞା-ସମବାୟ ସ୍ୱେଚ୍ଛାକୃତ ଭାବେ ମିଳିତ ହୋଇଥିବା ବ୍ୟକ୍ତିମାନଙ୍କର ସ୍ୱୟଂଶାସିତ ପ୍ରତିଷ୍ଠାନ। ସଭ୍ୟମାନଙ୍କର ଆର୍ଥିକ,ସାମାଜିକ ଓ ସାଂସ୍କୃତିକ ଆବଶ୍ୟକତା ଏବଂ ଅଭିଳାଷ ପୂରଣ ପାଇଁ ଗଣତାନ୍ତ୍ରିକ ପଦ୍ଧତିରେ ନିୟନ୍ତ୍ରିତ ଗୋଟିଏ ବ୍ୟବସାୟୀ ସଂସ୍ଥା।

ଖ- ମୂଲ୍ୟବୋଧ-ବ୍ୟକ୍ତିଗତ ସାହାଯ୍ୟ, ଦାୟିତ୍ୱବୋଧ, ଗଣତନ୍ତ୍ର, ସମତା, ସମାନ ଅଂଶ ଏବଂ ଏକତା ଉପରେ ସମବାୟ ଆଧାରିତ। ସଭ୍ୟମାନେ ସାଧୁତା, ମୁକ୍ତ କାର୍ଯ୍ୟଶୈଳୀ ଓ ସାମାଜିକ ଦାୟିତ୍ୱବୋଧ ପାଇଁ ବଚନବଦ୍ଧ।

ଗ- ୧) ମୁକ୍ତ ଓ ସ୍ୱେଚ୍ଛାକୃତ ସଭ୍ୟପଦ
୨) ଗଣତାନ୍ତ୍ରିକ ଧାରାରେ ସଭ୍ୟମାନଙ୍କ ଦ୍ୱାରା ପରିଚାଳିତ
୩) ସଭ୍ୟମାନଙ୍କର ସମାନ ଆର୍ଥିକ ସହଯୋଗ
୪) ସ୍ୱୟଂଶାସିତ ଓ ସ୍ୱାଧୀନ ମତବ୍ୟକ୍ତ ପାଇଁ ଅଧିକାର
୫) ସଭ୍ୟମାନଙ୍କ ପାଇଁ ସମବାୟ ଶିକ୍ଷା, ପ୍ରଶିକ୍ଷଣ ଓ ସୂଚନା ଅଧିକାର
୬) ଆବଶ୍ୟକ ସ୍ଥଳେ ଅନ୍ୟାନ୍ୟ ସମବାୟ ସହିତ ସମ୍ପର୍କ ସ୍ଥାପନ
୭) ସାଧାରଣ ସଭାର ଅନୁମୋଦନରେ ସମବାୟର କାର୍ଯ୍ୟକାରୀ ପରିସୀମାର ଗୋଷ୍ଠୀଙ୍କ ସାମାଜିକ, ସାଂସ୍କୃତିକ ଓ ନିରନ୍ତର ବିକାଶ ପାଇଁ ସମବାୟର ଲାଭାଂଶରୁ ପ୍ରକଳ୍ପ କାର୍ଯ୍ୟକାରୀ କରିବା।

■ *ଆଜ କେତେ ବିଷ ପିଇଲେ ଚେତିବା... !*

ଆମଦେଶରେ ସମବାୟ ଆନ୍ଦୋଳନ ୧୯୦୩ ମସିହାରେ ଜନ୍ମନିଏ । ଓଡ଼ିଶାବାସୀ ଗର୍ବକରନ୍ତି ଭାରତବର୍ଷର ପ୍ରଥମ ସମବାୟ ସମିତି ୧୯୦୩ ମସିହାରେ କଟକଜିଲ୍ଲାର ବାଙ୍କିରେ ପ୍ରତିଷ୍ଠିତ ହୋଇଥିଲା । ଗ୍ରାମାଞ୍ଚଳ ବୁଣାକାର, କୁଶଳୀ କାରିଗର, ଛୋଟ ବ୍ୟବସାୟୀ ଓ ମୁଖ୍ୟତଃ କୃଷକମାନଙ୍କୁ ଋଣ ଯୋଗାଇବା ଲକ୍ଷ୍ୟରେ ୧୯୦୪ମସିହାରେ କ୍ରେଡ଼ିଟ କୋ-ଅପରେଟିଭ୍ ଗଠନ କରାଗଲା । ଆଜିବି ଦେଶର ୯୦ପ୍ରତିଶତ ସମବାୟ କେବଳ ଋଣ ଲଗାଣକାରୀ ସଂସ୍ଥାଭାବେ ସରକାରଙ୍କ ନିୟନ୍ତ୍ରଣରେ ରହି କାମ କରୁଛି । ବୁଣାକାର, ପନିପରିବା ଓ ଫଳ ସମବାୟ, ଧାନସମବାୟ, ପାନସମବାୟ ଭଳି କିଣାବିକା କରିପାରୁଥିବା ସମବାୟ ପ୍ରାୟ ନାହିଁ କହିଲେ ଚଳେ । କେନ୍ଦ୍ର ଓ ରାଜ୍ୟ ସରକାରମାନେ ସମବାୟକୁ ସରକାରଙ୍କର ଅନ୍ୟ ଏକ ଜନହିତକାରୀ ଯୋଜନା ଭାବେ ବ୍ୟବହାର କରିଥାନ୍ତି । ୧୯୦୪ବେଳକୁ ଦେଶରେ ଉପନିବେଶ ଶାସନ ଜାରିଥାଏ । ସଭ୍ୟମାନଙ୍କ ହାତକୁ କ୍ଷମତା ଦେବାକଥା ସେତେବେଳର ସାମ୍ରାଜ୍ୟବାଦୀ ସରକାର ବିଚାର ବା କିପରି କରିବେ ? ସେକଥା କେବଳ କାଗଜ କଲମରେ ସୀମିତ ରୁହେ ।

ସ୍ୱାଧୀନତାପରେ ଷାଠିଏ ଦଶକ ପର୍ଯ୍ୟନ୍ତ ସମବାୟ ଆନ୍ଦୋଳନ କେତେକାଂଶରେ ଲୋକାଭିମୁଖୀ ହୋଇଥିଲା । ସେତେବେଳେ କିଛି ସ୍ୱଚ୍ଛ,ସାଧୁ, ଦେଶପ୍ରେମୀ ନେତୃସ୍ଥାନୀୟ ବ୍ୟକ୍ତି ଉତ୍ସର୍ଗୀକୃତ ଭାବେ ସମବାୟ ଅନ୍ଦୋଳନକୁ ଆଗେଇ ନେଇଥିଲେ । ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଗୁଜୁରାଟର ତ୍ରିଭୁବନଦାସ ପଟେଲ ଏବଂ ଭର୍ଗିଜ୍ କୁରିଆନଙ୍କ ଭଳି ବ୍ୟକ୍ତିମାନେ ୧୯୪୬ମସିହାରେ ଗୁଜୁରାଟର ଖେଡ଼ା ଜିଲ୍ଲାରେ ସଭ୍ୟମାନଙ୍କ ଦ୍ୱାରା ପରିଚାଳିତ ସଭ୍ୟମାନଙ୍କ ପାଇଁ ଏବଂ ସଭ୍ୟମାନଙ୍କର ଅଧିକାରରେ ଥିବା ପ୍ରକୃତ ସମବାୟ ଅମୁଲ ପ୍ରଥମେ ଭାରତରେ ସ୍ଥାପନ କରିଥିଲେ । ଏହା ଆଜି ଦେଶସାରା ଏପରିକି ସମଗ୍ର ବିଶ୍ୱରେ ଆନନ୍ଦପ୍ରଣାଳୀ ନାମରେ ପରିଚିତ । ପୃଥିବୀର ଆଙ୍ଗୁଠିଗଣା କେତୋଟି ସଫଳ ସମବାୟ ମଧ୍ୟରେ 'ଅମୁଲ' ଶୀର୍ଷସ୍ଥାନରେ ରହିବାର ଯୋଗ୍ୟତା ହାସଲ କରିଛି ।

୧୯୪୬ମସିହାରେ ଗୁଜୁରାଟର ଆନନ୍ଦରେ ପ୍ରତିଷ୍ଠିତ ଅମୁଲ ୧୯୪୮ ମସିହାରେ ଦିନକୁ ୫୦୦ ଲିଟର କ୍ଷୀର ସଂଗ୍ରହ କରିପାରୁଥିଲା । ଆଜି ଦିନରେ ଅମୁଲର ଦୈନିକ କ୍ଷୀର କାରବାର ୧.୫ନିୟୁତ ଲିଟର । ଅମୁଲ ଭଳି ଆଉ ୫ଟି ଜିଲ୍ଲାରେ ମଧ୍ୟ ଜିଲ୍ଲା ଦୁଗ୍ଧସଂଘ ଚାଷୀମାନେ ଗଠନ କରିଛନ୍ତି । ଗୁଜୁରାଟ ସମବାୟ ଦୁଗ୍ଧ ବିପଣନ ମହାସଂଘରେ ବର୍ତ୍ତମାନ ୨.୬ ନିୟୁତ କ୍ଷୀର ଚାଷୀ ସଭ୍ୟ ଏବଂ ଏହାର ଶାଖା ୧୩ହଜାର ଗ୍ରାମରେ ଅଛି । ଏହାର ବାର୍ଷିକ କାରବାର ୫୨୫୫କୋଟି । ଭର୍ଗିଜ କୁରିଏନ ୫୬ବର୍ଷ ଧରି

ଏହାର ଅଧ୍ୟକ୍ଷ ରହିଆସିଥିଲେ । ଏହି ସମବାୟର ସଫଳତାର ମୂଳମନ୍ତ୍ର ଏହା ଏପର୍ଯ୍ୟନ୍ତ ଅଣ-ବ୍ୟୁରୋକ୍ରାଟ ଓ ଅଣରାଜନୈତିକ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ ହୋଇଆସୁଛି । ବର୍ତ୍ତମାନ ଅମ୍ରିତା ପଟେଲ ଏହାର ମୁଖ୍ୟ ଭାବେ କାର୍ଯ୍ୟ ସମ୍ପାଦନା କରୁଛନ୍ତି । ତାଙ୍କର କାର୍ଯ୍ୟକାଳ ପୁରିଯିବ । ତାଙ୍କ ସ୍ଥାନରେ ଅଧ୍ୟକ୍ଷ ନିଯୁକ୍ତି ପାଇଁ ପ୍ରକ୍ରିୟା ଆରମ୍ଭହୋଇଛି । ଯାହା ଶୁଣାଯାଏ ଏହି ସଫଳ ସମବାୟରେ ପ୍ରଥମଥର ପାଇଁ ଜଣେ ରାଜନୈତିକ ବ୍ୟକ୍ତିଙ୍କୁ ନିଯୁକ୍ତି ମିଳିବ । ଭାରତୀୟ ଜନତା ପାର୍ଟି ଏହି ପବିତ୍ର ଅନୁଷ୍ଠାନକୁ ଦଖଲ କରିବା ପାଇଁ ସମସ୍ତପ୍ରକାର କୌଶଳ ଆରମ୍ଭ କରୁଛି । ଏହି ଅନୁଷ୍ଠାନର କାର୍ଯ୍ୟନିର୍ବାହୀ ଓ ଏଥିସହିତ ସମ୍ପୃକ୍ତ ଚାଷୀଙ୍କ ଆଶଙ୍କା, ଅଧ୍ୟକ୍ଷପଦରେ ରାଜନୈତିକ ବ୍ୟକ୍ତିକୁ ନିଯୁକ୍ତି ମିଳିଲେ ସଂସ୍ଥାର ଭାବମୂର୍ତ୍ତି କ୍ଷୁଣ୍ଣ ହେବା ସହ ଏହାର କାରବାର ମଧ୍ୟ ବାଧାପ୍ରାପ୍ତ ହେବ । ଏଥିରେ ହିନ୍ଦୁତ୍ୱ ପ୍ରବେଶ କରି ଭବିଷ୍ୟତରେ ଧାର୍ମିକ ଅଶାନ୍ତି ଘଟିବାକୁ ଏଡ଼ାଇ ଦିଆଯାଇନପାରେ । ଆମ ଦେଶର ସାମନ୍ତବାଦୀ ଶାସନ ବ୍ୟବସ୍ଥାରେ ସମବାୟ ସଂସ୍ଥାଗୁଡ଼ିକ ପ୍ରାୟତଃ ରାଜନୈତିକ ବ୍ୟକ୍ତିମାନଙ୍କର ଶୋଷଣର ଶିକାର ହେଉଛନ୍ତି । ଅମୁଲ ଭଳି ପବିତ୍ର ସମବାୟ ଅନୁଷ୍ଠାନକୁ ରାଜନୀତିକରଣ କରାଗଲେ ୨.୬ନିୟୁତ କ୍ଷୀରଚାଷୀ ପ୍ରଭାବିତ ହେବେ । (ସମାଜ-ନଭେମ୍ବର୮,୨୦୦୮-ଅମୁଲ-ରାଜନୀତି) । ରାଜନୀତି ପ୍ରବେଶ କଲା ଅର୍ଥ ଅବକ୍ଷୟ ଅବଶ୍ୟମ୍ଭାବୀ ।

ଲାଲବାହାଦୁର ଶାସ୍ତ୍ରୀ ପ୍ରଧାନମନ୍ତ୍ରୀ ଥିବାବେଳେ ୧୯୬୪ମସିହାରେ ଆନନ୍ଦ ପରିଦର୍ଶନରେ ଆସିଥିଲେ । ଆନନ୍ଦ ସମବାୟର ସଫଳତା ଦେଖି ସେ ସମୁଦାୟ ଦେଶରେ ଏହି ଢାଞ୍ଚାରେ ସମବାୟ ଗଠନ କରାଇ ଚାଷୀମାନଙ୍କୁ ସାହାଯ୍ୟ କରିବା ପାଇଁ ଭର୍ଗିଜ କୁରିଏନ୍‌ଙ୍କୁ ପରାମର୍ଶ ଦେଇଥିଲେ । ଜାତୀୟ ଦୁଗ୍ଧ ବିକାଶ ପରିଷଦ (National Dairy Development Board-NDDB) ଶାସ୍ତ୍ରୀ ଓ କୁରିଏନ୍‌ଙ୍କର ମାନସ ସନ୍ତାନ । ଆଜି ଭାରତରେ ୮୦,୦୦୦ ପ୍ରାଥମିକ ଦୁଗ୍ଧ ଉତ୍ପାଦନକାରୀ ସମବାୟ ସମିତିରେ ୧୨ନିୟୁତ ସଭ୍ୟ ପ୍ରତିଦିନ କ୍ଷୀର ଯୋଗାଇଥାନ୍ତି । ଆମେରିକାକୁ ପଛରେ ପକାଇ ଭାରତ ବର୍ତ୍ତମାନ ଦୁଗ୍ଧ ଉତ୍ପାଦନରେ ପୃଥିବୀରେ ପ୍ରଥମ ସ୍ଥାନ ଅଧିକାର କରିଛି । ଭାରତସାରା ଏହି ସମବାୟଗୁଡ଼ିକ ଅମୁଲ ଢାଞ୍ଚାରେ ଗଠିତ ଏବଂ ଚାଷୀମାନେ ଏଗୁଡ଼ିକୁ ପରିଚାଳନା କରନ୍ତି ।

ମହାରାଷ୍ଟ୍ରର ଚିନି ସମବାୟ, ଗୋ-ରସ ଭଣ୍ଡାର ଦୁଗ୍ଧ ସମବାୟ, ୱାର୍ଦ୍ଧା (ମହାରାଷ୍ଟ୍ର), ଅପ୍ନା ବଜାର, ମୁମ୍ବାଇର ଖାଉଟୀ ସମବାୟ,ମଧ୍ୟପ୍ରଦେଶରୁ ବାସଚ୍ୟୁତ ଆଦିବାସୀମାନଙ୍କର

ମତ୍ସ୍ୟ ସମବାୟ, କେରଳର ନିର୍ମାଣ ଶ୍ରମିକମାନଙ୍କର ସମବାୟ ଭଳି ଅଳ୍ପ କେତେକ ସଫଳ ସମବାୟ କାର୍ଯ୍ୟକରନ୍ତି, ଯେଉଁମାନେ କି ସମ୍ପୂର୍ଣ୍ଣ ଭାବେ ସଭ୍ୟକୈନ୍ଦ୍ରୀକ,ଏଗୁଡ଼ିକ ସ୍ୱୟଂ ସହାୟକ ସମବାୟ। (ଚୌଧୁରୀ, ୨୦୦୫କ, ୨୦୦୫ଖ ଏବଂ ୨୦୦୫ଗ)ଏଗୁଡ଼ିକ ପ୍ରକୃତ ସମବାୟ, ସମବାୟ ଦର୍ଶନ, ନୀତି ଓ ଆଦର୍ଶ ଅକ୍ଷରେ ଅକ୍ଷରେ ପାଳନ କରିଥାନ୍ତି। ସରକାର ବା ଘରୋଇ ସଂସ୍ଥାମାନଙ୍କର ଏହିସବୁ ସମବାୟ ସଂସ୍ଥାରେ ସାମାନ୍ୟତମ କର୍ତ୍ତୃତ୍ୱ ନାହିଁ। ଚାଷୀ, ମୂଲିଆ, ବେକାର ଯୁବକମାନଙ୍କୁ ଦୀର୍ଘମିଆଦି ଆତ୍ମନିଯୁକ୍ତି ଦେଇ ଉଦାରୀକରଣ ଅର୍ଥନୀତିର ଗରିବୀକରଣ ପ୍ରକ୍ରିୟା ପାଇଁ ଏଗୁଡ଼ିକ ସଫଳ ବିକଳ୍ପ ପ୍ରମାଣିତ ହୋଇଛନ୍ତି।

୨୦୦୨-୨୦୦୩ମସିହାର ଆକଳନ ଅନୁସାରେ ଭାରତରେ ୫ଲକ୍ଷ ୫୦ହଜାର ପ୍ରାଥମିକ ସମବାୟ ଅଛି। ଏଗୁଡ଼ିକର ସଭ୍ୟସଂଖ୍ୟା ୨୨କୋଟି ୯୫ଲକ୍ଷ ୧ହଜାର। (NCUI, 2004)। ମାତ୍ର ସଭ୍ୟମାନଙ୍କ ବିଚାରରେ ଏହି ସମବାୟ ସଂସ୍ଥାଗୁଡ଼ିକ ସରକାରଙ୍କର ବା କେତେକ ପ୍ରତିପତ୍ତିଶାଳୀ ସାଆନ୍ତଙ୍କର। ଜାତୀୟ କୃଷି ଏବଂ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ୍ (NABARD) ଏବଂ ଜାତୀୟକରଣ ବ୍ୟାଙ୍କ୍ ମାନେ ସମବାୟ ସଂସ୍ଥାକୁ କ୍ରିୟାଶୀଳ କରିବା ପାଇଁ ପର୍ଯ୍ୟାପ୍ତ ଋଣ ରାଜ୍ୟ ସମବାୟ ବ୍ୟାଙ୍କ୍ ଓ ଜିଲ୍ଲା କେନ୍ଦ୍ରୀୟ ସମବାୟ ବ୍ୟାଙ୍କ୍‌ମାନଙ୍କୁ ଦେଇଥାନ୍ତି। କେନ୍ଦ୍ର ଓ ରାଜ୍ୟସରକାର ସାମୟିକ ଆର୍ଥିକ ସହାୟତା ଓ ସବ୍‌ସିଡ଼ି ମଧ୍ୟ ଦିଅନ୍ତି। ଫଳତଃ ସରକାର,ପ୍ରଶାସନିକ ଅଧିକାରୀ ଓ ରାଜନୈତିକ ବଡ଼ପଣ୍ଡାମାନେ ସମବାୟ ସଂସ୍ଥାଗୁଡ଼ିକ ଉପରେ ପ୍ରଭୁତ୍ୱ ବିସ୍ତାର କରିଥାନ୍ତି। ଋଣ କେଉଁମାନେ ନିଅନ୍ତି ? ଭାରତ କ୍ଷୁଦ୍ରଚାଷୀ, ନାମମାତ୍ର ଚାଷୀ ଓ ଭାଗଚାଷୀ ମାନଙ୍କର ଦେଶ। ମାତ୍ର ସମବାୟ ଋଣର ୭୦ଭାଗ ବଡ଼ଚାଷୀ, ଭୂମିମାଲିକ ଓ ରାଜନେତାମାନେ ନିଜକୁ ଚାଷୀବୋଲି ଦର୍ଶାଇ ହଡ଼ପ କରନ୍ତି। ପ୍ରାଥମିକ ସମବାୟର ସମ୍ପାଦକ ଓ କେନ୍ଦ୍ରୀୟ ବ୍ୟାଙ୍କ୍‌ରେ ସରକାରଙ୍କ ଦ୍ୱାରା ନିଯୁକ୍ତ ପରିଚାଳନା ନିର୍ଦ୍ଦେଶକମାନେ ଏହି ଶ୍ରେଣୀର ଋଣୀମାନଙ୍କୁ ବିଭାଗୀୟ ମନ୍ତ୍ରୀ, ବିଧାୟକ ଓ ରାଜନୈତିକ ମାଫିଆମାନଙ୍କ ପରାମର୍ଶରେ ଋଣ ଦେଇଥାନ୍ତି। ସମବାୟର ମୁଖ୍ୟ ଲକ୍ଷ୍ୟ ଦେଶରେ କୃଷିର ଉନ୍ନତି ହେବ, ଉତ୍ପାଦନ ବୃଦ୍ଧି ହେବ। ଗରିବମାନେ ଉପରକୁ ଉଠିବେ। ସମବାୟ ଏହି ଲକ୍ଷ୍ୟରେ ବ୍ୟର୍ଥ ପ୍ରମାଣିତ ହୋଇଛି। ଉପରୋକ୍ତ ଶ୍ରେଣୀର ଋଣୀମାନେ ସମବାୟ ଋଣକୁ କୃଷିକ୍ଷେତ୍ରରେ ବ୍ୟବହାର କରନ୍ତି ନାହିଁ। ସେମାନେ ମୋଟେ ଚାଷୀ ନୁହନ୍ତି। ଋଣଟଙ୍କା ନିଜର ଘରତୋଳିବା, କାର୍‌କିଣିବା, ଠିକାଦାରୀ କରିବା, କଳକାରଖାନା ବସାଇବା ଭଳି କାମରେ ଲଗାଇଥାନ୍ତି। କ୍ଷୁଦ୍ରଚାଷୀ,

ଭାଗଚାଷୀ ସମବାୟ ସମ୍ପାଦକଙ୍କୁ ପୂଜାଅର୍ଚ୍ଚନା କରି ବେଳେବେଳେ ମାମୁଲି ୨ହଜାର ଠାରୁ ୫ହଜାର ଟଙ୍କା ପର୍ଯ୍ୟନ୍ତ ପାଇଥାନ୍ତି। ଏମାନଙ୍କ ସଂଖ୍ୟା ଚାଷୀସଂଖ୍ୟାର ୭୫ ଭାଗ ହୋଇଥିଲେ ମଧ ଏମାନଙ୍କ ମଧ୍ୟରୁ ଋଣ ପାଉଥିବା ଚାଷୀସଂଖ୍ୟାର ୫ପ୍ରତିଶତ ହେବ। ସମବାୟ ସମିତିର ସମ୍ପାଦକ ଓ ବୋର୍ଡ଼ମେମ୍ବରଙ୍କୁ ପାଉଣା ନଦେଇ ପାରିଲେ ସମିତିରୁ ଋଣ ପାଇବାକୁ ସମସ୍ତ ଯୋଗ୍ୟତା ଥିଲେମଧ ଋଣ ନପାଇ ଏମାନଙ୍କୁ ଆତ୍ମହତ୍ୟା କରିବାକୁ ପଡ଼ିଥାଏ। ଏହି ଶ୍ରେଣୀର ସଭ୍ୟମାନେ ଦେଶର ମୋଟ ସମବାୟ ଋଣର ୭ ପ୍ରତିଶତ ମାତ୍ର ପାଇଥାନ୍ତି।

ଭୁବନେଶ୍ୱରଠାରୁ ମାତ୍ର ୧୫କିଲୋମିଟର ଦୂର ଟିକିପଡ଼ା ଗାଁ। ଚାଷୀ କାଶୀନାଥ ଭୂୟାଁ ନିଶ୍ଚିତପୁର ସେବା ସମବାୟ ସମିତିରୁ ଋଣ କରି ପୋଟଳ ଚାଷ ପାଇଁ ସାହୁକାରଠାରୁ ଆଣିଥିବା ଋଣ ଶୁଝିବ ଏବଂ ବାକି ଟଙ୍କା ଚାଷରେ ଲଗାଇବ। ଋଣ ପାଇଁ ସମିତିକୁ ୮ମାସ ଦୌଡ଼ିଲା। ବାଲିପାଟଣା ସମବାୟ ବ୍ୟାଙ୍କ୍‌ରେ କାଗଜପତ୍ର କଲା। ୨୦,୦୦୦ଟଙ୍କା ଋଣ ପାଇଁ ସମିତି ସମ୍ପାଦକ ୨ହଜାର ଟଙ୍କା ପାଉଣା ମାଗିଲେ। ପାଉଣା ଦେଇପାରିଲା ନାହିଁ। ସମ୍ପାଦକ ଋଣ ନଦେଇ କାଶୀନାଥକୁ ଫେରାଇଦେଲେ। ସେଦିନ ଏପ୍ରିଲ ୨୨,୨୦୦୮। ହତାଶ ହୋଇ ସମ୍ପାଦକଙ୍କ ଘରୁ ଫେରି 'ଟାରଜନ୍'କୀଟନାଶକ ପିଇ ବାଇଗଣ କିଆରିରେ ସବୁଦିନ ପାଇଁ ଶୋଇପଡ଼ିଲା। ଗଣମାଧ୍ୟମ, ଇଲୋକ୍ଟ୍ରୋନିକ ମିଡ଼ିଆ ଏବଂ ବହୁ ସମାଜକର୍ମୀ କାଶୀନାଥ ଆତ୍ମହତ୍ୟା କଥା ସରକାରଙ୍କ ଦୃଷ୍ଟିକୁ ଆଣିଲେ। କାଶୀନାଥର ପରିବାର ନ୍ୟାୟରୁ ବଞ୍ଚିତ ହେଲେ। କିପରି ନ୍ୟାୟ ପାଇଥାନ୍ତେ? ସମ୍ପାଦକଙ୍କ ସ୍ତ୍ରୀ କ୍ଷମତାସୀନ ସରକାରଙ୍କ ମନୋନୀତ ସରପଞ୍ଚ। ବିଧାୟକ, ପ୍ରଶାସନ ସମସ୍ତେ ତାଙ୍କୁ ଘଣ୍ଟ ଘୋଡ଼ାଇଲେ। ବିଚରା କାଶୀନାଥ ବିସ୍ମୃତି ଗର୍ଭରେ ଲୀନ ହୋଇଗଲା। ଓଡ଼ିଶାରେ ଋଣ ସୁଝିନପାରି ବା ଋଣ ନପାଇ କୃଷକ ଆତ୍ମହତ୍ୟା ୨୦୦୧ଠାରୁ ୨୦୦୬ ମଧ୍ୟରେ ୨୪୧୯। (ଉତ୍ସ-ଏନ୍‌ସିଆରଡ଼ି, ସ୍ୱରାଷ୍ଟ୍ର ମନ୍ତ୍ରାଳୟ, ନୂଆଦିଲ୍ଲୀ, ସମାଜ-ନଭେମ୍ବର ୯, ୨୦୦୮)। ଭାରତବର୍ଷରେ କୃଷକଆତ୍ମହତ୍ୟା ସଂଖ୍ୟା ୨୦୦୧-୨୦୦୬ମଧ୍ୟରେ ଏକଲକ୍ଷରୁ ଅଧିକ। କେତେକ ସ୍ଥଳରେ ସମବାୟ ଋଣ ସୁଝିନପାରି ଏବଂ ୮୦ପ୍ରତିଶତ ଚାଷୀ ମହାଜନଋଣ ସୁଝିନପାରି ଆତ୍ମହତ୍ୟା କରୁଛନ୍ତି। ଭାରତବର୍ଷରେ ସମବାୟ ଆନ୍ଦୋଳନର ଏହା ହିଁ ସଫଳତା!

ରାଜନୈତିକ ବଡ଼ପଣ୍ଡା ଓ ଅମଲାତନ୍ତ୍ର ଦ୍ୱାରା ସାରାଦେଶରେ ସମବାୟ ସଂସ୍ଥାର ସ୍ଥିତି ବିପନ୍ନ। ରୁଗ୍ଣ ସମବାୟମାନଙ୍କୁ କାର୍ଯ୍ୟକ୍ଷମ କରିବା ପାଇଁ ଥିରୁବନନ୍ତପୁରମ୍‌ଠାରେ କାର୍ଯ୍ୟ କରୁଥିବା ସେଣ୍ଟର ଫର୍ ଡେଭଲପ୍‌ମେଣ୍ଟ୍ ଷ୍ଟଡିଜ୍‌ର ଅବୈତନିକ ଫେଲୋ ଏବଂ

ବିଶିଷ୍ଟ ଅର୍ଥନୀତିଜ୍ଞ ଏ.ବୈଦ୍ୟନାଥଙ୍କ ନେତୃତ୍ୱରେ ଗୋଟିଏ କମିଟି ଭାରତ ସରକାର ଗଠନ କରିଥିଲେ। ବୈଦ୍ୟନାଥ କମିଟି ସମବାୟ ସଂସ୍ଥାମାନଙ୍କର ପୁନରୁଦ୍ଧାର ପାଇଁ ଯେଉଁସବୁ ପରାମର୍ଶ ସରକାରଙ୍କୁ ଦେଇଥିଲେ, ତାହାର ମୁଖ୍ୟ ପ୍ରସଙ୍ଗ ଥିଲା ସମବାୟ ସଂସ୍ଥାମାନଙ୍କୁ ସଭ୍ୟକୈନ୍ଦ୍ରିକ କରିବା, ସମବାୟ ସଂସ୍ଥାରେ ସରକାରଙ୍କର ହସ୍ତକ୍ଷେପ ଲୋପ କରିବା ଏବଂ ସମବାୟର ପରିଚାଳନା ସଭ୍ୟମାନଙ୍କ ଦ୍ୱାରା ହିଁ କରିବା। ଏଥିସହିତ ରିଭାଇଭାଲ୍ ପ୍ୟାକେଜ୍ ଭାବେ ମୋଟାଅଙ୍କର ଏକକାଳୀନ ସାହାଯ୍ୟ ଦେବା। ଏହି ସବୁ ପରାମର୍ଶର ଶେଷକଥାଟି ଭାରତ ସରକାର ତତ୍‌କ୍ଷଣାତ୍ କାର୍ଯ୍ୟକାରୀ କରିଦେଲେ। କେତେହଜାର କୋଟି ଟଙ୍କା ପୁନରୁଦ୍ଧାର ପାଇଁ ରାଜ୍ୟମାନଙ୍କୁ ମଞ୍ଜୁର କଲେ। ଅନ୍ୟରାଜ୍ୟର ଖବର ଆମପାଖେ ନାହିଁ। ମାତ୍ର ଆମ ରାଜ୍ୟସରକାରଙ୍କ ସମବାୟ ବିଭାଗ ଏହି ଯୋଜନାର କୋଟି କୋଟି ଟଙ୍କା ମଧ୍ୟ ଏଥିମଧ୍ୟରେ ବରବାଦ କରିଦେଇଛନ୍ତି।

ଚାଷୀମାନଙ୍କୁ ଋଣଛାଡ଼ ଯୋଜନାରେ ଭାରତ ସରକାର ୭୧ ହଜାର କୋଟି ଟଙ୍କା ମଞ୍ଜୁର କଲେ। ଲୁଚିଚି ନା ଗୋଡ଼ ଦିଟା ଦିଶୁଛି। ସଚେତନ ନାଗରିକମାନେ ଜାଣିଲେ ଆସନ୍ତା ସାଧାରଣ ନିର୍ବାଚନକୁ ଆଖିରେରଖି ସରକାର ଋଣଛାଡ଼ କଲେ। ମାତ୍ର ଏହି ଋଣମାଫି କେଉଁମାନେ ପାଇଲେ ? ବଡ଼ ବଡ଼ ଜମିମାଲିକ, ଜାଲିଆତି ଜମି କାଗଜପତ୍ର ଦେଖାଇ ବ୍ୟାଙ୍କ୍ ବା ସମବାୟରୁ ଋଣ ନେଇଥିବା ଡନ୍‌ମାନେ ଋଣମାଫିର ସୁଫଳ ପାଇଲେ। ସମବାୟ ଋଣକ୍ଷେତ୍ରରେ ସେବା ସମବାୟ ସମିତି ସମ୍ପାଦକଙ୍କ ଠାରୁ ଆରମ୍ଭ କରି କେନ୍ଦ୍ର ସମବାୟର କର୍ମକର୍ତ୍ତା ଓ ବୋର୍ଡ଼ମେମ୍ବରମାନେ ଏହି ଛାଡ଼ର କାଗଜପତ୍ର ଠିକ୍ କରିବା ପାଇଁ ମାଫିରକମର ୧୦ରୁ ୨୦ପ୍ରତିଶତ ପର୍ଯ୍ୟନ୍ତ ଲାଞ୍ଚ ଆଦାୟ କରିଛନ୍ତି। ଓଡ଼ିଶା ଏହି ଦୁର୍ନୀତିର ଆଗଧାଡ଼ିରେ ଅଛି। ବର୍ତ୍ତମାନ ସମବାୟ ସଂସ୍ଥା ବା ବ୍ୟାଙ୍କ୍‌ମାନେ ଆଉ ଚାଷୀକୁ କୃଷିଋଣ ଦେଉନାହାନ୍ତି। ସମସ୍ତ ପ୍ରକ୍ରିୟାରେ ଛୋଟ ଚାଷୀଟି ଦଣ୍ଡପାଉଛି। ମୁନାଫାଖୋରମାନେ ସମବାୟକୁ ଲୁଣ୍ଠନ କରି ଚାଲିଛନ୍ତି।

ବୈଦ୍ୟନାଥନ୍ କମିଟି ସମବାୟ ସଂସ୍ଥାକୁ ସଭ୍ୟକୈନ୍ଦ୍ରୀକ କରିବା ପାଇଁ ପରାମର୍ଶ ଦେଉଥିଲା ବେଳେ ଆମ ସରକାରଙ୍କ ମତ୍ସ୍ୟ ଓ ପଶୁସମ୍ପଦ ବିକାଶ ମନ୍ତ୍ରୀ ଓମ୍‌ଫେଡ଼ ଭଳି ତ୍ରିସ୍ତରୀୟ ସମବାୟ ସଂସ୍ଥାକୁ ସରକାରୀସଂସ୍ଥା ବୋଲି କହି ଏହାକୁ ଦରକାର ମନେ କଲେ ଘରୋଇ କମ୍ପାନୀକୁ ବିକ୍ରି କରିଦେବାର ଧମକ କ୍ଷୀରଚାଷୀମାନଙ୍କୁ ଦେଇଛନ୍ତି। (ସମ୍ବାଦ - ତା.୨୪.୧୧.୨୦୦୮)। ଚାଷୀମାନଙ୍କର ଅପରାଧ ସେମାନେ କ୍ଷୀରର କ୍ରୟମୂଲ୍ୟ

ବୃଦ୍ଧିପାଇଁ ଦାବୀ କରୁଛନ୍ତି। ୨୦୦୧ମସିହାରୁ ଜିଲ୍ଲା ଦୁଗ୍ଧ ସଂଘ ବା ଓମ୍‌ଫେଡ଼ର ନିର୍ବାଚନ ହୋଇନାହିଁ। ସଭ୍ୟମାନଙ୍କର ପରିଚାଳନାରେ ଭାଗିଦାରୀ ନାହିଁ। ସେମାନେ ତୁରନ୍ତ ତ୍ରି-ସ୍ତରୀୟ ନିର୍ବାଚନ ଦାବୀ କରୁଛନ୍ତି। ଓଡ଼ିଶାରେ ସମବାୟର ଏହା ହିଁ ଚରିତ୍ର। ୧୯୮୦ମସିହାରୁ ପ୍ରତିଷ୍ଠିତ ଓମ୍‌ଫେଡ୍ ଜାତୀୟ ଦୁଗ୍ଧ ଉନ୍ନୟନ ପରିଷଦ (NDDB)ର ଆର୍ଥିକ ଓ ବୈଷୟିକ ଜ୍ଞାନ ସହାୟତାରେ କାର୍ଯ୍ୟ ଆରମ୍ଭ କରିଥିଲା। ଆନନ୍ଦ ଢାଞ୍ଚାରେ ତ୍ରିସ୍ତରୀୟ ସମବାୟ ଏହାର ଭିତ୍ତିଭୂମି ଥିଲା। ଓଡ଼ିଶା ସରକାର କାହିଁକି ସଭ୍ୟମାନଙ୍କୁ ସେମାନଙ୍କର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରି ଏହି ସଂସ୍ଥାକୁ ନିଜ ଦଖଲକୁ ନେଇଛନ୍ତି, ଚାଷୀମାନେ ବର୍ତ୍ତମାନ ସରକାରଙ୍କଠାରୁ ଉତ୍ତର ଦାବୀ କରନ୍ତି।

ସମବାୟ ସଂସ୍ଥାଗୁଡ଼ିକୁ ସରକାରଙ୍କ ନିୟନ୍ତ୍ରଣରୁ ମୁକ୍ତ କରି କ୍ଷୁଦ୍ରଚାଷୀ, ଶ୍ରମିକ ଓ ସମାଜର ଅନ୍ୟାନ୍ୟ ଦୁର୍ବଳଶ୍ରେଣୀ ଲୋକମାନଙ୍କ ପାଇଁ ଅଧିକ ଫଳପ୍ରଦ କରିବା ପାଇଁ ଆମଦେଶରେ ଉଦ୍ୟମ ଜାରିଅଛି। ସରକାରୀ ସମବାୟ ବ୍ୟବସ୍ଥା ଥାଇ ମଧ୍ୟ ସମାନ୍ତରାଳ ଭାବେ ଲୋକାଭିମୁଖୀ ସମବାୟ ଗଠନ କରିବା ପାଇଁ ଭର୍ଗିଜ୍ କୁରିଏନ୍‌ଙ୍କ ଅଧକ୍ଷତାରେ କୋ-ଅପରେଟିଭ ଇନିସିଏଟିଭ ପ୍ୟାନେଲ (Co-operative Initiative Panel) ଗୁଜୁରାଟର ଆନନ୍ଦରେ କାମ କରୁଅଛି। ୧୯୯୫ମସିହାରେ ଆନ୍ଧ୍ରପ୍ରଦେଶ ସରକାର ମ୍ୟୁଚୁଆଲି ଏଡ଼େଡ଼୍ କୋଅପରେଟିଭ ସୋସାଇଟି ଆକ୍ଟ ପ୍ରଣୟନ କରିଛନ୍ତି। ଏହି ଆଇନବଳରେ ଆନ୍ଧ୍ର ପ୍ରଦେଶରେ ଅଧିକାଂଶ ମହିଳା ସ୍ୱୟଂସହାୟକ ଗୋଷ୍ଠୀ, କୃଷକ ଗୋଷ୍ଠୀ, ସମବାୟ ଗଠନ କରି ସଫଳତାର ସହିତ ସଭ୍ୟମାନଙ୍କର ଅର୍ଥନୈତିକ ଅଭିବୃଦ୍ଧି କରିବାକୁ ସମର୍ଥ ହୋଇଛନ୍ତି। ଛତିଶଗଡ଼, ଝାଡ଼ଖଣ୍ଡ, କେରଳ, କର୍ଣ୍ଣାଟକ, ମଧ୍ୟପ୍ରଦେଶ, ବିହାର, ଜାମ୍ମୁ କାଶ୍ମୀରରେ ସମାନ୍ତରାଳ ସମବାୟଆଇନ ପ୍ରଣୟନ ହୋଇଗଲାଣି। ଓଡ଼ିଶା ସ୍ୱୟଂ ସହାୟକ ସମବାୟ ଆଇନ କେତେକ ପ୍ରତିଷ୍ଠିତ କୋ-ଅପରେଟରଙ୍କ ନିରବଚ୍ଛିନ୍ନ ଚେଷ୍ଟାରେ ୨୦୦୧ମସିହାରେ ବିଧାନସଭାରେ ଗୃହୀତ ହୋଇ ଜୁନ୍୨୦୦୨ଠାରୁ କାର୍ଯ୍ୟକାରୀ ହେଲାଣି। ଖୁବ୍ ଶୀଘ୍ର ଭାରତର ସମସ୍ତରାଜ୍ୟରେ ସମାନ୍ତରାଳ ସ୍ୱୟଂ ସହାୟକ ସମବାୟ ଆଇନ ପ୍ରଣୟନ ହୋଇଯିବାର ସମ୍ଭାବନା ଉଜ୍ଜ୍ୱଳ ହେଉଛି। ବୈଦ୍ୟନାଥନ୍ କମିଟିର ସୁପାରିଶ ମଧ୍ୟ ସମାନ୍ତରାଳ ସମବାୟ ଗଠନ ପାଇଁ ପରାମର୍ଶ ଦେଇଛି।

ଆନ୍ତର୍ଜାତିକ ଶ୍ରମ ସଙ୍ଗଠନ (International Labour Organisation) ୨୦୦୨ମସିହାରେ ସମବାୟ ସଂସ୍ଥାର ନୂତନ ଛବିର ଯେଉଁ ସୁପାରିଶ କରିଛନ୍ତି ତାହା ଏହିପରି -

■ *ଆଉ କେତେ ବିଷ ପିଇଲେ ଚେତିବା... !*

'କେତେକ ବ୍ୟକ୍ତି ସ୍ୱେଚ୍ଛାକୃତଭାବେ ସେମାନଙ୍କର ସାଧାରଣ ଅର୍ଥନୈତିକ ଅଭିବୃଦ୍ଧି ପାଇଁ ଏକତ୍ରିତ ହୋଇ ଗଠନ କରିଥିବା ଅନୁଷ୍ଠାନକୁ ସମବାୟ ବୁଝାଯିବ। ଏଥିସହିତ ସାମାଜିକ, ସାଂସ୍କୃତିକ ଏବଂ ସଭ୍ୟମାନଙ୍କ ଦ୍ୱାରା ସ୍ଥିରୀକୃତ ଅନ୍ୟାନ୍ୟ ଅଭିଳାଷ ଏହି ଅନୁଷ୍ଠାନ ଦ୍ୱାରା କାର୍ଯ୍ୟକାରୀ ହୋଇପାରିବ। ଏହି ଅନୁଷ୍ଠାନ ମିଳିତଭାବେ ସଭ୍ୟମାନଙ୍କର ସମ୍ପତ୍ତି ଏବଂ ଏହା ଗଣତାନ୍ତ୍ରିକ ପଦ୍ଧତିରେ ପରିଚାଳିତ ହେଉଥିବ।'

ଓଡ଼ିଶା ସ୍ୱୟଂସହାୟକ ସମବାୟ ଆଇନ-୨୦୦୧ର ବିଧିବିଧାନରେ ଉପରୋକ୍ତ ଦର୍ଶନ ବହୁପୂର୍ବରୁ ନିର୍ଦ୍ଧାରିତ ହୋଇଅଛି। ୨୦୦୧ ଆଇନର କେତେକ ବିଧାନ ଏଠାରେ ଉଲ୍ଲେଖ କରାଗଲା।

୧- ଓଡ଼ିଶା ସମବାୟ ଆଇନ-୧୯୬୨ରେ ସମବାୟ ପଞ୍ଜିକରଣ ପାଇଁ ସର୍ବନିମ୍ନ ୫୧ଜଣ ସଭ୍ୟଙ୍କ ଆବଶ୍ୟକତା ଥିଲାବେଳେ ନୂତନ ଆଇନରେ ୧୦ଜଣ ସଭ୍ୟ ଗୋଟିଏ ସ୍ୱୟଂ ସହାୟକ ସମବାୟ ଗଠନ କରିପାରିବେ।

୨- ସମବାୟ ଗଠନ ପାଇଁ ନେତୃତ୍ୱ ନେଉଥିବା ବ୍ୟକ୍ତି ବା ବ୍ୟକ୍ତିମାନେ ସମବାୟ ନୀତି ଓ ଦର୍ଶନକୁ ପାଳନ କରିବା ପାଇଁ ଅଙ୍ଗୀକାରବଦ୍ଧ ହେଉଥିବେ।

୩- ରାଜ୍ୟ ସରକାରଙ୍କ କୋ-ଅପରେଟିଭ ରେଜିଷ୍ଟ୍ରାର ପ୍ରସ୍ତାବିତ ସମବାୟର ମେମୋରେଣ୍ଡମ ଅଫ୍ ଆସୋସିଏସନ ପାଇବାର ୬୦ଦିନ ଭିତରେ ଏହି ସମବାୟକୁ ପଞ୍ଜିକୃତ କରିବେ। ଯଦି କୌଣସି ତ୍ରୁଟି ଥାଏ ସମବାୟକୁ ଜଣାଇ ସଂଶୋଧନ ପ୍ରସ୍ତାବ ଗ୍ରହଣ କରିବେ। ମୂଳଚିଠି ପାଇବାର ୭୦ଦିନ ମଧ୍ୟରେ ରେଜିଷ୍ଟ୍ରାର ସମବାୟକୁ ପଞ୍ଜିକୃତ ଘୋଷଣା ନକଲେ ନୂତନ ସମବାୟଟି ଆପେ ଆପେ ପଞ୍ଜିକୃତ ବୋଲି ବିବେଚିତ ହେବ। ଏହି ସମବାୟ ୨୦୦୧ ସମବାୟ ଆଇନ ଅନୁଯାୟୀ କାର୍ଯ୍ୟକ୍ଷମ ହେବ।

୪- ଏହି ସମବାୟଉପରେ ସରକାରଙ୍କର କୌଣସି ନିୟନ୍ତ୍ରଣ ରହିବ ନାହିଁ। ଏପରିକି ସରକାରଙ୍କ ଅଡିଟ୍ ବ୍ୟବସ୍ଥା ଏହି ନୂତନ ସମବାୟ ପାଇଁ ପ୍ରଯୁଜ୍ୟ ନୁହେଁ। ସମବାୟ ନିଜ ମନୋନୀତ ବ୍ୟକ୍ତି ବା ଚାର୍ଟାର୍ଡ଼ ଆକାଉଣ୍ଟାଣ୍ଟଙ୍କ ଦ୍ୱାରା ସମବାୟର ହିସାବ ଯାଞ୍ଚ କରାଇବେ।

୫- ପ୍ରତ୍ୟେକ ସଭ୍ୟ ନିଶ୍ଚିତଭାବେ ସମବାୟର ସେବାଗ୍ରହଣ କରୁଥିବେ। ଅନ୍ୟଥା ସେଭଳି ସଭ୍ୟ ସମବାୟର ବାର୍ଷିକ ନିର୍ବାଚନରେ ନିଜେ ପ୍ରାର୍ଥୀ ହୋଇପାରିବେ ନାହିଁ।

ଭୋଟଦାନ ଅଧିକାରରୁ ମଧ ବଞ୍ଚିତ ହେବେ। ସମବାୟର ବାର୍ଷିକ ଲାଭାଂଶ ବିତରଣରେ ଏହି ଶ୍ରେଣୀର ସଭ୍ୟମାନେ ଭାଗ ପାଇବେ ନାହିଁ।

ସ୍ୱୟଂ ସହାୟକ ସମବାୟର ପରିସୀମା ବ୍ୟାପକ। ପନିପରିବା ସମବାୟ,ଧାନ ସମବାୟ,ବିହନ ସମବାୟ, ମତ୍ସ୍ୟଚାଷୀ ସମବାୟ, ଖାଦ୍ୟ ପ୍ରକ୍ରିୟାକରଣ ସମବାୟ, ଜୈବିକକୃଷି ସମବାୟ,କେନ୍ଦୁପତ୍ର ସମବାୟ, ଋଣ ସମବାୟ,ବୁଣାକାର ସମବାୟ ଭଳି ଆତ୍ମନିଯୁକ୍ତିଭିତ୍ତିକ ସମବାୟମାନ ଗଠନକରି ଅର୍ଥନୈତିକ ଦୁର୍ବଳଶ୍ରେଣୀ ଲୋକମାନେ ଉପକୃତ ହୋଇପାରିବେ। ଆନ୍ଧ୍ରରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକ ଏହିପରି ସମାନ୍ତରାଳ ସମବାୟମାନ ଗଠନ କରି ସେମାନଙ୍କର ଅର୍ଥନୈତିକ ଅଭିବୃଦ୍ଧି ସମ୍ଭବ କରିପାରିଛନ୍ତି। ନେତୃତ୍ୱ ଏହି ଶ୍ରେଣୀର ସମବାୟ ପାଇଁ ଚାବିକାଠି।

ଜଗତୀକରଣ, ଘରୋଇକରଣ ଓ ମୁକ୍ତ ଅର୍ଥନୀତି ଫଳତଃ ଆଜି ପୃଥିବୀସାରା ଅର୍ଥନୈତିକ ବିପର୍ଯ୍ୟୟ/ଗ୍ରାମାଞ୍ଚଳର ସହରୀକରଣ ଏବଂ କୃଷି ଅର୍ଥନୀତିକୁ ପ୍ରଭାବିତ କରି କମ୍ପାନୀମାନଙ୍କ କୃଷି ଓ କୃଷିଉପରେ ଆଧାରିତ କ୍ଷୁଦ୍ରଶିଳ୍ପ ହସ୍ତାନ୍ତର କରି ଶିଳ୍ପ କ୍ଷେତ୍ରରେ ନିଯୁକ୍ତି ସୃଷ୍ଟିକରିବା ଆମ ସରକାରଙ୍କ ଲକ୍ଷ୍ୟ। ନିକଟରେ କୃଷିକୁ ଧ୍ୱଂସ କରୁଥିବା ସବୁଜ ବିପ୍ଳବର ଜନକ ବୋଲାଉଥିବା ସ୍ୱାମୀନାଥନ୍ ହାଇଦ୍ରାବାଦରେ ଯୁକ୍ତି ବାଢ଼ିଛନ୍ତି କୃଷିକ୍ଷେତ୍ରରେ ୬୦/୭୦ପ୍ରତିଶତ ଲୋକଙ୍କର ଆବଶ୍ୟକତା ନାହିଁ। ୩୦ ପ୍ରତିଶତ ଲୋକ କୃଷିରେ ରହି ୭୦ପ୍ରତିଶତ କଳକାରଖାନାରେ ନିଯୁକ୍ତି ପାଇବେ। ପୂର୍ବତନ ଅର୍ଥମନ୍ତ୍ରୀ ପି.ଚିଦାମ୍ବରମ ନିକଟରେ ଦେଇଥିବା ଏକ ସାକ୍ଷାତକାରରେ ଦୃଢ଼ଦାବୀ କରିଛନ୍ତି କି ଜଗତୀକରଣ ହିଁ ଅର୍ଥନୈତିକ ଅଭିବୃଦ୍ଧିର ଶ୍ରେଷ୍ଠଉପାୟ ଏବଂ ସରକାର ଚାହାଁନ୍ତି ଦେଶର ୮୫ପ୍ରତିଶତ ଲୋକ ସହରରେ ବାସକରନ୍ତୁ।(ତେହେଲକା-ଅଗଷ୍ଟ ୧୩, ୨୦୦୮)। ଭାରତରେ କେବଳ ବୟନଶିଳ୍ପ କ୍ଷେତ୍ରରୁ ୫ଲକ୍ଷ ଶ୍ରମିକ ଛଟେଇ ହୋଇଥିବା ଖବର ମଧ ଆମେ ଜାଣୁଛେ। ସରକାର ଯେ ଲୋକମାନଙ୍କ ଦ୍ୱାରା ଗଠିତ ଏହା କେତେକାଂଶରେ ଠିକ୍ ହୋଇପାରେ। ମାତ୍ର ସରକାର ଯେ ସାଧାରଣ ଲୋକଙ୍କ ପାଇଁ ନୁହେଁ ବା ଲୋକର ସରକାର ନୁହେଁ ତାହା ଅନ୍ତତଃ ଗାଁ ଗହଳରେ ସମବାୟ ସଂସ୍ଥାର ସ୍ଥିତିରୁ ଜଣାପଡ଼େ। ଭାରତବର୍ଷ ବିଶେଷକରି ଓଡ଼ିଶାରେ ଦାରିଦ୍ର୍ୟ ଦୂରୀକରଣ ପାଇଁ ସ୍ୱୟଂ ସହାୟକ ସମବାୟ ସଂସ୍ଥା ଯେ ସଫଳ କାମ ହୋଇପାରିବ, ଏହା ନିଃସନ୍ଦେହରେ କୁହାଯାଇପାରେ। ଆତ୍ମନିଯୁକ୍ତି ଦ୍ୱାରା ଅର୍ଥନୈତିକ ଅଭିବୃଦ୍ଧି ପାଇଁ ସ୍ୱୟଂ ସହାୟକ ସମବାୟର ପରିସର ବ୍ୟାପକ। ତଥାପି ଏହାର ମଧ ଦୁରୁପଯୋଗ ଆରମ୍ଭ ହେଲାଣି। ଶିଳ୍ପପତି, ବଡ଼ ବଡ଼ ବ୍ୟବସାୟୀ

ଟିକସଛାଡ଼ ପାଇଁ ସ୍ୱୟଂ ସହାୟକ ସମବାୟ ଗଠନ କରି ବ୍ୟବସାୟ ଆରମ୍ଭ କଲେଣି। ରିଲାଏନ୍ସ ଫ୍ରେସ୍, କାର୍ଗିଲ, ହିନ୍ଦୁସ୍ଥାନ ଲିଭର, ଭାରତୀ ଭଳି କମ୍ପାନୀମାନେ ଚାଷକୁ ଅକ୍ତିଆର କରିବାପାଇଁ ସ୍ୱୟଂସହାୟକ ସମବାୟ ଆଇନର ଦୂରୁପଯୋଗ କରିବା ଆରମ୍ଭ କରିପାରନ୍ତି। ଚାଷୀ, ମୂଲିଆ, ଲଘୁ ଉଦ୍ୟୋଗୀ, ବୁଣାକାରମାନେ ଏଥିପ୍ରତି ସାବଧାନ ରହିବା ଜରୁରୀ। ସମାଜକର୍ମୀମାନେ ନିଃସ୍ୱାର୍ଥପର ନେତୃତ୍ୱ ନେଇ ନିଜେ ସ୍ୱୟଂ ସହାୟକ ସମବାୟର ନୀତି ଓ ଦର୍ଶନ ଅଧ୍ୟୟନ କରିବା ସହିତ ସାଧାରଣ ବର୍ଗଙ୍କୁ ଶିକ୍ଷିତ କରିପାରିଲେ ଶିଳ୍ପପତିମାନଙ୍କ ଜାଲରୁ ସେମାନଙ୍କୁ ଉଦ୍ଧାର କରାଯାଇପାରିବ।

ସମବାୟ ସଂସ୍ଥାମାନଙ୍କର ସୁପରିଚାଳନା ଓ ସୁଫଳ ପାଇଁ ୪ଗୋଟି କୁହୁକମନ୍ତ୍ର (Talisman) ପ୍ରତି ଧ୍ୟାନ ଦେବାକୁ ହେବ।

୧- ଏକପ୍ରକାର ଆବଶ୍ୟକତା ସମବାୟର ସମସ୍ତ ସଭ୍ୟଙ୍କର ଥିବ।

୨- ସମସ୍ତ ସଭ୍ୟ ସମବାୟର ମୁଖ୍ୟ ସେବା ଗ୍ରହଣ କରୁଥିବେ।

୩- ପ୍ରତ୍ୟେକ ସଭ୍ୟ ସମବାୟର ଅଭିବୃଦ୍ଧି ପାଇଁ ନିରନ୍ତର ଚେଷ୍ଟିତ ଥିବେ।

୪- ସଭ୍ୟମାନଙ୍କ ମଧ୍ୟରୁ ଜଣେ ନିଶ୍ଚିତଭାବେ ଉତ୍ସର୍ଗୀକୃତ ନେତୃତ୍ୱ ନେଉଥିବେ। ସରକାରଙ୍କ ଦ୍ୱାରା କିମ୍ବା ରାଜନୈତିକ ଦଳମାନେ ସମବାୟ ନେତୃତ୍ୱ ପାଇଁ ଯେପରି ଚାପ ପ୍ରୟୋଗକରି ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଟିକୁ ସଭ୍ୟଭୁକ୍ତ କରାଇ ନେତୃତ୍ୱ ଦେବାପାଇଁ ସକ୍ଷମ ନହୁଅନ୍ତି ଏଥିପ୍ରତି ସମସ୍ତ ସଭ୍ୟ ସାବଧାନ ଓ ସଜାଗ ରହୁଥିବେ।

ଓଡ଼ିଶାରେ କେତେକ ଅନୁଷ୍ଠାନ ସ୍ୱୟଂସହାୟକ ସମବାୟ ଗଠନ, ପ୍ରଶିକ୍ଷଣ ପାଇଁ କାମ କରୁଛନ୍ତି। ଲୋକ ସମବାୟ ପ୍ରତିଷ୍ଠାନ ମଧ୍ୟ ଏ ଦିଗରେ କିଛି କାମକରେ। ସମବାୟର ସାଧାରଣସଭ୍ୟ, ପରିଚାଳନା ନିର୍ଦ୍ଦେଶକ, ପରିଚାଳକ ମାନଙ୍କର ନିରନ୍ତର ପ୍ରଶିକ୍ଷଣ ଓ ସମବାୟ ଶିକ୍ଷା ହିଁ ସ୍ୱୟଂ ସହାୟକ ସମବାୟ ସଂସ୍ଥା ମାନଙ୍କୁ ଆଗକୁ ନେଇପାରିବ। ପୁଞ୍ଜିବାଦ ଓ ଜଗତୀକରଣକୁ ସଫଳ ମୁକାବିଲା କରିବାପାଇଁ ସରକାରୀ କଳଠାରୁ ସମ୍ପୂର୍ଣ୍ଣ ମୁକ୍ତ ରହି ଯଦି ସାଧାରଣ ଲୋକମାନେ ସ୍ୱୟଂ ସହାୟକ ସମବାୟ ଗଠନ କରି କାମ କରନ୍ତି, ଆମ ରାଜ୍ୟରେ ଦାରିଦ୍ର୍ୟ ଦୂରୀକରଣ ସମ୍ଭବ ହୋଇପାରିବ। ଏଥିପାଇଁ ଆମଆଗରେ 'ଅମୁଲ' ଆଜିବି ଉଦାହରଣ।



# ବିହନ ଆଗକୁ ଆସୁଛି ଦୁର୍ଦ୍ଦିନ

ବିହନ ସଙ୍କଟ ଭଳି କଥା ଶୁଣିଲେ ଉଦ୍ଭଟ ବା କପୋଳକଳ୍ପିତ ମନେ ହୋଇପାରେ। ତୈଳସଙ୍କଟ, ଅର୍ଥନୈତିକ ସଙ୍କଟ, ଜଳବାୟୁ ପରିବର୍ତ୍ତନଜନିତ ସଙ୍କଟ ବା ଖାଦ୍ୟସଙ୍କଟ କଥା ବୁଝିହେଉଛି। ସାମ୍ରାଜ୍ୟବାଦୀ ଆମେରିକା, ୟୁରୋପୀୟ ପୁଞ୍ଜିବାଦୀ ରାଷ୍ଟ୍ରସମୂହ, ମିଳିତ ଜାତିସଂଘ, ଜି-୭ ଓ ଜି-୨୦ ଦେଶମାନଙ୍କର ଶାସକବର୍ଗ, ବିଶ୍ୱବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂସ୍ଥା ଏହିସବୁ ସଙ୍କଟ କଥା ବହୁଳଭାବେ ପ୍ରଚାର ଓ ପ୍ରସାର କରୁଛନ୍ତି। ତୈଳସଙ୍କଟ ଓ ଆର୍ଥିକ ସଙ୍କଟ ଯୋଗୁଁ ପୃଥିବୀ ଲୋକସଂଖ୍ୟାର ମାତ୍ର ୧୦ପ୍ରତିଶତ ଧନୀକ ଶ୍ରେଣୀର ଲୋକ ବା ସେମାନଙ୍କର ବ୍ୟାଙ୍କ୍, ଶିଳ୍ପ, କଳକାରଖାନା, ଗାଡ଼ିଘୋଡ଼ା ଓ ବେପାର ପ୍ରଭାବିତ ତୈଳସଙ୍କଟରୁ ସୁରକ୍ଷା ପାଇଁ ବିକଳ୍ପ ଜୈବଇନ୍ଧନ (ବାୟୋ ଡିଜେଲ ବା ଏଥନଲ୍) ଖାଦ୍ୟ ନିରାପତ୍ତା ବିପନ୍ନ କରି ଜାଟ୍ରୋଫା (ବାଇଗବା)ଚାଷ। ଆଖୁ, ମକା, ସୋୟାବିନ, ଡାଲି ଓ ଗହମ ଭଳି ଖାଦ୍ୟଦ୍ରବ୍ୟରୁ ଏଥନଲ ପ୍ରସ୍ତୁତି। ପରିଣତି ଖାଦ୍ୟଦ୍ରବ୍ୟ ମୂଲ୍ୟବୃଦ୍ଧି। ଖାଦ୍ୟ ଉତ୍ପାଦନ ହ୍ରାସ ଓ ଖାଦ୍ୟସଙ୍କଟ। ବିଶ୍ୱ ଖାଦ୍ୟସଂସ୍ଥାର ଏକ ଆକଳନ ଅନୁସାରେ ୫୦ଲିଟର ଏଥନଲ ପାଇଁ ୨୦୦କିଲୋ ମକା ଦରକାର ହୁଏ ଯାହାକି ଜଣେ ସାଧାରଣ ଲୋକର ବର୍ଷକର ଖାଦ୍ୟ ହୋଇଥାନ୍ତା। (Towards a Food Versus fuel Battle - The Right to Food and Impact of liquid Biofuels - FAO, 2008) ଝିଣ୍ଟିକା ମାରି ବଣି ପୋଷିଲା ନ୍ୟାୟରେ ସାଧାରଣ ମଣିଷଟିର ପେଟରୁ କାଟି ଅର୍ଥନୈତିକ ସଙ୍କଟମୋଚନ ପାଇଁ କମ୍ପାନୀମାନଙ୍କର କ୍ଷତିଭରଣା କରାଯାଉଛି। ସବୁ ବଡ଼ ବଡ଼ ଦେଶର ସରକରୀ ତହବିଲ ଧନୀକ ଶ୍ରେଣୀର ସୁରକ୍ଷା ପାଇଁ ଖୋଲି ଦିଆଯାଇଛି। ଭାରତ ସରକାର ମଧ ବେଲ୍‌ଆଉଟ୍ ପ୍ୟାକେଜ ଘୋଷଣାରେ ଆଗୁଆ ଅଛନ୍ତି। ବିଶ୍ୱବ୍ୟାଙ୍କର ରିପୋର୍ଟ ଯଦି ଅନୁଧ୍ୟାନ କରିବା, ୨୦୧୫ବେଳକୁ ଭାରତର ଗରିବି ସଂଖ୍ୟା ୩୦ କୋଟିରେ ପହଞ୍ଚିବ। (Poverty forecast - World Bank Paints a bleak picture of India - NIE - 13May 2009)। ଜନକଲ୍ୟାଣ ରାଷ୍ଟ୍ର କାହାକୁ ସୁରକ୍ଷା ଦେଉଛି ?

■ *ଆଜ କେତେ ବିଷ ପିଇଲେ ଚେତିବା... !*

ବିଶ୍ୱ ଖାଦ୍ୟସଂସ୍ଥା ପୃଥିବୀରୁ କ୍ଷୁଧା ନିବାରଣ ପାଇଁ କୃଷିକ୍ଷେତ୍ରରେ ନୂତନ ଜ୍ଞାନକୌଶଳ ପ୍ରୟୋଗ ଉପରେ ଗୁରୁତ୍ୱ ଦେଉଛି । ଅଧିକ ଉତ୍ପାଦନ କରି ଭାରତରୁ ଦାରିଦ୍ର୍ୟ ଦୂରୀକରଣ କରିବାପାଇଁ ଅଣ୍ଟା ଭିଡ଼ିଥିବା ଜଣାଉଛି । ଗତବର୍ଷ ଅପ୍ରେଲ ୮ରୁ ୧୧ପର୍ଯ୍ୟନ୍ତ ଦିଲ୍ଲୀରେ ଗ୍ଲୋବାଲ ଆଗ୍ରୋ ଇଣ୍ଡଷ୍ଟ୍ରିଆଲ ଫୋରମ୍‌ରେ ୫୦୦ରୁ ଅଧିକ ବହୁରାଷ୍ଟ୍ରୀୟ କମ୍ପାନୀ ଏକାଠିହୋଇ ଆମ ପ୍ରଧାନମନ୍ତ୍ରୀ ମନମୋହନ ସିଂହଙ୍କୁ ପୁରସ୍କୃତ ମଧ କରିଛନ୍ତି । (The Hindu-8.4.2008-First Global Agro Industrial Forum Meet) ବିହନ ଏହି କାର୍ଯ୍ୟକ୍ରମର କେନ୍ଦ୍ରବିନ୍ଦୁ । ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା, ମାହିକୋ, ବେୟର କ୍ରପ୍ ସାଇନ୍ସ, ଡୋର୍କୋକାହସ୍, ଡୁପଣ୍ଟୋ ଭଳି ଦେଶୀ ବିଦେଶୀ କମ୍ପାନୀମାନେ ଜି.ଏମ୍ ବିହନ ପ୍ରଚଳନ ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ ଜାରି ରଖିଛନ୍ତି । ୨୦୦୪ମସିହା ଦ୍ୱିତୀୟ ଆନ୍ତର୍ଜାତିକ ଧାନବର୍ଷର ମୁଖ୍ୟ ପ୍ରସଙ୍ଗ ଥିଲା ଜି.ଏମ୍. ଧାନବିହନ ପ୍ରଚଳନ । ମନ୍‌ସାଣ୍ଟୋ, ସିଞ୍ଜେଣ୍ଟା ମିଳିତ ଷଡ଼ଯନ୍ତ୍ରରେ ସୁବର୍ଣ୍ଣଧାନ (Golden Rice)ବିହନ ଭାରତୀୟ କୃଷକ ପାଖରେ ପହଞ୍ଚାଇବା । ଆମ କେନ୍ଦ୍ର ସରକାର ଓ ରାଜ୍ୟ ସରକାର ଏହିସବୁ କମ୍ପାନୀମାନଙ୍କ ବିହନ ବେପାର ବଢ଼ାଇବା ପାଇଁ ୨୦୦୫ମସିହା ବୁଶ୍-ମନମୋହନ କୃଷିକ୍ଷେତ୍ରରେ ଜ୍ଞାନ ପ୍ରେରଣ ଚୁକ୍ତି (Indo-American Treaty on knowledge initiative in Agriculture)ରେ ସନ୍ତକ ଦେଇ ଭାରତ ସରକାର କୃଷକମେଧ ଯଜ୍ଞର ପୂର୍ଣ୍ଣାହୁତି ଦେଇ ସାରିଛନ୍ତି । ଆମ ଓଡ଼ିଶା ସରକାର ମଧ ଏ ପ୍ରକ୍ରିୟାରେ ଖୁବ୍ ଦକ୍ଷତା ପ୍ରଦର୍ଶନ କରିଛନ୍ତି । କଦଳୀର ଟିସୁ କଲଚର, ବିଟି କପାଚାଷକୁ ପରୋକ୍ଷରେ ପ୍ରୋତ୍ସାହନ ଦେଇ କୃଷକ ଆତ୍ମହତ୍ୟା, ବିଟି ବାଇଗଣ ଚାଷ ପାଇଁ ବ୍ୟଗ୍ରତା ଏବଂ ଜି.ଏମ୍.ଧାନ ବିହନ ପ୍ରଚଳନ ପାଇଁ ଉଦ୍ୟମ ଅବ୍ୟାହତ ରଖିଛନ୍ତି । (After Bt Brinjal row, It's nive variety in storm-NIE, 13 May, 2009)' । ସ୍ୱର୍ଣ୍ଣ-ସବ୍-୧ଧାନ ବିହନ ପାଣି ସହଣୀ । ତେଣୁ ଜି.ଏମ୍.ହେଲେବି ବୁଡ଼ିଅଞ୍ଚଳ ପାଇଁ ଏହା ଉପଯୋଗୀ ହେବ ।'ରାଜ୍ୟ କୃଷି ନିର୍ଦ୍ଦେଶକ ନରମସ୍ୱରରେ ଏହି ବିହନର ସୁପାରିଶ କରୁଥିବାବେଳେ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ଗବେଷଣା ବିଭାଗ ମୁଖ୍ୟ ପ୍ରଫେସର ଦିବାକର ନାଏକ ଏହି ବିହନ ଜି.ଏମ୍. ବୋଲି ମତ ଦେଇଛନ୍ତି । ମାତ୍ର ଅବସରପ୍ରାପ୍ତ ବ୍ରିଡ଼ର ସାଇଣ୍ଟିଷ୍ଟ ଆଶୁତୋଷ ରାୟ ଜି.ଏମ୍. ବିହନ ରାଜ୍ୟରେ ଥିବା ଦେଶୀଧାନ ବିହନକୁ ସଂକ୍ରମଣ କରିବ ବୋଲି ସ୍ପଷ୍ଟ ଘୋଷଣା କରିଛନ୍ତି । ବୁଡ଼ିଅଞ୍ଚଳ, ପାଟଜମି, ଖାଲଜମି ପାଇଁ ଏବେବି ଆମ ଚାଷୀଙ୍କ ପାଖରେ ୨୦ରୁ ଅଧିକ ଦେଶୀବିହନ ଅଛି । କନ୍ୟାପଟିଆ, କେଦାରଗୌରୀ, ହାତୀ ପିଞ୍ଜରା, କଳାସୁରା, ରାଜବଲ୍ଲଭ, ଝୁମ୍ପୁଡ଼ି,

କଲାମ ଏହିପରି ଅନେକ କିସମ ଅଛି। ଏହି କିସମଗୁଡ଼ିକ ୧୫ଦିନରୁ ମାସେ ପର୍ଯ୍ୟନ୍ତ ପାଣିରେ ବୁଡ଼ିରହିଲେ ମଧ୍ୟ ପାଣି ଛାଡ଼ିଗଲେ ମୁଣ୍ଡ ଟେକନ୍ତି। ଉତ୍ପାଦନ ଏକର ପ୍ରତି ହାରାହାରି ୧୫କଣ୍ଟାଲ ମିଳୁଛି। ଏହି ବିହନ କିସମ ୧୦ହଜାର ବର୍ଷଧରି ଚାଷ ହେଉଥିଲେ ମଧ୍ୟ ଗୁଣ, ମାନ ଅକ୍ଷୁଣ୍ଣ ଅଛି। ଜି.ଏମ୍. ବିହନର ପରମାୟୁ ମାତ୍ର ଗୋଟିଏ ଫସଲ। ପ୍ରତିବର୍ଷ ନୂଆ ବିହନ ଚାଷୀ କିଣିବ। ଆକାଶଛୁଆଁ ଦର। ପାରମ୍ପରିକ ବିହନକୁ ଧ୍ୱଂସ କରିବା ପାଇଁ ଜି.ଏମ୍. ଅମୋଘ ଅସ୍ତ୍ର। ଏହି ପ୍ରକ୍ରିୟାର ଶେଷ ପରିଣତି ବିହନସଙ୍କଟ। ବିହନ ପାଇଁ ଯୁଦ୍ଧ ସମୟସୀମା ୨୦୨୦ରୁ ୨୦୨୫। ଭାରତ, ଏସିଆ ଓ ଆଫ୍ରିକା ମହାଦେଶର କୋଟି କୋଟି ସମ୍ବଳହୀନ ଛୋଟ ଓ ନାମମାତ୍ର ଚାଷୀ, ଭାଗଚାଷୀ ଓ କୃଷିଶ୍ରମିକ ଚରମ ବିପର୍ଯ୍ୟୟ ଆଡ଼କୁ ମୁହାଁଇଛନ୍ତି। ଆଗକୁ ବିହନ ଅଭାବରୁ ରାଷ୍ଟ୍ର ପ୍ରାୟୋଜିତ ଦୁର୍ଭିକ୍ଷର ଆଶଙ୍କା। ବିହନ ଅଭାବରେ ଆମ ଦେଶରେ ପ୍ରତିବର୍ଷ ହଜାର ହଜାର ହେକ୍ଟର ଚାଷଜମି ପଡ଼ିଆ ପଡୁଛି। ଭବିଷ୍ୟତରେ ଏହା ଲକ୍ଷ ଲକ୍ଷ ହେକ୍ଟରକୁ ଛୁଇଁବା ଜଳ ଜଳ ଦେଖାଯାଉଛି। ବୁଝିବା ପାଇଁ କଷ୍ଟ ହୋଇପାରେ। ଅବାସ୍ତବ ଲାଗିପାରେ। ମାତ୍ର ଅନୁଭବୀ, ଅଙ୍ଗେ ନିଭାଉଥିବା ସଚେତନ ଚାଷୀକୁଳ ଏହି ଭବିଷ୍ୟବାଣୀକୁ ଅସ୍ୱୀକାର କରିପାରିବେ ନାହିଁ। ବହୁରାଷ୍ଟ୍ରୀୟ କମ୍ପାନୀ ଆମ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମଧ୍ୟରେ ବିହନକୁ ନେଇ ଯେଉଁ ସନ୍ତ୍ରାସବାଦ କାମ କରୁଛି, ତାହା ମାଓବାଦୀ, ନକ୍ସଲ ବା ଅଲ୍‌କାଇଦାର ହିଂସାଠାରୁ ଭୟଙ୍କର। ବିହନ ସଙ୍କଟରୁ କୃଷି ସଙ୍କଟ। ୮୦କୋଟି ଭାରତବାସୀଙ୍କ ଜୀବନ ଜୀବିକା ବିପନ୍ନ ହେବାକୁ ଯାଉଛି। ଲୋକପ୍ରିୟ ସରକାରଙ୍କର ସୁଶାସନର ନମୁନା।

ବିହନ ଚାଷପାଇଁ ଅମୂଲ୍ୟରତ୍ନ ସଦୃଶ। ପ୍ରତି ଫସଲ ଅମଳ ସମୟରେ ଚାଷୀ ଜମିରୁ ବାଛି ବାଛି ବିହନ ସଂଗ୍ରହ କରିଥାଏ। ସ୍ତ୍ରୀ ଲୋକମାନେ ବିହନ ବାଛି, ପାଛୁଡ଼ି, ଶୁଖାଇ ସାଇତି ରଖନ୍ତି। ଓଡ଼ିଶାରେ ଭାତ ପ୍ରଧାନ ଖାଦ୍ୟ। ଧାନ ମୁଖ୍ୟ ଫସଲ। ଧାନ ବିହନକୁ ଓଳିଆରେ ବାନ୍ଧି ରଖାଯାଏ। ୧୯୭୦ପର୍ଯ୍ୟନ୍ତ ଦେଶୀଧାନର ପ୍ରଚଳନ ଥିଲା। ଓଳିଆ ଭିତରେ ବିହନ ରଖିଲେ ଉତ୍ତାପ ଓ ବାୟୁ ଚଳାଚଳ ଆବଶ୍ୟକ ପରିମାଣରେ ମିଳିଥାଏ। ବିହନଦାନାରେ ଭବିଷ୍ୟତ ଅଙ୍କୁର ପାଇଁ ଗଚ୍ଛିତଥିବା ଭ୍ରୁଣ ଉଜ୍ଜୀବିତ ଥାଏ। ବୈଶାଖ ଶୁକ୍ଳ ତୃତୀୟା ଓଡ଼ିଶାରେ ବିହନ ଅନୁକୂଳ ପର୍ବ। ଅକ୍ଷୟତୃତୀୟାଠାରୁ ରଜସଂକ୍ରାନ୍ତି ମଧ୍ୟରେ ଚାଷୀ ଜମି ଖରୁଟି ଚାଷକରି ବିହନ ବୁଣିଥାନ୍ତି। ଅସରାଏ ଫେଣଲଗା ବର୍ଷା ହୋଇଗଲେ ଅଗାଡ଼ି ଫୋଡ଼ ଗଛ। ସେଇଥିପାଇଁ କୁହାଯାଏ ଓଳିଆରୁ ପଡ଼ି ଗଜା। ବିହନ ସଂଗ୍ରହ ପ୍ରଣାଳୀ ଉଚ୍ଚମାନର ଓ ବିଜ୍ଞାନସମ୍ମତ ଥିଲା। ମୁଗ, ବିରି ମଞ୍ଜି ସଂରକ୍ଷଣ ପାଇଁ ଓଳିଆରେ ବେଗୁନିଆ, ଲିମ୍ବପତ୍ର ପକାଇ ବାନ୍ଧିବା, କଖାରୁ

ମଞ୍ଜିକୁ ଶୁଖାଇ କନାରେ ବାନ୍ଧି ରଖିବା, ଛଚିନ୍ଦ୍ରା, କଲରା ମଞ୍ଜିକୁ ଗୋବରରେ ଗୋଳାଇ କାନ୍ଥରେ ଘସିପରି ଲେସି ରଖିବା, ଜହ୍ନି, ଭେଣ୍ଡି ମଞ୍ଜିକୁ ରୋଷେଇଘର ଚାଳରୁ ଝୁଲାଇ ରଖିବା ବା କାକୁଡ଼ି ଫୁଟି, ତରଭୁଜକୁ ରୋଷେଇଘର କାନ୍ଥରେ ଛାଟିଦେବା କୃଷିବୈଜ୍ଞାନିକମାନଙ୍କ ବିହନ ସଂରକ୍ଷଣ ପ୍ରକ୍ରିୟାଠାରୁ କୌଣସି ଗୁଣରେ ନ୍ୟୁନ ନଥିଲା। ଧାନରେ ଜଳୀୟଅଂଶ ପରୀକ୍ଷା ପାଇଁ ସ୍ତ୍ରୀ ଲୋକମାନେ ଦାନ୍ତରେ କାମୁଡ଼ି ବତର ପରୀକ୍ଷା କରୁଥିଲେ। ଠକ୍ କିମ୍ବା ଦୁଇଫାଳ ହୋଇଗଲେ ଠିକ୍ ଶୁଖିଛି ବୋଲି ବୁଝୁଥିଲେ। ସେଇଥିପାଇଁ ଆଜି ସରକାରୀ ବା କମ୍ପାନୀ ଧାନବିହନ ଏକରକୁ ୩୦କିଲୋ ବ୍ୟବହାର ହେଉଥିବା ବେଳେ ଓଳିଆରୁ ୧୫କିଲୋ ବିହନ ବୁଣିଲେ ଏକରକ ପାଇଁ ଯଥେଷ୍ଟ ଗଛ ମିଳୁଥିଲା।

ଚାଷୀ ବିହନର ମାଲିକ ଥିଲା। ବିହନ ଉପରେ ଚାଷୀର ସାର୍ବଭୌମ ଅଧିକାର ଥିଲା। ବନ୍ୟା, ବାତ୍ୟା ଓ ପ୍ରାକୃତିକ ବିପର୍ଯ୍ୟୟରେ ସରକାର ଚାଷୀକୁ ସାହାଯ୍ୟ ପାଇଁ ସୁରକ୍ଷିତ ଅଞ୍ଚଳ ଚାଷୀଙ୍କଠାରୁ ବିହନ ସଂଗ୍ରହ କରୁଥିଲା। ଗୋବିଖିଣରେ କ୍ଷତିଗ୍ରସ୍ତ ଚାଷୀଙ୍କୁ ବିହନ ଯୋଗାଉଥିଲା। ସେତେବେଳେ ପ୍ରତି ଚାଷୀ ପରିବାର ନିଜର ଆବଶ୍ୟକତାର ୨/୩ଗୁଣ ବିହନ ଓଳିଆରେ ବାନ୍ଧି ରଖୁଥିଲା। ବର୍ଷା ଟେକିନେଲା-ଗଜା ମାରୁ ହେଲା-ଓଳିଆରେ ବିହନ ଅଛି। ବିହନ ଗଜାପରେ ପରେ ଅତିବୃଷ୍ଟି ହେଲା। ଗଜା ଧୋଇଗଲା। ଆଉଥରେ ତଳିପକାଇ ଜମି ହାସଲାତ କରିବାକୁ ବିହନ ଅଛି। ପଡ଼ୋଶୀ ଚାଷୀର ବିହନ ଦରକାର। ବିହନ ଅଛି। ଧାନ ବଦଳ କରି ବିହନ ନେବ। ବୁଣାବୁଣି, ବିହନ କଣ୍ଟାକୁଣ୍ଟା ଗାଁ ଭାଗବତ ଟୁଙ୍ଗୀରେ ଠିକ୍ ହେଉଥିଲା। ଦୁଆର, ବାଡ଼ିରେ ପନିପରିବା ଲାଗିବ ସ୍ତ୍ରୀ ଲୋକମାନେ ବିହନ ଦିଆନିଆ କରନ୍ତି। ପ୍ରାଣୀର ଶ୍ୱାସକ୍ରିୟା ପାଇଁ ବାୟୁ ଯେପରି ଅପରିହାର୍ଯ୍ୟ,ଚାଷୀପାଇଁ ବିହନ ସେପରି ଜୀବନ। ବିହନ ମା' ଲକ୍ଷ୍ମୀ ଠାକୁରାଣୀ। ପିଠାପଣା, ଝୋଟି, ଚିତା ଦେଇ ଗୃହିଣୀମାନେ ବିହନକୁ ପୂଜା କରନ୍ତି।

ବୈଶାଖ ଶୁକ୍ଳ ତୃତୀୟା ଅକ୍ଷୟ ତୃତୀୟା। ବିହନ ଅନୁକୂଳ ପର୍ବ। ଗୃହିଣୀମାନେ ନୂଆ ଟୋକେଇ ଗଉଣୀରେ ଚିତା ଦେବେ। ବଉଳା, କସରା ବଳଦଙ୍କୁ ଖାଇବାକୁ ଦେବେ। ମୁଣ୍ଡରେ ହଳଦୀ ସିନ୍ଦୁର ଦେବେ। ଲଙ୍ଗଳ, କଣ୍ଟି, ଈଷ, କୁଆଳୀରେ ଚିତା। ନୂଆଲୁଗା ପିନ୍ଧି, ମୁଣ୍ଡରେ ନୂଆ ଗାମୁଛା ଠେକା ବାନ୍ଧି ଲକ୍ଷ୍ମୀ ଠାକୁରାଣୀଙ୍କୁ ମୁଣ୍ଡିଆ ମାରି ଚାଷୀପୁଅ ହଳ ଯୋଚି ବାହାରିଯିବ କାଠିମରା ବିଲକୁ ବିହନ ଅନୁକୂଳ ପାଇଁ। ପଛେ ପଛେ ଗୃହିଣୀ ନୂଆ ଶାଢ଼ୀପିନ୍ଧି, ପଣତକୁ ଅଣ୍ଟାରେ ଭିଡ଼ି ବିହନ ଟୋକେଇ ମୁଣ୍ଡାଇ, ପିଠା, ଫୁଲ, ବରକୋଳି ପତ୍ର, ଦୁବ ଧରି ସ୍ୱାମୀ ପଛେ ପଛେ ବିଲକୁ ଯିବ। ଐଶାନ୍ୟ

କୋଣରେ ପିଠା ପୋତି, ଫୁଲ ଦେଇ ଦୁହେଁ ଲକ୍ଷ୍ମୀ ଠାକୁରାଣୀଙ୍କୁ ମୁଣ୍ଡିଆ ମାରିବେ। ସାତମୁଠା ବିହନ ଛାଟି ସାତଘେରା ହଳ ବୁଲାଇଦେଇ ଗଡ଼ ଜିଣିଲା ଭଳି ଦୁହେଁ ହଳ ଅଡ଼େଇ ଘରକୁ ଫେରିବେ। ଘରେ ଭୋଜି ଭାତ, ଆନନ୍ଦଉଲ୍ଲାସ, ହସଖୁସି। ପିଲାମାନଙ୍କର ଖେଳକୁଦ। ବୁଢ଼ାବୁଢ଼ୀ ପୁଅବୋହୂଙ୍କ କାମଦେଖି ମନେ ମନେ ଆଶୀର୍ବାଦ ବର୍ଷା କରୁଥିବେ। ନୂଆ ଫସଲ ଠିଆହେବ। ଖଳାବାଡ଼ି ପୁରିଯିବ। ଆଶା ଓ ଉନ୍ମାଦନାରେ ବିଭୋର। ଏହା ହେଉଛି ବିହନ ସଂସ୍କୃତି। ଅଖିମୁଠି ଅନୁକୂଳ। ପାଠକେ ଟିକେ କଳ୍ପନା କରନ୍ତୁ ତ ଗାଁ ଦାଣ୍ଡରେ ୩୦/୪୦ଟି ହଳ, ହଳ ପଛରେ ପୁରୁଷ ଓ ସ୍ତ୍ରୀ, ହରିବୋଲ, ହୁଳହୁଳି କି ମନୋରମ ଦୃଶ୍ୟ ହୋଇନଥିବ। ଆପଣମାନେ ଭାବପ୍ରବଣ ହେଉନାହାନ୍ତି। ଆନନ୍ଦରେ ଆଖି ଛଳ ଛଳ ହେଉନାହିଁ କି ? ଓଡ଼ିଶା ଧାନର ଜନ୍ମସ୍ଥାନ। ୩୦ହଜାରରୁ ଅଧିକ କିସମର ଧାନ ଓଡ଼ିଆ ଚାଷୀକୂଳ ଚାଷ କରୁଥିଲେ। ଭାରତରେ ଏକଲକ୍ଷ କିସମରୁ ଅଧିକ ଧାନଚାଷ ହେଉଥିଲା। ଖାଲ, ବଢ଼ିଆଳି ପାଇଁ କିସମ ତ ମରୁଡ଼ି ସହଣୀ କିସମ। ବିଆଳୀ କିସମ ତ ଲଘୁ କିସମ। ୫୦ଦିନରୁ ୧୮୦ ଦିନରେ ଅମଳ ହୋଇପାରୁଥିବା ଶହ ଶହ କିସମ। ମୁଢ଼ି, ଚୁଡ଼ା ଓ ଖଇପାଇଁ କିସମ ତ ଉସୁନା, ସରୁ ଅରୁଆ, ଭୋଜି ଭାତ ପାଇଁ ବାସନାଧାନ କିସମ। ରାବଣ ପ୍ରତିଦିନ ଗୋଟିଏ ନୂଆ କିସମ ଚାଉଳର ଭାତ ଖାଉଥିବା ଆମ ପୌରାଣିକମାନେ କୁହନ୍ତି। ରାବଣ ଯଦି ୩୦୦ବର୍ଷ ବଞ୍ଚିଥିବ, ପ୍ରତିଦିନ ହିଁ ନୂଆ ନୂଆ କିସମ ଚାଉଳର ଭାତ ଖାଇଥିବ। ଉଣେଇଶଶହ ସତୁରୀ ଦଶକରେ କୃଷିକ୍ଷେତ୍ରରେ ଏକ ନୂଆ ବିପ୍ଳବ ଆସିଲା। ସବୁଜ ବିପ୍ଳବ। ଅଧିକ ଅମଳକ୍ଷମ ବିହନ। କୁହୁକ ବିହନ-ଆଇଆର-୮। ଦେଶୀବିହନ ସେଇକାଳରୁ ହଜିଗଲା। କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର, କଟକରେ ସେତେବେଳକୁ ଓଡ଼ିଶା ଓ ଛତିଶଗଡ଼ରୁ ସଂଗୃହୀତ ୩୦ହଜାର କିସମର ଦେଶୀବିହନ ନମୁନା ସଂରକ୍ଷିତ ଥିଲା। ଆମେରିକାର ନିର୍ଦ୍ଦେଶରେ ପ୍ରଥମେ ଆନ୍ତର୍ଜାତିକ ଧାନ ଗବେଷଣା କେନ୍ଦ୍ର, ମାନିଲା ପଠାଗଲା। ବର୍ତ୍ତମାନ ସେହିସବୁ କିସମ ଆମେରିକାର ସୈନ୍ୟବାହିନୀ ମୁଖ୍ୟଦପ୍ତର ପେଣ୍ଟାଗନରେ ସୁରକ୍ଷିତ। ଏହି ଡକାୟତିର ଖଳନାୟକ ସବୁଜବିପ୍ଳବର ଜନକ ବୋଲାଉଥିବା ଏମ୍.ଏସ୍.ସ୍ୱାମୀନାଥନ୍। ଦେଶୀଧାନ ତ ଅଳ୍ପ ଫଳେ। ଭାରତରେ ସରକାର ତାକୁ ଅଦରକାରୀ ଘୋଷଣାକଲେ। ସୀତାଙ୍କୁ ଅଶୋକବନରେ ସୈନ୍ୟମାନେ ଜଗିରହିଲା ଭଳି ପେଣ୍ଟାଗନରେ ଏସବୁ ବିହନକୁ କାହିଁକି ଆମେରିକା ଜଗୁଆଳି ରଖି ସାଇତିଛି। (illustrated Weekly of India-23-29March-1986-The Great Gene Robbery)

■ *ଆଉ କେତେ ବିଷ ପିଇଲେ ଚେତିବା... !*

ଚାଷପାଇଁ ବିହନ ଚାବିକାଠି। ଚାଷୀହାତରୁ ବିହନ ଡକାୟତି ହୋଇଗଲା। ଲୁଟେରାମାନେ ଲୁଟିନେଲେ। ତା'ଭାଡ଼ିରେ ଆଉ ବିହନ ନାହିଁ। ବିହନ ଅନୁକୂଳ କରିବ କ'ଣ? ୧୦ହଜାର ବର୍ଷର ସଂସ୍କୃତି ଇତିହାସ ଭିତରେ ଲୀନ ହୋଇଗଲା। କର୍ପୂର ଉଡ଼ିଗଲେ କନା ତ ପଡ଼ିଛି। ଠାଏ ଠାଏ କାଁ ଭାଁ ଅକ୍ଷିମୁଠି ଅନୁକୂଳ ହେଉଛି। ସମ୍ବଲପୁର, ବରଗଡ଼, ନୟାଗଡ଼ ଜିଲ୍ଲାମାନଙ୍କରେ ଏବର୍ଷ ଅକ୍ଷିମୁଠି ଅନୁକୂଳ କେତେ ଚାଷୀକଲେ। ମାତ୍ର ବର୍ଷା ତ ନାହିଁ। ବୁଣାବୁଣି ନାହିଁ। ବିହନ ଏବେ ବ୍ଲକ୍‌ରେ ବା ବଜାରରେ। ଚାଷୀଅଣ୍ଟାରେ ପଇସା ନାହିଁ। ରାଜ୍ୟସାରା ଧାନର ଅଭାବୀ ବିକ୍ରି। କ୍ୱିଣ୍ଟାଲ ୬୫୦ରୁ ୭୦୦ଟଙ୍କାରେ ଚାଷୀ ବେପାରୀଙ୍କୁ ବିକିବାକୁ ବାଧ ହେଉଛି। ଆମ ରାଜ୍ୟରେ ୮୦ଭାଗ ଚାଷୀ ଛୋଟଚାଷୀ ବା ଭାଗଚାଷୀ। ଏମାନଙ୍କର ଦାଣ୍ଡରୁ ଆସି ହାଣ୍ଡିରେ ପଡ଼େ। ବନ୍ଧାଛନ୍ଦା କରି, ମହାଜନ ଠାରୁ କରଜକରି ପଇସା ଯୋଗାଡ଼ କଲେ ବିହନ କିଣିବେ। ପର୍ବପର୍ବାଣୀ, ବିହନ ଅନୁକୂଳ ଏମାନଙ୍କ ଭାଗ୍ୟରେ ଆଉ ନାହିଁ।

ଅଧିକ ଅମଳକ୍ଷମ ବୋଲାଉଥିବା ସରକାରୀ ବା କମ୍ପାନୀ ବିହନ କିପରି କ୍ରମାଗତ ଭାବେ ନିମ୍ନମାନର ଓ ଚାଷୀପାଇଁ ଆତ୍ମହତ୍ୟାର କାରଣ ହୋଇଛି ନିମ୍ନରେ କେତୋଟି ସୂଚନାରୁ ଜାଣିହେବ।

୧- ୨୦/୨୫ବର୍ଷ ତଳର କଥା। ଘଟଣାଟି ଏବେ ବିସ୍ମୃତି ଗର୍ଭରେ। ଓଡ଼ିଶା ସରକାରଙ୍କ ଖୋଦ୍ କୃଷିମନ୍ତ୍ରୀ ବାସୁଦେବ ମହାପାତ୍ରଙ୍କ ଇଲାକା ଜଗତସିଂହପୁର ଓ ବାଲିକୁଦାରେ ୧୦ହଜାର ହେକ୍ଟର ଜମିରେ ରବିଋତୁରେ ପାରିଜାତ ବିହନ ଚାଷହେଲା। ୧୪୦/ ୧୪୫ଦିନ ବିଲରେ ରହିବି ଧାନ ଥୋଡ଼ ଧରୁନି। କେନାଲ ପାଣି ବନ୍ଦହେଲାଣି। ଜୁନ ଅଧା ବୁଝୁବୁଝୁ ବିହନ ପାରିଜାତ ନଥିଲା। ଭୁଲ୍‌ରେ ସାରଦଧାନ ବିହନ ଯୋଗା ଯାଇଥିଲା। ବିଲକୁ ଦା'ଯାଇନି। ଅବଶ୍ୟ ଗୋରୁଗାଇ, ମଇଁଷି ମାସେ ୧୫ଦିନ ଭଲ ଚରିଲେ।

୨- ୧୯୯୬କଥା। ହାଇବ୍ରିଡ଼ ଧାନ ଏକରକୁ ୪୦ କ୍ୱିଣ୍ଟାଲ ଫଳିବ-ଡେଙ୍ଗୁରାପିଟା ହେଲା, ରାଜ୍ୟ ସରକାର ଆନ୍ଧ୍ରପ୍ରଦେଶର ପ୍ରୋ-ଆଗ୍ରୋ କମ୍ପାନୀଠାରୁ ହାଇବ୍ରିଡ଼ ଧାନବିହନ ମଗାଇ ଚାଷୀଙ୍କୁ ଯୋଗାଇଲେ। ସେତେବେଳେ ବିହନ କିଲୋକୁ ୧୦୦/୧୫୦ଟଙ୍କାରେ ଚାଷୀ ଆଗ୍ରହରେ କିଣିଲେ। ରାତାରାତି ବଡ଼ଲୋକ ହେବା ନିଶା ତ। ବିହନ ଗଛ ହେଲା। ଥୋଡ଼ ହେଲା। କେଣ୍ଡାରେ ଖାଲି କଣ୍ଢା ଆଉ ଅଗାଡ଼ି। ବୁଝୁବୁଝୁ ହାଇବ୍ରିଡ଼ର ଦ୍ୱିତୀୟ ପିଢ଼ି ଧାନରୁ ବିହନ ସଂଗ୍ରହ କରାଯାଇଥିଲା।

ହାଇବ୍ରିଡ୍‌ର ପରମାୟୁ ଗୋଟିଏ ଫସଲ। ପ୍ରତିବର୍ଷ ନୂଆ ବିହନ କିଣାଯିବା କଥା। କୃଷି ବିଭାଗରେ ସେତେବେଳେ ଜଣେ ଟାଣୁଆ ନିର୍ଦ୍ଦେଶକ ଥାନ୍ତି। ପୁରୀ, କଟକ, ଖୋର୍ଦ୍ଧା ଜିଲ୍ଲାମାନଙ୍କରେ ୮/୧୦ହଜାର ହେକ୍ଟର ଜମିକୁ ଦା'ଯାଇନି। ଗୋରୁ ଚରିଗଲେ।

୩- ୨୦୦୪ମସିହା କଥା। ସେତେବେଳକୁ ମନସାଣ୍ଟୋ କମ୍ପାନୀ ଭାରତରେ ବିଟି କପା ମଞ୍ଜି ବିକ୍ରି ଜୋରସୋରରେ ଆରମ୍ଭ କରିଥାନ୍ତି। ଭାରତୀୟ ବିହନ କମ୍ପାନୀ ମାହିକୋ ମନ୍‌ସାଣ୍ଟୋର ଯୋଡ଼ିଦାର। ନିମ୍ନମାନର ମଞ୍ଜି ଯୋଗୁଁ ସେବର୍ଷ ଆନ୍ଧ୍ରର କେତେକ ଜିଲ୍ଲାରେ ଚାଷୀମାନେ ୨୦କୋଟି ଟଙ୍କାରୁ ଅଧିକ କ୍ଷତି ସହିଲେ। ଗଛ କମ୍‌ହେଲା। ଫଳ ବି କମ୍। କମ୍ପାନୀ କପା କିଣିଲେ ନାହିଁ। ଆନ୍ଧ୍ର ସରକାର ମନ୍‌ସାଣ୍ଟୋ କମ୍ପାନୀଠାରୁ କ୍ଷତିପୂରଣ ଦାବି କଲା। ମାତ୍ର ସରକାରୀ ଆଇନକାନୁନ ଭିତରେ କମ୍ପାନୀ ଖସିଯିବା ପାଇଁ ଢେର୍ ଗୋଧା ଥାଏ। କମ୍ପାନୀ ଟଙ୍କାଟେ ବି କ୍ଷତିପୂରଣ ଦେଲାନାହିଁ। ଆନ୍ଧ୍ରରେ ସେବର୍ଷ କୃଷକ ଆତ୍ମହତ୍ୟା ସର୍ବାଧିକ ଥିଲା।

୪- ଓଡ଼ିଶା ସରକାର କୁହନ୍ତି 'ଆମେ ବିଟିକପାକୁ ମଞ୍ଜୁରୀ ଦେଇନାହୁଁ।' କଳାହାଣ୍ଡି, ନୂଆପଡ଼ା, ବଲାଙ୍ଗିର ପ୍ରଭୃତି ଜିଲ୍ଲାର କପାଚାଷୀମାନେ କମ୍ପାନୀଠାରୁ ବିଟି ମଞ୍ଜି ହିଁ କିଣିଥାନ୍ତି। ମଞ୍ଜି, ସାର, କୀଟନାଶକ କମ୍ପାନୀମାନେ ଚାଷୀକୁ ଋଣସୂତ୍ରରେ ଦିଅନ୍ତି। ଅଧା ମଞ୍ଜିରୁ ଗଛ ହୁଏ। ତେଣୁ ଚାଷୀକୁ ପ୍ରକୃତ ଆବଶ୍ୟକତାର ୨ଗୁଣ ମଞ୍ଜି କିଣିବାକୁ ପଡ଼ିଥାଏ। କୃଷିବିଭାଗ ଜାଣିବି ପ୍ରତିକାର ନାହିଁ। ଫଳରେ କୃଷକ ଆତ୍ମହତ୍ୟା।

୫- ୨୦୦୮ ରବିଧାନ ଚାଷ। କଣାସ ବ୍ଲକ୍ ବନ୍ୟା ପ୍ରପୀଡ଼ିତ ବ୍ଲକ। ଖରିଫ ଧାନ ପ୍ରାୟ ହୁଏନାହିଁ। ରବିଧାନକୁ ଭରସା। ସରକାରୀ ଡିପୋରୁ ଲଲାଟ ବିହନ କିଣିଲେ। ବିହନରୁ ଗଜା ନାହିଁ। ଗଣମାଧ୍ୟମ ଖବର କଲା। କୃଷିମନ୍ତ୍ରୀ ମାନିଲେ ନାହିଁ। ଫେବୃୟାରୀ-୨, ୨୦୦୯। ଖୋଦ କୃଷିମନ୍ତ୍ରୀ ସ୍ଥାନୀୟ ତଦନ୍ତ କରିବାକୁ ଗଲେ। ଚାଷୀମାନେ ବିହନ ବସ୍ତା ଗଦା କରିଦେଲେ। ସତରେ ତ ଏ ବିହନ ପାଣିମଡ଼ା ଧାନ'। ପାଖରେ କୃଷି ଉପନିର୍ଦ୍ଦେଶକ ଥିଲେ। ପଚାରିଲେ 'ଏ ବିହନ କ'ଣ। 'ଆଜ୍ଞା ପାଣିମଡ଼ା ଧାନ ତ ଗଜା ହେବନାହିଁ।' ଉପନିର୍ଦ୍ଦେଶକଙ୍କ ଉତ୍ତର। ଗଜା ହେଉ ନଥିବା ବିହନ ଦେଖି କୃଷିମନ୍ତ୍ରୀଙ୍କ ମୁହଁ କଳାପଡ଼ିଗଲା- (ସମାଜ:ଫେବୃୟାରୀ-୩, ୨୦୦୯)

୬- ନଳିତା ଖରିଫ ଋତୁ ଫସଲ। ୨୦୦୯ଖରିଫର ବିହାର ଓ ପଶ୍ଚିମବଙ୍ଗର ଝୋଟଚାଷୀମାନେ ମହାରାଷ୍ଟ୍ର ରାଜ୍ୟବିହନ ନିଗମର ଝୋଟବିହନ ବୁଣିଲେ। ଆନ୍ଧ୍ରପ୍ରଦେଶ ବିହନ ପଞ୍ଜୀକରଣ ସଂସ୍ଥା ଏହି ବିହନକୁ ପଞ୍ଜିକୃତ କରିଥିଲେ। ୨୫ପ୍ରତିଶତରୁ କମ୍ ଗଛ ହେଲା। ବିଚରା ଚାଷୀର କ୍ଷତି କେତେ? (Jute Growers Raise Seed Alarm Seed in WB and Bihar fail to Germinate-Economic Times-27.4.2009)

ପାରମ୍ପରିକ ମଞ୍ଜି ବା ବିହନକୁ ଅଦରକାରୀ କହି ଅଧିକ ଅମଳକ୍ଷମ ହାଇବ୍ରିଡ଼ ଜି.ଏମ୍. ବିହନ ବେପାର ହେଲା। ପନିପରିବା ଚାଷୀ ତ' ଚାଷ ଛାଡ଼ିବାକୁ ବସିଲେଣି। ବଜାରରେ ମିଳୁଥିବା ପନିପରିବା ମଞ୍ଜିରୁ ୩୦ରୁ ୪୦ ପ୍ରତିଶତ ଗଛ। ଦ୍ୱିତୀୟ ପିଢ଼ିର ଦାନାକୁ ବିହନ ଆକାରରେ ବିକି କମ୍ପାନୀମାନେ ମାଲାମାଲ୍। ଫଳ ନାହିଁ। ସବୁଜ ବିପ୍ଳବ ସାଙ୍ଗେ ସାଙ୍ଗେ ପନିପରିବାର ହାଇବ୍ରିଡ଼ ବିହନ ବଜାରକୁ ଆସିଛି। ଚାଷୀହାତରେ ଆଉ ଦେଶୀ ବିହନ ନାହିଁ। ବିକଳ୍ପ ତ ନାହିଁ। ଚାଷୀ ନିଲଠା। ହିସାବ କିତାବ ଜାଣେନି। ବଜାରରୁ ବିହନ କିଣି ହିନସ୍ତା। ଖଜୁରୀଗଛର କିସ ବାହୁନିବି ମୂଳରୁ ପାହାଚ ପାହାଚ। ତା'ର ଚାରା ନାହିଁ। ସେ କେବଳ ଆତ୍ମହତ୍ୟା କରିପାରିବ। ନିମ୍ନମାନର ବିହନ ଭାରତବର୍ଷରେ ଏକଲକ୍ଷ ୩୦ ହଜାର କୃଷକ ଆତ୍ମହତ୍ୟାର ଏକ ପ୍ରମୁଖ କାରଣ। ହାତରୁ ଛାଡ଼ିଲେ ଅଣହାତ। 'ଦେଶୀ ବିହନକୁ ତ ହାତଛଡ଼ା କଲ। ଏବେ ବୁଝ।' ଗାଁର ୬୦/୭୦ବର୍ଷର ବୁଢ଼ାବୁଢ଼ୀ ଚାଷୀ, ବୁଢ଼ୀମାନେ ପୁଅ ନାତିଙ୍କୁ ଏବେ ଝିଙ୍ଗାସୁଛନ୍ତି।' ଏବେ ବୁଝ। ଆମ କଥା ତ କାନକୁ ନେଲନି। ଦିନରେ ସ୍ୱପ୍ନ ଦେଖିଲ। କମ୍ପାନୀ ବିହନ ବୁଣିଲ।' ଗାଁର ୬୦/୭୦ବର୍ଷର ବୁଢ଼ାମାନେ ଜଣେ ଜଣେ କୃଷିବିଜ୍ଞାନୀ କହିଲେ ଅତ୍ୟୁକ୍ତି ହେବନାହିଁ। ରାଜ୍ୟ ସରକାର ସେମାନଙ୍କୁ ବିଶ୍ୱାସକୁ ନିଅନ୍ତା କି। ଦେଶୀବିହନ ଖୋଜନ୍ତା କି। ଏଇମାତ୍ର ଖବର ଜଣାପଡୁଛି ଓଡ଼ିଶା ସରକାର ସମସ୍ତ କୃଷି ଅଧିକାରୀଙ୍କୁ କୃଷିକ୍ଷେତ୍ରରେ ଜ୍ଞାନକୌଶଳ ଶିକ୍ଷା କରିବା ପାଇଁ ହାଇଦ୍ରାବାଦର ରାଜିନ୍ଦରନଗରଠାରେ କୃଷି ଅଧିକାରୀଙ୍କ ଦକ୍ଷତାବୃଦ୍ଧି ବୁଝାମଣା ପତ୍ର ସ୍ୱାକ୍ଷର କରିଛନ୍ତି। (ସମାଜ ତା୧୪.୪.୨୦୦୯) ଜି.ଏମ୍. ବିହନ ପ୍ରଚଳନ, ରାସାୟନିକ ସାର ଓ କୀଟନାଶକର ବହୁଳ ବ୍ୟବହାର ଏ ଚୁକ୍ତିର ସାରମର୍ମ। ଓଡ଼ିଶାରେ 'ଆତ୍ମା' ଏହି କୃଷକମାରଣ କାର୍ଯ୍ୟକ୍ରମ ରୂପାୟନ କରୁଛି।

ଆମ ରାଜ୍ୟ ସରକାର ଚାଷୀମାନଙ୍କୁ ଭୁଲାଇବା ପାଇଁ ଭଣ୍ଡାଇବା ପାଇଁ, ମନେଇବା ପାଇଁ ଏବେ ଅକ୍ଷୟତୃତୀୟାରେ ସରକାରୀ ବିହନ ଅନୁକୂଳ ପର୍ବପାଳନ କରୁଛନ୍ତି। ଏହାକୁ

'କୃଷକ ଦିବସ' ନାମ ଦେଇଛନ୍ତି। ମୁଖ୍ୟ ଆଭିମୁଖ୍ୟ କମ୍ପାନୀମାନଙ୍କ ପାଇଁ ଓଡ଼ିଶାର କୃଷିକୁ ଉନ୍ମୁକ୍ତ କରିଦେବା।

## କୃଷକ ଦିବସର ମୁଖ୍ୟ ଆକର୍ଷଣ

୧- ***ଉନ୍ନତ ବିହନ ବ୍ୟବହାର***- ଉନ୍ନତ ବିହନ କହିଲେ ହାଇବ୍ରିଡ଼ ଓ ଜି.ଏମ୍.କୁ ବୁଝାଯାଏ। ବହୁରାଷ୍ଟ୍ରୀୟ କମ୍ପାନୀ ମାନଙ୍କର ବିହନ।ଫଳାଫଳ ସଂକ୍ଷେପରେ ଆଗରୁ ପଢ଼ିଲେ।

୨- ***ଫସଲ ପରିବର୍ତ୍ତନ***- ଜାଟ୍ରୋଫା (ବାଇଗବା) ଚାଷ (ଜୈବଇନ୍ଧନ ପାଇଁ) କପାଚାଷ, ଉଦ୍ୟାନକୃଷି, ଫୁଲଚାଷ। ଅର୍ଥକାରୀ ଫସଲ। ଚାଷୀ ଲକ୍ଷପତି ହୋଇଯିବେ। ଗୁମରକଥା ଅନ୍ୟ ପ୍ରକାର। ଠିକାଚାଷ, କମ୍ପାନୀଚାଷକୁ ପ୍ରୋତ୍ସାହନ। କୃଷିକ୍ଷେତ୍ରରେ ଜଳଯୋଗାଣକୁ ନିୟନ୍ତ୍ରଣ କରି ଶିଳ୍ପକୁ ଯୋଗାଇବା, ଖାଦ୍ୟଶସ୍ୟ ବଦଳରେ ଫୁଲଚାଷ- ଖାଦ୍ୟ ନିରାପତ୍ତା ପାଇଁ କେତେ ଯଥାର୍ଥ। ଆମ ରାଜ୍ୟରେ ଖାଦ୍ୟ ନିରାପତ୍ତା ମିଶନ୍ କାମ କରୁଥିବା ଶୁଣାଯାଏ।

୩- ***ଜଳ ପରିଚାଳନା***-କୃଷିକୁ ଏଣିକି କମ୍ ପାଣି ଦିଆଯିବ। କଳକାରଖାନା, ଗଲ୍ଫ୍ ଖେଳ, ୱାଲର୍ଡ଼ ଓସନ ଭଳି ଜଳକ୍ରୀଡ଼ା ଓ ସହରର ଫୁକାର ପାଇଁ ପର୍ଯ୍ୟାପ୍ତ ପାଣି ଯୋଗାଇବା ଆମ ସରକାରଙ୍କର ଲକ୍ଷ୍ୟ। ସେଥିପାଇଁ 'ଶ୍ରୀ ପଦ୍ଧତି ଧାନଚାଷ'ରେ ୫୦ପ୍ରତିଶତ ଜଳ ଆବଶ୍ୟକ କଥା ଆତ୍ମା ମାଧମରେ ପ୍ରଚାର ଚାଲିଛି। ଭବିଷ୍ୟତରେ କେନାଲ ଜଳଯୋଗାଣ ସଙ୍କୁଚିତ କରିବା ପାଇଁ ଏହା ଅଭିନବ ଉଦ୍ୟମ।

୪- ***ଯାନ୍ତ୍ରିକ କୃଷି ପ୍ରବର୍ତ୍ତନ***- ଟ୍ରାକ୍ଟର, ହାର୍ଭେଷ୍ଟର, ସ୍ପ୍ରେୟର, କୀଟନାଶକ ସିଞ୍ଚନ ପାଇଁ ବିରାଟକାୟ ସ୍ପ୍ରେୟର ଇତ୍ୟାଦିର ବିକ୍ରି ବଢ଼ାଇବା ଏହାର ଗୋଟିଏ ଲକ୍ଷ୍ୟ। ବୃହତ୍ତର ଲକ୍ଷ୍ୟ ଯାନ୍ତ୍ରିକ କୃଷି ତ୍ୱରାନ୍ୱିତ କରାଗଲେ ଛୋଟ ଓ ନାମମାତ୍ର ଚାଷୀ ଚାଷଛାଡ଼ିବେ। ଠିକାଚାଷ ବା କମ୍ପାନୀଚାଷର ରାଜ୍ ଚାଲିବ। ଗାଁରୁ ସହରକୁ ଚାଷୀ, ମୂଲିଆଙ୍କ ଧାଡ଼ି ଲାଗିବ। ବସ୍ତି ଖୋଜିବେ। ଆମ ସରକାର କୁହନ୍ତି ୭୦/୮୦ପ୍ରତିଶତ ଲୋକ କୃଷିରେ କ'ଣ କରିବେ ? ଆମେରିକାରେ ତ ମାତ୍ର ୨ପ୍ରତିଶତ କୃଷି ବ୍ୟବସାୟ କରନ୍ତି। ତେଣୁ ଗାଁରୁ ଲୋକ ନିକଲିବାକୁ ହେବ। ସହରରେ ଧନ୍ଦାକରିବେ। ଏବେ ତ ସହରରୁ ଲକ୍ଷ ଲକ୍ଷ ସଂଖ୍ୟା ଯୁବକ ଚାକିରୀ ହରାଇ ଗାଁକୁ ଫେରୁଛନ୍ତି, ଜାଣିଲେ ଆଶ୍ଚର୍ଯ୍ୟ ଲାଗିପାରେ। ଜାପାନରେ ୨୦-୩୫ବର୍ଷର ଯୁବକମାନେ ଚାକିରି ହରାଇ ଏବେ କୃଷିକ୍ଷେତ୍ରକୁ ଫେରିଲେଣି। ଏମ୍.ବି.ଏ. ପଢ଼ା, ଇଞ୍ଜିନିୟରିଂ ପଢ଼ା ଯୁବକମାନେ ଗାଁ ପୁରୁଖା ଚାଷୀଠାରୁ ହଳ, ବେଉଷଣ, ଖୁଆଁ, ବଛା ଶିଖୁଛନ୍ତି। ଦିନ

ମଜୁରିଆ କାମ କରୁଛନ୍ତି। (For young Japanese, its back to the farm- The Hindu, April 17, 2009)

୫- ***କୃଷିକ୍ଷେତ୍ରରେ ନୂତନ ଜ୍ଞାନକୌଶଳ ପ୍ରୟୋଗ***-ଜି.ଏମ୍. ବିହନ ବ୍ୟବହାର, କୃଷିରେ ଅଧିକ ରାସାୟନିକ ସାର ଓ କୀଟନାଶକ ପ୍ରୟୋଗ। ଠିକାଚାଷ, ଟିସୁକଲଚର କଦଳୀ ବ୍ୟବହାର ଭଳି କମ୍ପାନୀସ୍ୱାର୍ଥ ସମ୍ବଳିତ କାର୍ଯ୍ୟକ୍ରମର ସଫଳ ରୂପାୟନ ଆମ କୃଷିବିଭାଗ ଅଗ୍ରାଧିକାର ଦିଏ।

କୃଷକ ଦିବସରେ କିଛି ଅଣଚାଷୀ, ରାଜନୈତିକ କର୍ମୀ ଏକାଠି ହୁଅନ୍ତି। ହଳକୁ ୪୦୦/୫୦୦ଟଙ୍କା ଖର୍ଚ୍ଚରେ ୨/୩ ହଳ ବଳଦ ଖୋଜା ହୋଇ ଆସନ୍ତି। ମୁଖ୍ୟମନ୍ତ୍ରୀ ବା ଅନ୍ୟାନ୍ୟ ଅଧିକାରୀମାନେ ଭାଷଣ କରନ୍ତି। ଜଣେ ହେଲେ ଦେଶୀବିହନ, ହଳବଳଦର ଆବଶ୍ୟକତା ବିଷୟରେ କୁହନ୍ତି ନାହିଁ। ଚଳିତବର୍ଷ କୃଷିବିଭାଗର ସଫଳ କାହାଣୀରେ ସ୍ଥାନପାଏ ୨୫୦୦ରୁ ଊର୍ଦ୍ଧ୍ୱ ଟ୍ରାକ୍ଟର ବିକ୍ରି ଓ ଅନ୍ୟାନ୍ୟ କୃଷି ଯନ୍ତ୍ରପାତି କୃଷି ବିଭାଗରେ ରିହାତିରେ ବିକ୍ରି। ବେଲ ପାଚିଲେ କାଉର କି ଯାଏ। ହିସାବରୁ ଜଣାଯାଏ ରାଜ୍ୟ କୃଷିବିଭାଗ ଏହିସବୁ ଯନ୍ତ୍ରପାତି ବିକ୍ରିରେ ପ୍ରାୟ ୪୦କୋଟି ଟଙ୍କା ରିହାତି ଦେଇଛନ୍ତି। ମାରିନେଲେ ମହାପାତ୍ରେ ଚାହିଁଛନ୍ତି ଜଳକା। ବଡ଼ଚାଷୀ, ଠିକାଦାର, ବେପାରୀ ମାନେ ଏସବୁର ମୁଖ୍ୟ କ୍ରେତା। ଛୋଟ ଓ ନାମମାତ୍ର ଚାଷୀ ବା ଭାଗଚାଷୀଙ୍କ ପାଇଁ ଏ ଯନ୍ତ୍ରପାତି ଅପହଞ୍ଚ। ଏଗୁଡ଼ିକର ଗାଁ ଟ୍ରକ୍‌ଭାବେ ମାଲ ବୋହିବା ହିଁ ମୁଖ୍ୟ ବ୍ୟବସାୟ। ଯଦି ସରକାରଙ୍କ ଛୋଟ ଚାଷୀଙ୍କ ପାଇଁ ଦରଦ ଥାନ୍ତା, ଏତିକି ପଇସାରେ ୪୦ହଜାର ହଳବଳଦ କିଣି ଛୋଟ ଓ ନାମମାତ୍ର ଚାଷୀଙ୍କୁ ଯୋଗାଇ ଦିଆଯାଇପାରିଥାନ୍ତା। ଚାଷୀକୁ ସ୍ୱାବଲମ୍ବୀ କରିବାକୁ ହେଲେ ଏହାହିଁ ଏକମାତ୍ର ରାସ୍ତା। ୧୯୫୦କୁ ଆମଦେଶରେ ୫୦ଟି ଟ୍ରାକ୍ଟର ଥିଲା। ୨୦୦୨କୁ ଏହି ସଂଖ୍ୟା ୨ନିୟୁତ ୬ଲକ୍ଷ ୩୦ହଜାରରେ ପହଞ୍ଚିଥିଲା। (Survey of India Agri-culture-2002-Hindu)। ଆଜି ଦିନରେ ଏହି ସଂଖ୍ୟା ୪ନିୟୁତ ଟପିବଣି। ହଳେ ବଳଦ ହେଲେ କେଉଁ ରାଜ୍ୟରେ ଚାଷୀକୁ ଯୋଗାଇ ଦିଆଯାଇଛି କି ?

ହାଇବ୍ରିଡ଼ ଓ ଜି.ଏମ୍. ବିହନ ଚାଷ ଓ ଚାଷୀର ସର୍ବନାଶ କରୁଛି, କରିବ। ଏହା ଦ୍ୱାରା ମୁଖ୍ୟତଃ ପରିବେଶ ଧ୍ୱଂସ ପାଇବ। ପାରମ୍ପରିକ ବିହନ କିସମଗୁଡ଼ିକ ସଂକ୍ରମିତ ହୋଇ ଗୁଣମାନ ହରାଇବେ। ଚାଷ ବ୍ୟୟବହୁଳ ହେବ। ରାସାୟନିକ ସାର ଓ କୀଟନାଶକର ଅଧିକ ବ୍ୟବହାର ଦ୍ୱାରା, ଜଳ, ଖାଦ୍ୟ ଓ ବାୟୁମଣ୍ଡଳରେ ବିଷକ୍ରିୟାର ପ୍ରଭାବ ପଡ଼ିବ। ପ୍ରାଣୀ ଓ ମଣିଷର ସ୍ୱାସ୍ଥ୍ୟଉପରେ କୁପ୍ରଭାବ ପକାଇବ। ଏସବୁ କ୍ଷତିପରେ ମଧ କମ୍ପାନୀ

କହି ବୁଲୁଥିବା ଅଧିକ ଉତ୍ପାଦନ ହେଉନାହିଁ ଓ ଆଗକୁ ହେବନାହିଁ। ଓଡ଼ିଶା ମରୁଭୂମିରେ ପରିଣତ ହେବାର ଆଶଙ୍କାକୁ ଏଡ଼ାଇ ଦିଆଯାଇ ପାରିବ ନାହିଁ।

ଅନ୍ୟପକ୍ଷରେ ଦେଶୀ ବିହନ ଯେ ନିରନ୍ତର କୃଷି ପାଇଁ ଅପରିହାର୍ଯ୍ୟ ଏବଂ ଏହା କ୍ରମାଗତ ଭାବେ ଉତ୍ପାଦନ କୃଷି କରିବାରେ ସଫଳ ହୋଇପାରୁଥିଲା ଓ ଆଗିଲା ଦିନରେ ଉତ୍ପାଦନ କୃଷି ସମ୍ଭବ ହେବ, ଏହାର କେତୋଟି ତଥ୍ୟ ଏଠାରେ ଉପସ୍ଥାପନ କରାଯାଉଛି। ୧୯୫୯ରୁ ୧୯୬୭ପର୍ଯ୍ୟନ୍ତ ପୃଥିବୀ ପ୍ରସିଦ୍ଧ ଧାନବିଜ୍ଞାନୀ ଡଃ ଆର୍.ଏଚ୍.ରିଚାରିୟା କଟକସ୍ଥିତ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକ ଥିଲେ। ସେ ସମୟରେ ଓଡ଼ିଶା ଓ ଛତିଶଗଡ଼ରୁ ସେ ୪୪୫ଟି କିସମର ଅଧିକ ଅମଳକ୍ଷମ ବିହନ (ଚାଷୀମାନଙ୍କଠାରୁ ତଥ୍ୟ ସଂଗ୍ରହ କରି) ସଂଗ୍ରହ କରି କେତେକ ଆଗୁଆ ଧାନଚାଷୀଙ୍କ କ୍ଷେତରେ ପରୀକ୍ଷା କରିଥିଲେ। ଆମେ ତ ଜାଣିଛେ ଦେଶୀଧାନ ପାଇଁ ରାସାୟନିକ ସାରର ଆବଶ୍ୟକତା ନାହିଁ। ରୋଗପୋକ ଏହିସବୁ କିସମକୁ ଆକ୍ରାନ୍ତ କରେନାହିଁ। ଖତ ମାଟିକରି ଚାଷ କରାଯାଏ। କ୍ଷେତ୍ର ପରୀକ୍ଷା ବିବରଣୀ ଅନୁସାରେ ଏହିସବୁ କିସମ ଏକର ପ୍ରତି ୪ଟନରୁ ୭ଟନ ପର୍ଯ୍ୟନ୍ତ ଉତ୍ପାଦନ ହେଉଥିବା ଜଣାପଡ଼ିଛି। (The Tribune - Monday, Oct 16, 2000, Chandigarh) ଦେଶୀବିହନରୁ ହେକ୍ଟର ପ୍ରତି ୬କ୍ୱିଣ୍ଟାଲ ଫଳୁଥିବା ପୁରୀଜିଲ୍ଲା ଗୋପବ୍ଲକ୍‌ର ଜଣେ ବୁଢ଼ାଙ୍କଠାରୁ ଆମେ ବୁଝିଛୁ। ତାମିଲନାଡୁର ତ୍ରିଚିନାପଲ୍ଲୀ(ତ୍ରିଚି)ରେ ହେକ୍ଟର ପ୍ରତି ୧୨ଟନ୍ ଧାନ ଉତ୍ପାଦନ ହେଉଥିବା ୧୮୮୨ଜିଲ୍ଲା ଗେଜେଟରେ ଉଲ୍ଲେଖ ଅଛି। ଆମ ସରକାର ହୁଏତ ବୁଝିପାରିବେ କ୍ୟୁବାରେ ଜୈବଚାଷ ହିଁ ଏକମାତ୍ର କୃଷିପ୍ରଣାଳୀ। ସେଠାରେ ଦେଶୀଧାନରୁ 'ଶ୍ରୀ'ପଦ୍ଧତିରେ ହେକ୍ଟରକୁ ୧୭କଣ୍ଟାଲ ଧାନ ଅମଳ ହୋଇପାରୁଛି। ଜମିରେ ହ୍ୟୁମସ୍ (ଖତିରା)ଅଂଶ ସମତୁଲ ରଖିପାରିଲେ ଉତ୍ପାଦନ ସ୍ଥିର ରହିବ ବା ବଢ଼ିବି ପାରିବ। ଏହା ବିଜ୍ଞାନସମ୍ମତ।

ଆମ କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କ ସମସ୍ତ ପ୍ରଚାର, ପ୍ରସାର ଓ କାର୍ଯ୍ୟକ୍ରମ ସତ୍ତ୍ୱେ ଭାରତର ହାରାହାରି ଧାନ ଉତ୍ପାଦନ ହେକ୍ଟରକୁ ୨.୧ଏବଂ ଓଡ଼ିଶାରେ ଏହି ହାର ୧.୫ମାତ୍ର। ବାର୍ଷିକ କୃଷି ଅଭିବୃଦ୍ଧି ହାର ୪ଥିଲା ବେଳେ କେନ୍ଦ୍ରରେ ଏହା ୨.୩ ଓ ଓଡ଼ିଶାରେ ୧.୮। ୨୦୦୪ଦ୍ୱିତୀୟ ଆନ୍ତର୍ଜାତିକ ଧାନବର୍ଷ ଠାରୁ ସ୍ୱାମୀନାଥନ କହିଚାଲିଛନ୍ତି ସବୁଜ ବିପ୍ଳବର ଉଷ୍ଣତା ଆଉ ନାହିଁ। ଏଣିକି ଜି.ଏମ୍. ବା ଗୁଣସୂତ୍ର ପରିବର୍ତ୍ତିତ ବିହନର ବେଳ ଆସିଲା। ମନସାଣ୍ଟୋ ଓ ସିଞ୍ଜେଣ୍ଟା କମ୍ପାନୀ ସୁବର୍ଣ୍ଣ ଧାନ (Golden Rice) ବିହନ ବଜାରକୁ ଛାଡ଼ିଲେଣି। ଏହା ଅଧିକ ଫଳିବ। ପୁଷ୍ଟିହୀନତା ଓ ଅନ୍ଧତ୍ୱ ଦୂରକରିବ। କମ୍ପାନୀପାଇଁ

ସରକାରଙ୍କ ଦଲାଲୀ। ସାଂସଦ, ମନ୍ତ୍ରୀ, ରାଷ୍ଟ୍ରମୁଖ୍ୟ, ବୈଜ୍ଞାନିକ ଓ ପ୍ରଶାସନିକ ଅଧିକାରୀମାନଙ୍କୁ ମନେଇବା ପାଇଁ ଏହି ବିହନରାକ୍ଷସମାନେ ପର୍ଯ୍ୟାପ୍ତ ଅର୍ଥ ଖର୍ଚ୍ଚ କରିଥାନ୍ତି। କୃଷିକ୍ଷେତ୍ରରେ ବିହନ ବିବିଧତା ଲୋପ ପାଇଁ ଟଙ୍କା ପ୍ରଧାନ ଆୟୁଧ ହୋଇଛି।

ଆମ ରାଜ୍ୟରେ ଶତାଧିକ ବହୁରାଷ୍ଟ୍ରୀୟ କମ୍ପାନୀ କୃଷିକୁ ପ୍ରଭାବିତ କରିବା ଆରମ୍ଭ କରିଦେଇଛନ୍ତି। ଭାରତ ସରକାର ବି ୨୦୦୪ମସିହାରୁ ସଂସଦରେ ନୂଆବିହନ ବିଲ୍ ପେସ୍ କରିଛନ୍ତି। ଏହା ଆଇନରେ ପରିଣତ ହୋଇଗଲେ ଦେଶୀ ବା ପାରମ୍ପରିକ ବିହନ ଯେଉଁଠି ବି କାଁ ଭାଁ ଚାଷୀମାନେ ବଞ୍ଚାଇ ରଖିଛନ୍ତି, ସେ ସବୁର ବ୍ୟବହାର ସମ୍ପୂର୍ଣ୍ଣ ବେଆଇନ ହୋଇଯିବ। ଚାଷୀକୁ ସେଥିପାଇଁ ଜେଲ୍ ଜୋରିମାନା ବି ଭୋଗିବାକୁ ପଡ଼ିବ। ଆମ ଚାଷୀ କ'ଣ କାନାଡ଼ାର କାନୋଲା (ଏକପ୍ରକାର ସୋରିଷ) ଚାଷୀ ସୋମେକାର ହୋଇଛନ୍ତି ଯେ ମନ୍‌ସାଣ୍ଟୋ ସହିତ, କୋର୍ଟରେ ଲଢ଼େଇକରି ୧୫ବର୍ଷ ପରେ ନ୍ୟାୟ ପାଇବେ।

ଜି.ଏମ୍. ବିହନ ଉପରେ ଅଙ୍କୁଶ ଲଗାଇବା ପାଇଁ କେନ୍ଦ୍ରରେ ଜି.ଏମ୍. ଆପ୍ରୁଭାଲ କମିଟିଟିଏ ଅଛି। କମ୍ପାନୀମାନେ ବିଟି ବାଇଗଣ, ବିଟି ଧାନ ଭଳି ଜି.ଏମ୍. ବିହନ ଭାରତରେ ପ୍ରଚଳନ କରିବାପାଇଁ ଚେଷ୍ଟା କରୁଥିଲା ବେଳେ ବେଳେବେଳେ ଏହି ଅଙ୍କୁଶ ଲଗାଇଥାନ୍ତି। ୨୦୦୮ରେ କମ୍ପାନୀମାନଙ୍କୁ ସୁହାଇଲା ଭଳି ଆମ ସଂସଦରେ ଆଉ ଗୋଟିଏ ବିଲ୍ ଆସିଛି। ଜେନେଟିକ୍ ଇଞ୍ଜିନିୟରିଂ ରେଗୁଲେଟରୀ ଅଥରିଟି। ଏହି ବିଲ୍ ପାସ୍ ହୋଇଗଲେ ଭାରତର ସର୍ବୋଚ୍ଚ ନ୍ୟାୟାଳୟ ବି ଚୁପ୍ ହୋଇଯିବେ। ବହୁରାଷ୍ଟ୍ରୀୟ କମ୍ପାନୀମାନେ ନିଜ ନିଜର ଘରୋଇ ଗବେଷଣା ଓ ପରୀକ୍ଷା କେନ୍ଦ୍ରମାନ ଆମ ଦେଶରେ ପ୍ରତିଷ୍ଠା କଲେ। ସେମାନଙ୍କର ଫଳାଫଳ ଆମ ସରକାର ଗ୍ରହଣ କରିବାର ସରକାରୀ ଆଦେଶନାମା ମଧ୍ୟ ହାସଲ କରିଛନ୍ତି। ସ୍ୱାମୀନାଥନଙ୍କ ପରାମର୍ଶରେ ଆମ ଦେଶରେ ଜିନ୍ ବିପ୍ଳବ ବା ଜି.ଏମ୍. ବିହନ ପ୍ରଚଳନ ପାଇଁ ପଥ ପରିଷ୍କାର ହୋଇଯାଉଛି।

ଜି.ଏମ୍. ବିହନ ପ୍ରବର୍ତ୍ତନ ପାଇଁ କମ୍ପାନୀମାନଙ୍କର ପ୍ରାଣମୂର୍ଚ୍ଛା ଉଦ୍ୟମର କେତେକ ତଥ୍ୟ ଏଠାରେ ଉଲ୍ଲେଖ କରିବା।

୧- ଜୁଲାଇ, ୨୦୦୯ବେଳକୁ ବଜାରରେ ପ୍ରଥମ ଜି.ଏମ୍. ପରିବା ବିଟି ବାଇଗଣ ବିକ୍ରି ହେବ। ଚାଷୀ ବା ଖାଉଟିଙ୍କ ମତାମତ ସରକାର ଚାହିଁଛନ୍ତି କି ? ଦୁଇଜଣ ବୈଜ୍ଞାନିକ ସେରାଲିନ, ବାୟୋକେମିଷ୍ଟି ଏବଂ କାରମେନ, ସ୍ୱାସ୍ଥ୍ୟ ଓ ଖାଦ୍ୟ ସମ୍ପର୍କିତ ବୈଜ୍ଞାନିକ ସେମାନଙ୍କ ରିପୋର୍ଟରେ ମାହିକୋର ବିଟି ବାଇଗଣ ପରୀକ୍ଷା ରିପୋର୍ଟକୁ ଦୃଢ଼ଭାବେ ବିରୋଧ କରିଛନ୍ତି। (DTE April 1-15)

୨- କଲିକତା ବିଶ୍ୱବିଦ୍ୟାଳୟ ଓ ମନ୍‌ସାଣ୍ଟୋ କମ୍ପାନୀ ମଧ୍ୟରେ ଜି.ଏମ୍. ବିହନ ନେଇ ଯେଉଁ ମିଳିତ ଗବେଷଣା ଚାଲିଛି, ସେଥିରେ ମନ୍‌ସାଣ୍ଟୋର ଜି.ଏମ୍. ବିହନ ସପକ୍ଷରେ ମତ ଆସିଛି। ଏହା ବାମପନ୍ଥୀମାନଙ୍କର ମନ୍‌ସାଣ୍ଟୋ ପ୍ରୀତିର ନମୁନା (Monsanto Promotes Hybrid Crops - ET26, April, 2009) I

୩- ଭାରତବର୍ଷରେ ଗହମ ଉତ୍ପାଦନ ଗତ ୧୦ବର୍ଷ ହେଲା ହେକ୍ଟର ପ୍ରତି ୨.୭ଟନ୍‌ରେ ସୀମିତ ଅଛି। ଗହମରେ ଆତ୍ମନିର୍ଭରଶୀଳ ହେବାକୁ ହେଲେ ଜି.ଏମ୍. ବିହନ ବ୍ୟବହାର ଜରୁରୀ-ଏକଥା କହିଛନ୍ତି ମେକ୍ସିକୋରେ ଅବସ୍ଥିତ ଆନ୍ତର୍ଜାତିକ ମକା ଓ ଗହମ ଉତ୍ପାଦନ କେନ୍ଦ୍ରର ବୈଜ୍ଞାନିକ ମି.ଲୁମ୍ପକିନ। (Expert Suggests use of GM seeds to raise wheat yield-ET-23April, 2009)

୪- ମାହିକୋର ସାଧାରଣ ପରିଚାଳକ ଏମ୍.କେ. ଶର୍ମା ସାମ୍ବାଦିକ ସମ୍ମିଳନୀରେ ଘୋଷଣା କରିଛନ୍ତି ବିଟି ବାଇଗଣ ସମାନ ପୁଷ୍ଟିକାରକ ଏବଂ ଏଥିଯୋଗୁଁ ସ୍ୱାସ୍ଥ୍ୟହାନୀର ଆଶଙ୍କା ହିଁ ନାହିଁ। (ସମ୍ବାଦ-୧୮ଏପ୍ରିଲ,୨୦୦୯)

୫- ମନ୍‌ସାଣ୍ଟୋ କମ୍ପାନୀ ଜି.ଏମ୍. ବିହନର ପ୍ରଚାର ପ୍ରସାର ପାଇଁ ଯୁବ ବୈଜ୍ଞାନିକମାନଙ୍କୁ ୫ବର୍ଷିଆ ଫେଲୋସିପ୍ ପାଇଁ ଦରଖାସ୍ତ ଆହ୍ୱାନ କରିଛନ୍ତି। ଏହି ଛାତ୍ରମାନେ ୫ବର୍ଷ ପାଇଁ ଜି.ଏମ୍. ଧାନବିହନ ଉପରେ ଗବେଷଣା କରିବେ। ଏଥିପାଇଁ କମ୍ପାନୀ ୫୦କୋଟି ଟଙ୍କା ଖର୍ଚ୍ଚ ଅଟକଳ କରିଛି। (Monsanto Programme launched- Hyderabad- TheHindu, 25.4.2009)

ଜି.ଏମ୍.ବିହନର ବିନାଶକାରୀ ଗୁଣ ଉପରେ ମଧ୍ୟ ଅନୁରୂପ ମତମାନ ଘୋଷଣା କରାଯାଇଛି।

୧- ବିଟି ବାଇଗଣର ପରିବେଶ, ସ୍ୱାସ୍ଥ୍ୟ, ବିହନ ବିବିଧତା ଉପରେ କିପ୍ରକାର ପ୍ରଭାବ ଜାଣିବା ପାଇଁ ହାଇଦ୍ରାବାଦର ୫୦୦ଖାଉଟୀ ଓ ଚାଷୀଙ୍କୁ ସାକ୍ଷାତ କରାଯାଇଥିଲା। ମାତ୍ର ୮.୩ପ୍ରତିଶତ ଜି.ଏମ୍. ସମ୍ପର୍କରେ ଅଳ୍ପକିଛି ଜାଣିଥିବା ପ୍ରକାଶ କରିଥିଲେ। (NIE-April-25, 2009)

୨- ଜେନେଟିକ ମଡ଼ିଫାଏଡ଼ ବାଇଗଣ, ଆଳୁ, ମଟର, ସୋୟାବିନ, ମକା ସ୍ୱାସ୍ଥ୍ୟପାଇଁ ବିପଦ। ଆମେରିକାର ଇନ୍‌ଷ୍ଟିଚ୍ୟୁଟ ଫର୍ ରେସ୍‌ପନ୍‌ସିବଲ ଟେକ୍ନୋଲଜିର ନିର୍ଦ୍ଦେଶକ ଜେଫ୍ରି ସ୍ମିଥ୍ ମତପୋଷଣ କରନ୍ତି। (Genetically Modified Foods a Health Hazard-The Hindu, Jan,13,2009, Hyderabad)

୩- ବିଟି ବାଇଗଣକୁ ବିରୋଧ କରି ରଏଲ ସୋସାଇଟୀ, ବେଲଜିୟମର ପୂର୍ବତନ ପ୍ରଫେସର କେ.ପି. ପ୍ରଭାକରନ ନାୟର ମତପୋଷଣ କରନ୍ତି କି ବିଟି ବାଇଗଣ ଯୋଗୁଁ ଦେଶୀ ବାଇଗଣ କିସମ ଧ୍ୱଂସ ପାଇଯିବ। ପରିବେଶ ସଂକ୍ରମଣ ହେବ। ସ୍ୱାସ୍ଥ୍ୟହାନୀ ଘଟିବ। (Baigan ki Bartha & GM Band Wagon-NIE, Oct 9, 2009)

୪- ବୈଜ୍ଞାନିକମାନଙ୍କ ମତାମତକୁ ଆଧାର କରି ପ୍ରସିଦ୍ଧ ସିନେମା ପ୍ରଯୋଜକ ମହେଶ ଭଟ୍ଟ ଦେଶସାରା ଯେଉଁ ବୃତ୍ତଚିତ୍ର ପ୍ରଦର୍ଶନ କରିଛନ୍ତି- ତାଙ୍କ ମତରେ ୨୬/୧୧ ମୁମ୍ବାଇ ସନ୍ତ୍ରାସବାଦୀ ଆକ୍ରମଣଠାରୁ ଏହା ଭୟଙ୍କର। (GM Food more dangerous than 26/11-Mahesh Bhatt-March26, 2009, BBSR)

ଭାରତରେ ୪୧ ପ୍ରକାର ଜି.ଏମ୍. ଫସଲର ପରୀକ୍ଷା ପାଇଁ ସରକାର ମଞ୍ଜୁରୀ ଦେଲେଣି। ଚାଷ ଓ ଚାଷୀ ରହିବେ ତ ? ଖାଉଟିଙ୍କ ସ୍ୱାସ୍ଥ୍ୟହାନୀ ଘଟିବ ନାହିଁ ତ ? ଦେଶୀ ବିହନ ବଞ୍ଚିବ ତ ? କମ୍ପାନୀ ବିହନ ବେପାର ଏକଚାଟିଆ କଲେ ଚାଷୀର ବିହନ ଅଧିକାର ଲୋପ ପାଇଯିବ ନାହିଁ କି ? ଆମେରିକା, ବିଲାତ ଭଳି ଦେଶମାନେ ଆମ ଦେଶ ସହିତ ମତପାର୍ଥକ୍ୟରେ ବିହନ ପାଇଁ ବାସନ୍ଦ ବ୍ୟବସ୍ଥା କରିବେ ନାହିଁ କି ? ଜି.ଏମ୍. ବିହନ ତ ଅତ୍ୟନ୍ତ ଅଳ୍ପାୟୁଷ। ଭବିଷ୍ୟତରେ ଏସବୁ ବିହନ ଆଜିର ଅଧିକ ଅମଳକ୍ଷମ ବିହନ ଭଳି ଉତ୍ପାଦନ କ୍ଷମତା ହରାଇବ ନାହିଁ କି? ଏହି ସବୁ ପ୍ରଶ୍ନକୁ ଅନୁଧ୍ୟାନ କଲେ ଆମେ ସିଦ୍ଧାନ୍ତରେ ଉପନୀତ ହେବା ଯେ ଆଗକୁ ବିହନ ସଙ୍କଟ ନିଶ୍ଚିତ। ବିକଳ୍ପ ଚିନ୍ତା ଜରୁରୀ। ପାରମ୍ପରିକ ବିହନ ଓ ପାରମ୍ପରିକ ଚାଷ ଏକମାତ୍ର ଉତ୍ତର। ସରକାର, ବୁଦ୍ଧିଜୀବୀ, ବିଶ୍ୱବିଦ୍ୟାଳୟ ଅଧ୍ୟାପକ, କୃଷି ବିଶ୍ୱବିଦ୍ୟାଳୟ ହାତରେ ବିଚାର। ଲୋକଦେଖାଣିଆ ଅକ୍ଷିମୁଠି ଅନୁକୂଳ ବା କୃଷକଦିବସ ପାଳନ ସମସ୍ୟା ଆଣୁଛି ସିନା, ହାତରୁ ଗଲେ ଅଣହାତ। ବେଳ ଥାଉ ଥାଉ ବାଟ ବାହାର କରିବା ଜରୁରୀ। ବିହନ ସଙ୍କଟରୁ ଦୁର୍ଭିକ୍ଷ। ସମୟ ୨୦୨୦ରୁ ୨୦୨୫। ଭାରତ ବିହନ ଦୁର୍ଭିକ୍ଷର ସମ୍ମୁଖୀନ ହେବାକୁ ଯାଉଛି।

ସବୁଠାରୁ ବିଡ଼ମ୍ବନାର କଥା ଯେ ଆଗକୁ ଆମର ଏତେ ବଡ଼ ଦୁର୍ଦ୍ଦିନ ଆସୁଛି, ଆମେ କେହି ଚିନ୍ତିତ ନୋହୁଁ। ସରକାରଟା ତ' ଆମଠୁଁ ଭୋଟନେଇ ଲାଭଖୋର କମ୍ପାନୀମାନଙ୍କ ପାଇଁ କାମ କରୁଛି। ଆମେ ନିଜେ ଯଦି ନୀରବ ରହିବା, ଆମପାଇଁ କହିବ କିଏ? ଆସୁଥିବା ଦୁର୍ଦ୍ଦିନକୁ ଆମେ ସାମ୍ନା କରିବା କେମିତି ?



# ଦେଶୀ ଗାଈ
# ବନାମ ବିଦେଶୀ ଗାଈ

ଗାଈ ତ' ଗାଈ, ସେଥିରେ ପୁଣି ଦେଶୀ-ବିଦେଶୀ କ'ଣ ? କେତେକ ପାଠକଙ୍କ ମନରେ ଏପରି ପ୍ରଶ୍ନ ଆସିପାରେ । କେବଳ ଗାଈ ଗୋରୁ ନୁହେଁ ; ମଣିଷ, ପ୍ରାଣୀ, ଉଦ୍ଭିଦ ସମସ୍ତଙ୍କ ମଧ୍ୟରେ ଦେଶୀ ବିଦେଶୀ ଫରକ ଦେଖିବାକୁ ମିଳେ । ପୃଥିବୀରେ ଉଦ୍ଭିଦ ଓ ଜୀବଜଗତ ସୃଷ୍ଟି ବିବର୍ତ୍ତନ ପ୍ରକ୍ରିୟାରେ ସମ୍ଭବ ହୋଇଥିବା କଥା ୨୦୦ବର୍ଷ ତଳୁ ଡାରଉଇନ୍ କହିଛନ୍ତି । ଭୌଗଳିକ ସ୍ଥିତି (Geographical Indicator), ପରିବେଶ,ପ୍ରକୃତି ଓ ଜଳବାୟୁ ଦ୍ୱାରା ପ୍ରଭାବିତ ହୋଇ ପୃଥିବୀରେ ଲକ୍ଷ ଲକ୍ଷ ପ୍ରଜାତିର ଉଦ୍ଭିଦ ଓ ପ୍ରାଣୀ ସୃଷ୍ଟି ହୋଇଛନ୍ତି । ଏହାକୁ ପ୍ରାକୃତିକ ନିର୍ବାଚନ (Natural Selection) କୁହାଯାଏ (Origin of Species Darwin) । ପୃଥିବୀର ସବୁ ଦେଶର ମଣିଷ ଗୋଟିଏ ପ୍ରଜାତି । ମାତ୍ର ଦେଶ ଦେଶ ଭେଦରେ ମଣିଷ ମଣିଷ ମଧ୍ୟରେ ଆକାର, ରଙ୍ଗ ଶରୀର ଗଠନରେ ତାରତମ୍ୟ ଦେଖାଯାଏ । ଗୋଟିଏ ଅଞ୍ଚଳର ମଣିଷ ସେ ଅଞ୍ଚଳ ପାଇଁ ଦେଶୀ (Indigenous) । ଅନ୍ୟ ଭୌଗଳିକ ଅଞ୍ଚଳ ପାଇଁ ଏହି ମଣିଷ ବିଦେଶୀ (Foreign) । ଲୋହିତ ଭାରତୀୟମାନେ ଉତ୍ତର ଆମେରିକାର ଆଦିମଣିଷ ଥିଲେ । ସେମାନେ ରଙ୍ଗରେ ଲାଲ୍ । ୟୁରୋପ ଓ ପଶ୍ଚିମ ଏସିଆର ମଣିଷ ଡେଙ୍ଗା, ଗୋରା, ଲମ୍ବାନାକ ହୋଇଥିଲାବେଳେ ଚୀନ୍‌ରେ ଗେଡ଼ା, ହଳଦିଆ ରଙ୍ଗ ଓ ଗୋଲ ମୁହଁ । ଆମ ଭାରତୀୟମାନଙ୍କୁ ଏକ ସମୟରେ ଇଂରେଜମାନେ କଳା (Black) ଏବଂ ଦେଶୀ (Native) କହୁଥିଲେ । ଆଜିବି ସେମାନଙ୍କର ଏହି ପୁରୁଣା ରୋଗ ବେଳେ ବେଳେ ଦେଖାଦେଉଛି । ଅଷ୍ଟ୍ରେଲିଆରେ ଭାରତୀୟମାନଙ୍କ ଉପରେ ଆକ୍ରମଣ ପାଇଁ 'ବର୍ଣ୍ଣବୈଷମ୍ୟ' ଦାୟୀ ।

ମଣିଷ ପରି ଅନ୍ୟାନ୍ୟ ପ୍ରାଣୀମାନଙ୍କ ଶରୀର ଗଠନରେ ସେହପରି ତାରତମ୍ୟ ମଧ ଦେଖାଯାଏ । ମଙ୍ଗୋଲିଆ ଥଣ୍ଡାଦେଶ । ସେଠାରେ ଓଟର ୨ଟି କୁଜ । ଆରବଦେଶ ଓଟର

ଗୋଟିଏ କୁଜ। ୟୁରୋପ ମହାଦେଶ ଶୀତଳ ଜଳବାୟୁ। ସେଠାରେ ଗାଇ ଗୋରୁଙ୍କର ଚୁଳ ନାହିଁ। ମୁଣ୍ଡଠାରୁ ଲାଞ୍ଜପର୍ଯ୍ୟନ୍ତ ପ୍ରାୟ ଡଙ୍ଗା ଆକୃତିର ଗଠନ। କାନ୍ଧ, ବେକ ଓ ପିଠି ସହିତ ମିଶିଯାଇଛି। ଜର୍ସି,ହୋଲଷ୍ଟିନ, ରେଡ଼ଏନ ଏହି ଶ୍ରେଣୀର। ଏମାନେ ଆମେରିକା ପାଇଁ ଦେଶୀ, ଆମ ପାଇଁ ବିଦେଶୀ। ସେହିପରି ମଧ୍ୟ ଏସିଆ ଓ ଭାରତୀୟ ଉପମହାଦେଶର ଗାଈଗୋରୁଙ୍କ କାନ୍ଧରେ ଗୋଟିଏ ଚୁଳ, କାନ୍ଧଠାରୁ ୪ରୁ ୬ଇଞ୍ଚ ଉଚ୍ଚ। ଏମାନେ ଆମ ପାଇଁ ଦେଶୀ ଓ ୟୁରୋପ, ଆମେରିକା ପାଇଁ ବିଦେଶୀ। ଜୀବବିଜ୍ଞାନୀମାନେ ଆମ ଚୁଳଥିବା ଗାଈଗୋରୁଙ୍କୁ ବସ୍‌ଇଣ୍ଡିକସ୍ (Humped Cattle or Zebu Cattle) କହୁଥିଲାବେଳେ ୟୁରୋପ, ଆମେରିକାର ଚୁଳନଥିବା ଗାଈଗୋରୁଙ୍କୁ ବସ୍‌ଟାରୁସ (Bos Taurus-without any hump) ନାମରେ ନାମିତ କରଛନ୍ତି। ଏହି ଉଭୟ କିସମ ବୋଭିଡ଼େ (Bovidae-hollow horn),ଭେନ୍‌ସ୍ୱବସ୍ (Ruminant Qudrapeds) ବଂଶଜ। ଆମେରିକାରେ ଚୁଳଥିବା ଆମ ଭାରତୀୟ କିସମ ଗାଈଗୋରୁଙ୍କୁ ବ୍ରାହ୍ମଣ ଗାଈ (Brahmin Cows) କହିଥାନ୍ତି।

ଚୁଳଥିବା (zebu) ଗାଈ ହୁଅନ୍ତୁ ବା ଚୁଳ ନଥିବା (Bos Taurus)ହୁଅନ୍ତୁ, ଏମାନେ ପ୍ରଥମେ ୟୁରୋପ ଓ ଏସିଆ ମହାଦେଶର ଜଙ୍ଗଲରେ ବୁଲୁଥିଲେ। ଏମାନଙ୍କର ପରିବାରର ନାମ ବୈଜ୍ଞାନିକମାନେ ରଖିଛନ୍ତି ବସ୍ ପ୍ରିମିଜେନସ୍ (Bos Primi-genious), ଏମାନେ ଦୁଷ୍ଟ ପ୍ରକୃତିର ଥିଲେ (Wild and Hostile)। ଜଙ୍ଗଲର ହିଂସ୍ରଜନ୍ତୁମାନଙ୍କ କବଳରୁ ନିଜକୁ ରକ୍ଷାକରିବା ପାଇଁ ଦୁଷ୍ଟ ହେବା ତ ସେମାନଙ୍କ ପାଇଁ ଆବଶ୍ୟକ ଥିଲା। ଏହି ଜଙ୍ଗଲି ଜାତୀୟ ଆଦିମ ଗାଈଗୋରୁ ଏବେ ନିଶ୍ଚିହ୍ନ ହୋଇ ଯାଇଛନ୍ତି।

ଖ୍ରୀଷ୍ଟପୂର୍ବ ୧୫୦୦ବେଳକୁ ମଣିଷ ଏହି ଜଙ୍ଗଲୀ ଗାଈକୁ ଆଣି ଘରେ ପାଳିବା ଆରମ୍ଭ କଲେ। (The Times World History,London, 2. A Text Book of Animal Husbandry, G.C.Banerjee page-679)। ଗାଈ ଗୋରୁ ସୃଷ୍ଟିଠାରୁ ଚୁଳଥିବା (Zebu) ଓ ଚୁଳ ନଥିବା (Taurus) ଦୁଇଟି ପୃଥକ୍ ପୃଥକ୍ କିସମ ଥିଲେ ବା ଚୁଳଗାଈରୁ ଚୁଳନଥିବା ଗାଈ ବା ଚୁଳନଥିବା ଗାଈରୁ ଚୁଳଗାଈ ସୃଷ୍ଟି ହୋଇଛନ୍ତି, ଏସମ୍ପର୍କରେ ପ୍ରମାଣିକ ତଥ୍ୟ ଏପର୍ଯ୍ୟନ୍ତ ଜଣାପଡ଼ିନାହିଁ। ମହେଞ୍ଜୋଦାରୋ ଖନନରୁ ମିଳିଥିବା ଫଳକରେ (Seals) ପୃଥିବୀପ୍ରସିଦ୍ଧ ବିରାଟକାୟ ଷଣ୍ଢର ଚିତ୍ରରେ ଖୁବ୍ ବଡ଼ ବଡ଼ ଚୁଳ ଏବଂ ଦୁଇଟି ବଡ଼ ବଡ଼ ଶିଙ୍ଘଥିବା ଦେଖାଯାଏ। ଆକୃତିରୁ ଅନୁମାନ କରାଯାଏ ଏହା ଥରପାରକର ବା

କଙ୍ଗରେଜ ପ୍ରଜାତି (Breed)ର ହୋଇପାରିଥାଏ। ସିନ୍ଧୁ ସଭ୍ୟତା ଖ୍ରୀଷ୍ଟପୂର୍ବ ୩୨୦୦ବେଳକୁ ବିକଶିତ ହୋଇଥିବା ମହେଞ୍ଜୋଦାରୋ ଓ ହରପ୍ପାରୁ ସଂଗୃହୀତ ତଥ୍ୟରୁ ଜଣାପଡ଼େ। (The Indus Civilization - Irfan Habib-page-4)। ଏହି ପ୍ରମାଣରୁ ଅନୁମାନ କରିହେବ ପ୍ରଥମେ ଚୂଳଥିବା ଗାଈ ପଶ୍ଚିମ ଏସିଆ ଅଞ୍ଚଳରେ ସୃଷ୍ଟି ହୋଇଥିଲେ। ପରବର୍ତ୍ତୀ ସମୟରେ ଏମାନେ ପଶ୍ଚିମାଭିମୁଖୀ ହୋଇ ୟୁରୋପର ଶୀତଳ ପରିବେଶରେ ଚଳପ୍ରଚଳ କରିଛନ୍ତି। ତାପମାତ୍ରା ହ୍ରାସଜନିତ ଚୂଳ ସଂକୁଚିତ ହୋଇ କାନ୍ଧରେ ମିଶିଯାଇ ନାହିଁ ତ ? ନୃତତ୍ତ୍ୱବିତ୍ ଓ ଜୀବବିଜ୍ଞାନୀମାନେ ଗବେଷଣା କରି ହୁଏତ ସଠିକ୍ ତଥ୍ୟ ପ୍ରକାଶ କରିପାରିବେ। ଆମଦେଶର ପଶୁଚିକିତ୍ସା ବିଜ୍ଞାନୀମାନେ ମତପୋଷଣ କରିନ୍ତଯେ ୟୁରୋପୀୟ ଚୂଳଥିବା ଗାଈରୁ (Taures) ଆମ ଦେଶର ଚୂଳଥିବା (Zebu) ଗାଈ ଜୀବନ ସଂଗ୍ରାମ ଭିତରେ ସୃଷ୍ଟି ହୋଇଛନ୍ତି। ଏହି ମତ (Hypothesis)କୁ ବିପରୀତଭାବେ ମଧ୍ୟ କୁହା ଯାଇପାରେ। ସତ୍ୟ ଗବେଷଣାସାପେକ୍ଷ।

## ପୁରାଣ ଓ ଇତିହାସପୃଷ୍ଠାରେ ଗୋ-ସମ୍ପଦ:

ବାଲ୍ମିକୀ ରାମାୟଣ ଆଦ୍ୟକାଣ୍ଡରେ ବର୍ଣ୍ଣନା ଅଛି ଯମଦଗ୍ନି ଋଷିଙ୍କର ଗୋଟିଏ କାମଧେନୁ ଥିଲା, ଯିଏକି ଆଶ୍ରମର ସମସ୍ତ ନିବାସୀ, ଅତିଥିବର୍ଗଙ୍କୁ ଖାଦ୍ୟ, ପେୟ ଯୋଗାଉଥିଲା। ଥରେ ଯମଦଗ୍ନିଙ୍କ ଆଶ୍ରମରେ କାର୍ତ୍ତବୀର୍ଯ୍ୟ ରାଜା ସୈନ୍ୟ ସାମନ୍ତଙ୍କ ସହ ମୃଗୟା ପରେ ପହଞ୍ଚିଲେ। ସେମାନେ କ୍ଷୁଧାର୍ଥ ଥିଲେ। ଯମଦଗ୍ନି କାମଧେନୁ ନିକଟକୁ ଯାଇ ଏହି ଖବର ଜଣାଇଲେ।

‘ତହିଁ ପରେ କାମଧେନୁ ନିକଟକୁ ଯାଇ
ବୁଝାଇ କହିଲେ ତାଙ୍କୁ ସଇନ ଦେଖାଇ
ତାହା ଦେଖି କାମଧେନୁ ଅତି ବେଗେ ଗଲେ
ରାଜ ଭୋଗ୍ୟ ଦ୍ରବ୍ୟମାନ ସଂପାଦନ କଲେ
XX XX XX
ବିସ୍ମୟ ହୋଇଲା ଦେଖି କାର୍ତ୍ତବିର୍ଯ୍ୟାର୍ଜ୍ଜୁନ
ବିଚାରିଲା ଋଷି କାହୁଁ ପାଇଲେ ଏମାନ।।
ରାଜ ଭୋଗ୍ୟ ଦ୍ରବ୍ୟମାନ ବନମଧେ ଥାଇ
କିପରି ପାଇଲେ ଏହା ଆଶ୍ଚର୍ଯ୍ୟ ଅଟଇ’।।

■ *ଆଉ କେତେ ବିଷ ପିଇଲେ ଚେତିବା... !*

ମନ୍ତ୍ରୀଙ୍କୁ ତଥ୍ୟ ସଂଗ୍ରହପାଇଁ କାର୍ତ୍ତିବୀର୍ଯ୍ୟ ମୁନିଙ୍କ ଆଶ୍ରମକୁ ପଠାଇଲେ। ମନ୍ତ୍ରୀ ଯେଉଁ ବିବରଣୀ ରାଜାଙ୍କୁ ଦେଲେ ତାହା ଏହିପରି-

'ଆଶ୍ରମର ନିକଟରେ ଅଛି ଏକ ଗାଈ
କୁନ୍ଦଇନ୍ଦୁପରି ତାର ବଦନ ଦିଶଇ।।
ରକ୍ତ ପଦ୍ମପରି ତାର ଦିଶଇ ନୟନ
ସାକ୍ଷାତରେ ଲକ୍ଷ୍ମୀସେହି ନ ବିଚାର ଆନ।।
କାମଧେନୁ ବୋଲି ନାମ ଅଟଇ ତାହାର
ସେହି ଏକା ସବୁଧନ ଅଟେ ଋଷିଙ୍କର'।।

କାର୍ତ୍ତିବୀର୍ଯ୍ୟ ରାଜା ଏକଥା ଜାଣି ଯମଦଗ୍ନି ଋଷିଙ୍କୁ କାମଧେନୁ ମାଗିଲା ଏବଂ ଋଷି ମନା କରିବାରୁ ଯୁଦ୍ଧ କରି ଯମଦଗ୍ନିଙ୍କୁ ହତ୍ୟାକଲା। ଗୋଟିଏ ଧେନୁର ମୋହ। ପୁରାଣର ସତ୍ୟାସତ୍ୟରେ ଆମେ ସନ୍ଦିହାନ। ମାତ୍ର ବାଲ୍ମିକୀଙ୍କର ବର୍ଣ୍ଣନାରୁ ଏହା ନିଶ୍ଚିତ ପ୍ରମାଣମିଳେ ଯେ ୩/୪ହଜାର ବର୍ଷପୂର୍ବେ ଯେଉଁ ଗାଈମାନେ ଥିଲେ, ସେମାନେ ବହୁ ବେଶୀ କ୍ଷୀର ଦେଉଥିଲେ।

ମହାଭାରତରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ। ପାଣ୍ଡବମାନେ ଅଜ୍ଞାତ ବନବାସ ସମୟରେ ବିରାଟ ରାଜାଙ୍କ ପ୍ରାସାଦରେ ଆଶ୍ରୟ ନେଇଥିଲେ। ନକୁଳ ଗାଈଜଗା କାମରେ ନିଯୁକ୍ତ ଥିଲେ। ତ୍ରିଗତ ଠାରୁ ଦୁର୍ଯ୍ୟୋଧନ ଖବର ପାଆନ୍ତି ବିରାଟ ରାଜାଙ୍କର ପୃଥୁନା ନାମରେ ଗୋଟିଏ ଗାଈ ଅଛି, ଯେ କି ପ୍ରଚୁର କ୍ଷୀର ଦିଏ,ଏପରିକି କ୍ଷୀରରେ ନଦୀଟିଏ ବୋହିଯାଏ।

'ତ୍ରିଗତେ ରାଜା ଆଗେ କହି
ପୃଥୁନା ନାମେ ଅଛି ଗାଈ।।
ସାତ ଘଡ଼ିଯାଏଁ ଦୁହଁନ୍ତି
କ୍ଷୀରରେ ନଦୀଏ ବୁହାନ୍ତି।।'

ଦୁର୍ଯ୍ୟୋଧନ ଦୂତଠାରୁ କାମଧେନୁର ବର୍ଣ୍ଣନା ଶୁଣି ସୈନ୍ୟସାମନ୍ତ ଧରି ବିରାଟ ବିରୁଦ୍ଧରେ ଯୁଦ୍ଧ କଲେ, ଗୋଧନ ହରଣ ପାଇଁ। ଯୁଦ୍ଧରେ ପାଣ୍ଡବମାନେ କୌରବଙ୍କୁ ପରାସ୍ତ କରି ଗୋରୁମାନଙ୍କୁ ଉଦ୍ଧାର କରି ଶମୀବୃକ୍ଷ ତଳେ ବାନ୍ଧିଲେ। *(ମହାଭାରତ-ବିରାଟ ପର୍ବ-*

*ରଚନା ଅତିବଡ଼ି ଜଗନ୍ନାଥ ଦାଶ)*

ସୁରଭି,ନନ୍ଦିନୀ ଭଳି କାମଧେନୁମାନଙ୍କର ବର୍ଣ୍ଣନା ବହୁ ପୌରାଣିକ ଗଳ୍ପରେ ମିଳେ। ମୁନି, ଋଷିମାନେ ଶିଷ୍ୟମାନଙ୍କ ସହାୟତାରେ ଆଶ୍ରମ ପରିଚାଳନା ସହିତ କାମଧେନୁର ଯତ୍ନ ନେଇଥାନ୍ତି। କାମଧେନୁମାନଙ୍କର ଚିତ୍ର ଓ ବର୍ଣ୍ଣନାରୁ ଜଣାପଡ଼େ ଏମାନେ ନାଲି ସିନ୍ଧି ବା ସାହିୱାଲ ଜାତୀୟ ଭାରତୀୟ ଗାଈ। ଚିତ୍ରରେ ଅଙ୍କିତ ଏମାନଙ୍କର ପହ୍ଲାର ଆକାରରୁ ମନେହୁଏ ଗୋଟିଏ ଗୋଟିଏ ଗାଈ ଦିନକୁ ୩୦/୪୦ଲିଟର କ୍ଷୀର ଦେଉଥିବେ।

ମଧ ଏସିଆରୁ ଆର୍ଯ୍ୟ କୁହାଯାଉଥିବା ଲୋକମାନେ ସେମାନଙ୍କର ଗୋସମ୍ପଦ ସଙ୍ଗରେ ଧରି ସିନ୍ଧୁ ନଦୀ ଅବବାହିକାରେ ବିସ୍ତୀର୍ଣ୍ଣ ଚାରଣଭୂମି ଥିବା ଯୋଗୁଁ ସେଠାରେ ବସବାସ କଲେ,ଏହା ପ୍ରାୟ ଖ୍ରୀଷ୍ଟପୂର୍ବ ୫୦୦୦ବର୍ଷ ବା ତା'ଠାରୁ ପୂର୍ବ ସମୟ ହୋଇପାରେ। ସେତେବେଳକୁ କୃଷିର ବିକାଶ ହୋଇନି। ଶିକାର ଦ୍ୱାରା ବର୍ଦ୍ଧିତ ଲୋକସଂଖ୍ୟା ପାଇଁ ଖାଦ୍ୟ ଯଥେଷ୍ଟ ନ ହେବାରୁ ଗାଈ, ଗୋରୁ, ଛେଳି, ମେଣ୍ଢା, ଓଟ ପାଳନ କରି କ୍ଷୀର,ମାଂସ ଓ ଜଙ୍ଗଲର ଫଳମୂଳ ଖାଇ କ୍ଷୁଧା ନିବାରଣ କରୁଥିଲେ। ସିନ୍ଧୁ ସଭ୍ୟତା ଆରମ୍ଭ ବେଳକୁ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ୩୫୦୦ସମୟକୁ ଚାଷକରିବା ଲୋକମାନେ ଆରମ୍ଭ କଲେଣି। ପ୍ରଥମେ ହାତରେ କାଠ,ଲୁହା ଦ୍ୱାରା ମାଟିଖୋଳି ଓ ଜମି ଚାଷକରୁଥିଲେ। ସମୟକ୍ରମେ ଅଧିକ ଜମି ଚାଷକରିବା ଆବଶ୍ୟକ ପଡ଼ିଛି। ଦେଶୀ ପ୍ରକ୍ରିୟାରେ ଅଣ୍ଡିରା ବାଛୁରୀମାନଙ୍କର ମୁସ୍କଛେଦନ କରି ବଳଦ ତିଆରି କରନ୍ତି ଏବଂ ହଳ ଲଙ୍ଗଳରେ ଚାଷ ଆରମ୍ଭହୁଏ।

Additions to the inventory of crops cultivated, making it possible to obtain both food and industrial crops; and (2) the use of castration (the first step in bio-engineering ), which enabled oxen to be yoked to the plough and to the cart there by helping to till much larger area with the same amount of manual labour and to transport by cart, the surplus grain to the towns' (The indus Civilization-Irfan Habib-page-2)

ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ ସମୟକୁ ଭାରତରେ କୃଷିକ୍ଷେତ୍ରରେ ଉଲ୍ଲେଖନୀୟ ବିକାଶ ଘଟିଲାଣି। ଉତ୍ତର -ପଶ୍ଚିମ ଭାରତରେ କୃଷି ଓ ଗୋପାଳନର ଅଭିବୃଦ୍ଧି ଗ୍ରୀସ୍ ସମ୍ରାଟ ଆଲେକ୍‌ଜାଣ୍ଡରଙ୍କୁ ଭାରତ ଆକ୍ରମଣ ପାଇଁ ଉତ୍ସାହିତ କରିଥିଲା। ଖ୍ରୀଷ୍ଟପୂର୍ବ ୩୨୭-୩୨୫ ମଧ୍ୟରେ ଆଲେକ୍‌ଜାଣ୍ଡର ଭାରତ ଆକ୍ରମଣ କରି ଜାଣିଥିଲେ ଯେ ଭାରତ ଗ୍ରାମବାସୀମାନେ

ହଳବଳଦ ଉପଯୋଗ କରି ଜମିଚାଷ କରୁଥିଲେ। ସ୍ୱାତ୍ ଉପତ୍ୟକାରୁ (ବର୍ତ୍ତମାନ ପାକିସ୍ଥାନରେ) ଲକ୍ଷାଧିକ ଉନ୍ନତବଳଦ ଜବତକରି ତାଙ୍କ ଦେଶ ମାସିଡୋନିଆକୁ ନେଇଯାଇଥିଲେ। 'In the Swat valley, Alexander is said to have seized as many as 2,30,000(!) oxen, the best of which he wished to send to his native Macedonia (North of Greece, in south eastern Europe) for working on the land there. Probably being humped, the Indian Bullock (Zebu) was expected to be more efficient in drawing the plough than the native Mecedonian ox. (Mauryan India,Irfan Habib and Vivekananda Jha-page-1)। ଏହି ବଳଦମାନେ ହରିୟାନା,କାଙ୍କ୍ରେଜ, ଥରପାରକର, ରଥି ବା ଗିର ପ୍ରଜାତିର ହୋଇଥାଇ ପାରନ୍ତି। କାରଣ ଆଜି ବି ରାଜସ୍ଥାନ,ପଞ୍ଜାବ, ହରିୟାନା ଓ ଗୁଜୁରାଟରେ ଏହି କିସମର ଗାଈରୁ ଚାଷୀମାନେ କ୍ଷୀର ସହିତ ହଳ ପାଇଁ ବଳଦ ମଧ୍ୟ ପାଉଛନ୍ତି।

ଋକ୍‌ବେଦ ରଚନାକାଳରୁ ଆଜିପର୍ଯ୍ୟନ୍ତ ଭାରତୀୟ କୃଷିସଂସ୍କୃତି ଗୋସମ୍ପଦ ଉପରେ ନିର୍ଭରଶୀଳ ହୋଇ ଆସୁଛି। ଯଜ୍ଞରେ ଘିଅ ଆହୂତି ଦେବା, ଶରୀର ପୁଷ୍ଟି ସାଧନ ପାଇଁ କ୍ଷୀର, ଛେନା, ଦହି ଖାଇବା, ଗୋବର ମୁତରୁ ଖତ ତିଆରି କରି ଜମିରେ ଲଗାଇବା, ଗୋରୁ ଗାଈ ମଲାପରେ ଚମଡ଼ାରୁ ଜୋତା, ଶିଙ୍ଘରୁ ପାନିଆ ଓ ହାଡ଼ରୁ ପିଡ଼ିଆ ତିଆରି କରିବା ଇତିହାସ ଯୁଗରୁ ଭାରତୀୟମାନେ ଜାଣିଥିଲେ। ହିନ୍ଦୁମାନେ ଗୋରୁଗାଈଙ୍କୁ ପୂଜା କରୁଥିଲେ, ମୁସଲମାନ ମଧ୍ୟ ଚାଷ ଓ କ୍ଷୀର ପାଇଁ ଗୋପାଳନ ଉପରେ ପ୍ରାଧାନ୍ୟ ଦେଇଆସିଛନ୍ତି। ଗୋରୁଗାଈଙ୍କୁ ନେଇ ଆମର ପର୍ବପର୍ବାଣୀ ମଧ୍ୟ ବହୁତ ଅଛି। ଗୋଷ୍ଠାଷ୍ଟମୀ, ଗିରି ଗୋବର୍ଦ୍ଧନପୂଜା, ଗହ୍ମାପୂର୍ଣ୍ଣିମା ଓ ଓଡ଼ିଶାର ଅକ୍ଷୟ ତୃତୀୟା ବିହନ ଅନୁକୁଳରେ ବଳଦପୂଜା, ଦୋଳପୂର୍ଣ୍ଣିମାକୁ ଗୋଠ ପୂଜା ଏହାର ନିଦର୍ଶନ।

ଭାରତରେ ଗୋସମ୍ପଦ ଓ ମଣିଷ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ। ଧନୀ-ଗରିବ ନିର୍ବିଶେଷରେ ଝିଅଟିଏ ବିଭାଦେଲେ ବାପା ମା ଝିଅ ସହିତ ଗାଈଟିଏ ଯୌତୁକ ଦେଇଥାନ୍ତି, ଭବିଷ୍ୟତରେ ଝିଅର ସନ୍ତାନ କ୍ଷୀରପିଇବା ନିଶ୍ଚିତ କରିବାପାଇଁ। ଦେଶୀଗାଈର ପରମ୍ପରା ଓ ଐତିହ୍ୟ ଏତେ ସମୃଦ୍ଧ ହୋଇଥିଲେ ମଧ୍ୟ ଆଜି କେନ୍ଦ୍ର ଓ ରାଜ୍ୟ ସରକାରମାନେ ଦେଶୀଗାଈଙ୍କୁ ଅଣଦେଖା କରୁଛନ୍ତି। ଏମାନଙ୍କର ଗୋଟିଏ ଦୋହାଯେ ଦେଶୀ ଗାଈ ବେଶୀ କ୍ଷୀର ଦେବନାହିଁ। ସାମ୍ରାଜ୍ୟବାଦୀ ଆମେରିକା ଓ ୟୁରୋପର ପୁଞ୍ଜିବାଦୀ ରାଷ୍ଟ୍ରମାନେ ଆମ ନେତାମାନଙ୍କୁ ଯେପରି ମଡ଼ଉଛନ୍ତି, ଏମାନେ ତାଙ୍କରି ବାଦ୍ୟର ତାଳେ ତାଳେ

ନାଚୁଛନ୍ତି। ସେଥିପାଇଁ ସ୍ୱାଧୀନତାର ୬୨ ବର୍ଷ ପରେ ମଧ୍ୟ ବିଶ୍ୱ ମାନବସମ୍ବଳ ସୂଚକାଙ୍କରେ ଆମ ସ୍ଥାନ ୧୩୮ରେ। ଚୀନ୍‌ରେ ଏହା ୯୨। ଏପରିକି ଶ୍ରୀଲଙ୍କା ମଧ୍ୟ ଆମଠାରୁ ଅଧିକ ଉନ୍ନତ, ଏହାର ସ୍ଥାନ ୧୦୨। (New India express 6 Oct,2009)। ନିଜ ଦହିକୁ କେହି ଖଟା କୁହେ ନାହିଁ। ଏହା ଲୋକକଥା ଅଛି। ମାତ୍ର ବିଡ଼ମ୍ବନା ଏହି ଯେ, ଆମ ସରକାର, ଅର୍ଥନୀତି ବିଶାରଦମାନେ ଦେଶୀ ଜିନିଷକୁ ଘୃଣା କରିବାପାଇଁ ମଧ୍ୟ ସଂକୋଚ କରନ୍ତି ନାହିଁ।

୨୦୦୯ ମାର୍ଚ୍ଚ୧୯,୨୦,୨୧ତିନିଦିନ ଧରି ଭୁବନେଶ୍ୱରର ପ୍ରଦର୍ଶନୀପଡ଼ିଆରେ ଓଡ଼ିଶା କୃଷି ମହୋତ୍ସବ-୨୦୦୯ ଧମାକା ଚାଲିଥିଲା। ଗୋଟିଏ ଜିଲ୍ଲା ଷ୍ଟଲରେ ପ୍ରଦର୍ଶନ କରାଯାଇଥିଲେ ବିଦେଶୀ ଗାଈ ଜର୍ସି, ହୋଲଷ୍ଟିନ,ରେଡ଼େଏନ୍ ଓ ବ୍ରାଉନ୍‌ସୁଇଡ଼ ମାନଙ୍କର ମଡ଼େଲ। ଲେଖକ ଭାରପ୍ରାପ୍ତ କୃଷି ଅଧିକାରୀଙ୍କୁ ପଚାରିଲେ 'ଆମ ଦେଶୀଗାଈର ମଡ଼େଲ ଏଠାରେ କାହିଁକି ଦିଆଯାଇନାହିଁ' ? ଉତ୍ତର ମିଳିଲା କ୍ରସ୍ ବ୍ରିଡ଼, ଏକଯୋଟିକ ବ୍ରିଡ଼ ଗାଈମାନେ ଦିନକୁ ୨୦/୩୦ ଲିଟର କ୍ଷୀର ଦେବେ। ଦେଶୀଗାଈ ତ ୨/୩ ଲିଟର ଦେଉଥିଲେ। ଲାଭ କେଉଁଥିରେ ? ଲାଭ,କ୍ଷତି ବେପାରୀଶବ୍ଦ। ବହୁଦେଶୀୟ କମ୍ପାନୀମାନେ ଆମ ବୈଜ୍ଞାନିକମାନଙ୍କୁ ପଢ଼େଇ ଦେଉଛନ୍ତି। ଶୁଆଭଳି ରାମନାମ ଘୋଷୁଛନ୍ତି। ବିଦେଶୀ ଶକ୍ତିମାନଙ୍କ ଚକ୍ରାନ୍ତରେ ଆମଦେଶରୁ ଲକ୍ଷାଧିକ କିସମର ଦେଶୀଧାନ ବିହନ, ହଜାର ହଜାର କିସମର ପନିପରିବା ବିହନ ଲୁପ୍ତପ୍ରାୟ। ଦେଶୀଗାଈ ସଂଖ୍ୟାମଧ୍ୟ ସରକାରଙ୍କ କ୍ରମାଗତ ପ୍ରଚେଷ୍ଟାରେ ନିଶ୍ଚିହ୍ନ ହୋଇଯିବେ ଯଦି ଏବେଠାରୁ ଏମାନଙ୍କ ସୁରକ୍ଷା ପାଇଁ ଧ୍ୟାନ ଦିଆନଯାଏ।

***ଦେଶୀ ଗାଈ:*** ଦେଶୀଗାଈର ଲକ୍ଷଣ-

୧)-ଭଲଭାବେ ଜଣାପଡୁଥିବା ଉଚ୍ଚ ଚୁଳ, ୨) ଲମ୍ବା ମୁହଁ, ୩)-ସିଧା ଲମ୍ବା ଶିଙ୍ଘ (୪) ଝୁଲିଲାଭଳି ଲମ୍ବା କାନ ଏବଂ (୫) ବଡ଼ ଓ ସରୁ ଗୋଡ଼। ଏମାନଙ୍କର ରଙ୍ଗ ଧଳା,ନାଲି, କଳା, ଧୂସରା ଓ କଜ୍ଜଳା ହୋଇଥାଏ। ଯେବୁ (zebu) ଗାଈ ଗୋରୁ ଖରା ସହିପାରନ୍ତି। ସେଇଥି ପାଇଁ ସକାଳୁ ସଂଜ ପର୍ଯ୍ୟନ୍ତ ପଡ଼ିଆରେ ଚରୁଥାନ୍ତି। ଉଷ୍ମ କ୍ରାନ୍ତି ଜଳବାୟୁ ସେମାନଙ୍କ ପାଇଁ ଅସହ୍ୟ ହୋଇନଥାଏ। ଚର୍ମରନ୍ଧ୍ର ବାଟେ ବାଷ୍ପୀକରଣ ଯୋଗୁଁ ସେମାନେ ଅତ୍ୟଧିକ ତାପକୁ ହଜମ କରିପାରନ୍ତି। ଏମାନେ ବିଦେଶୀଗାଈ (Taurus)ମାନଙ୍କଠାରୁ ଅଧିକ ରୋଗସହଣୀ। (A text book of Animal Husbandry-G.c.Banerjee page-679)

■ *ଆଉ କେତେ ବିଷ ପିଇଲେ ଚେତିବା... !*

***ଦେଶୀଗାଈ ପ୍ରଜାତି***– ୧୯୩୮ ମସିହାରେ ପ୍ରଥମେ ଓଲଭର ଭାରତୀୟ ଗାଈମାନଙ୍କୁ ଚିହ୍ନଟ କରିବାପାଇଁ କାମ ଆରମ୍ଭ କରିଥିଲେ। ତାଙ୍କ ପରେ ଦାଶଗୁପ୍ତ ଏବଂ ଶେଷରେ ଯୋଶୀ ଓ ଫିଲିପ୍ସ (୧୯୫୩) ରେ ବିସ୍ତୃତ ଭାବେ ଦେଶୀଗାଈମାନଙ୍କର ବିଶେଷତ୍ୱ ଚିହ୍ନଟକରି ବିଶ୍ୱଖାଦ୍ୟ ସଂସ୍ଥାରେ ଗୋଟିଏ ମାନୁଆଲ (Zebu Cattle of India and Pakisthan) ଦାଖଲ କରିଥିଲେ। ସେମାନେ ୬ଟି ଦଳରେ ଆମଦେଶୀ ଗାଈମାନଙ୍କୁ ଉଲ୍ଲେଖ କରିଥିଲେ। ମୋଟା ମୋଟି ଭାବେ ଶୁଷ୍କ, ମରୁଭୂମି ଅଞ୍ଚଳର ଗାଈମାନେ ଖୁବ୍ ସୁସ୍ଥ ସବଳ। ଅଧିକ ବର୍ଷା, ଉପକୂଳ ଅଞ୍ଚଳ ଓ ପାର୍ବତ୍ୟ ଅଞ୍ଚଳର ଗାଈମାନେ ଅପେକ୍ଷାକୃତ ଛୋଟ। ପଞ୍ଜାବର ହରିଯାନା ଗାଈ ବେଶ୍ ଉଚ୍ଚ ହୋଇଥିବାବେଳେ ଓଡ଼ିଶାର ଘୁମସରି ଗାଈ, ଦକ୍ଷିଣଭାରତର ଭେଚୁର ଗୁଣ୍ଡୁଣି ଗାଈ କୁହାଯାଏ। ଭେଚୁର ଗାଈର ଉଚ୍ଚତା ମାତ୍ର ୮୭ ସେ.ମି, ଲମ୍ବ ୧୨୪ସେ.ମି ଏବଂ ଓଜନ ୧୨୫ କେଜି। ପୃଥିବୀର ସବୁଠାରୁ ଛୋଟ ଗାଈ ଭେଚୁର। ମାତ୍ର ଏହାର ବିଶେଷତ୍ୱ ଭେଚୁର କ୍ଷୀରରେ ୬.୦୨%ରୁ ୭.୮୬% ଘିଅଥାଏ। ବିଦେଶୀ ଗାଈମାନଙ୍କର କ୍ଷୀରରେ ଘିଅର ମାତ୍ରା ୩.୫%ରୁ ୪.୫% ମାତ୍ର। ଯେତେ ଭଲହେଲେ କ'ଣ ହେଲା। ଦେଶୀ ନା। ଗାଁ କନିଆଁ ଶିଙ୍ଘାଣି ନାକି ବିଚାର।

ଆମ ଦେଶୀଗାଈମାନଙ୍କୁ ୨୬ଟି ପ୍ରଜାତି (breed) ରେ ଶ୍ରେଣୀଭୁକ୍ତ କରାଯାଇଛି। ପୃଥିବୀରେ ଗାଈମାନଙ୍କର ମୋଟ ବ୍ରିଡ୍ ସଂଖ୍ୟା ୨୩୧। ୧୯୮୮ଗୋସଂପଦ ଗଣନା ଅନୁସାରେ ଭାରତରେ ୨୦୧.୫ ନିୟୁତ ଗାଈଗୋରୁ ଏବଂ ୫୩.୭୫ ନିୟୁତ ମଇଁଷିଥିଲେ। ବିଶ୍ୱଖାଦ୍ୟ ସଂସ୍ଥା (FAO)ଙ୍କ ରିପୋର୍ଟ ଅନୁସାରେ ଭାରତ ପୃଥିବୀରେ ସର୍ବାଧିକ ଗୋମହିଷାଦି ପଶୁ ସଂପଦର ଅଧିକାରୀ। ଖାଲି ସେତିକି ନୁହେଁ, ପୃଥିବୀର ସର୍ବୋତ୍ତମ ଦୁଧିଆଳିଗାଈ କିସମ ଓ ହଳପାଇଁ ବଳଦକିସମ ଭାରତରେ ହିଁ ଅଛି। ମାତ୍ର ୨୦୦୩ ର ପଶୁସମ୍ପଦ ଗଣନା କୁହେ ଗୋସଂପଦର ସଂଖ୍ୟା ୧୮୭ନିୟୁତକୁ ଖସିଆସିଛି। କେନ୍ଦ୍ର ଓ ରାଜ୍ୟ ସରକାରଙ୍କର ବିଦେଶୀଗାଈ ଓ ଟ୍ରାକ୍ଟର ପ୍ରୀତି ଆଗିଲା ଦିନରେ ଦେଶୀଗାଈ ସଂଖ୍ୟା ଆଶାତୀତଭାବେ କମାଇ ଦେବାରେ ସାହାଯ୍ୟ କରିବ। (Need for Genetic Upgradation in indigenous Cattle-Dr.M.L.Madan, Vice Chancellor, Pandit Dindayal Upadhaya Veterinary and Animal Science University.Survey of Indian Agriculture-2008, The Hindu) ଜାତୀୟ ଡାଇରୀ ଗବେଷଣା ପ୍ରତିଷ୍ଠାନ (National Dairy Research Institute), ଭାରତୀୟ କୃଷି ଗବେଷଣା ପ୍ରତିଷ୍ଠାନ (IARI), ସରକାରୀ ଡାଇରୀ ଫାର୍ମ, ଲକ୍ଷ୍ନୌ ଏବଂ ଆର.ବି.ଏସ୍.

କଲେଜ ଫାର୍ମ ଆଗ୍ରାରେ ସାହିୱାଲ ଗାଈର ବଂଶବୃଦ୍ଧିପାଇଁ କିଛି ବର୍ଷ ଗବେଷଣା ଚାଲିଥିଲା। ତେଣୁ ଚିହ୍ନଟ କରାଯାଇଥିବା ୨୬କିସମର ଗାଈମାନଙ୍କର ବଂଶବୃଦ୍ଧି ପାଇଁ ନିର୍ଦ୍ଦିଷ୍ଟ ଯୋଜନା ନାହିଁ କହିଲେ ଠିକ୍‌ହେବ। କେତେକ ଦେଶୀଗାଈମାନଙ୍କର ବିଶେଷତ୍ୱ ତଳସାରଣୀରେ ଉଲ୍ଲେଖ କରାଯାଇଛି। ଏହା ସରକାରୀ ତଥ୍ୟ ଉପରେ ଆଧାରିତ।

ସାରଣୀ( ୧ )ରେ ମାତ୍ର ୭ଗୋଟି କିସମ ଗାଈ ମାନଙ୍କର ବୈଶିଷ୍ଟ୍ୟ ଭାରତସରକାରଙ୍କ ପଶୁସମ୍ପଦ ବିକାଶଦ୍ୱାରା ପ୍ରସ୍ତୁତ କରାଯାଇଛି। ପଡ଼ିଆରେ ଦିନତମାମ ଚରି ଖରା ବର୍ଷା, ଶୀତ ସହି ଏହି ଦେଶୀଗାଈମାନେ ଘରେ ପେଜ ତୋରାଣି, କିଛି କୁଣ୍ଡା ଖାଇ କ୍ଷୀର ଦେଇଥାନ୍ତି। ବିଦେଶୀଗାଈଙ୍କ ପରି ଏମାନଙ୍କ ପାଇଁ ଫ୍ୟାନ୍,ଦିନଂଗାଧୁଆ ଏବଂ ଦିନକୁ ପ୍ରତିଗାଈକୁ ୮/୧୦କିଲୋ କାରଖାନାରେ ପ୍ରସ୍ତୁତ ଦାନା ଦେବାକୁ ପଡ଼େ ନାହିଁ,ଦେଶୀ ଗାଈର କ୍ଷୀରରେ ଘିଅ ମାତ୍ରା ଅଧିକଥିବା ସାରଣୀ( ୧ )ରୁ ଜାଣିହେବ। ଘିଅର ମାତ୍ରା ଅଧିକହେଲେ କ୍ଷୀରର ମୂଲ୍ୟ ମଧ ଅଧିକ। ଅଧିକନ୍ତୁ ଏହି ଗାଈମାନେ ଚାଷୀକୁ ବଳଦ ଯୋଗାଉଥିଲେ। ଆଜି କିନ୍ତୁ ଏହି କିସମର ଗାଈ ସଙ୍କଟରେ।

ଆମଦେଶୀ ଗାଈରୁ ବଛା ବଛା କିସମ ବ୍ରାଜିଲ, ଆମେରିକା ଓ କେତେକ ଆଫ୍ରିକୀୟ ଦେଶ ନେଇ ସେମାନଙ୍କର ମାନ ବୃଦ୍ଧିକରିଛନ୍ତି। ବ୍ରାଜିଲ ସାହିୱାଲ, ଗିର, ଓଙ୍ଗଲ,ରେଡ଼ସିନ୍ଧି,ଥରପାରକର ଭଳି ଗାଈ ଓ ସେମାନଙ୍କର ଷଣ୍ଢ ଭାରତରୁ ଆମଦାନୀ କରି ସେମାନଙ୍କର ବଂଶବୃଦ୍ଧି କରାଇଛି,ଦୁଧିଆଳି କିସମ ୟୁରୋପୀୟ ଦେଶମାନଙ୍କୁ ରପ୍ତାନି କରୁଥିଲା ବେଳେ ଆଫ୍ରିକାକୁ ବଳଦ ଯୋଗାଉଛି। ଯୁକ୍ତରାଷ୍ଟ୍ର ଆମେରିକା ଆମ ସାହିୱାଲ କିସମ ଗାଈ ଆମଦାନୀ କରି ନିଜଦେଶରେ ବିଭିନ୍ନ ଡାଇରୀ ଫାର୍ମକୁ ଯୋଗାଉଛି। କାରଣ ଭାରତୀୟ ଯେବୁ (zebu) ଗାଈର ରୋଗ -ନିରୋଧକ ଶକ୍ତି ଅଧିକ। ସେମାନେ କମ୍ ଖାଦ୍ୟ ଖାଇ ଅଧିକ କ୍ଷୀର ଦେଇଥାନ୍ତି। ଗିର, ଓଙ୍ଗର, ଗରପାକର ଭଳି କିସମରୁ ମିଳୁଥିବା ବଳଦ ଖୁବ୍ କଷ୍ଟସହିଷ୍ଣୁ। ଦିନକୁ ହାରାହାରି ୮ଘଣ୍ଟା ହଳ କରିପାରନ୍ତି।

ଆମ୍ଭମାନଙ୍କୁ ଲଜ୍ଜାଲାଗିବା କଥା ଆମଦେଶରୁ ବିଦେଶକୁ ଯାଇଥିବା ଗାଈରୁ ମିଳୁଥିବା ଷଣ୍ଢ ଆମେ ପୁଣି ସେମାନଙ୍କଠାରୁ କିଣି କରିଆଣୁଛେ। ଗୋଟିଏ ଗୋଟିଏ ଷଣ୍ଢକୁ୧୨ଲକ୍ଷ ଟଙ୍କାଦେଇ ଆମେ କିଣୁଛେ। ଆନ୍ଧ୍ରପ୍ରଦେଶର ଗୁଣ୍ଟୁର ଜିଲାରେ ଓଙ୍ଗଲ ବଳଦର ଚାହିଦା ଏବେ ବଢ଼ିଛି। ହଳ କରିବା ଓ ଶଗଡ଼ ଟାଣିବା ପାଇଁ ଓଙ୍ଗଲ ବଳଦମାନେ ଖୁବ୍ ଶକ୍ତିଶାଳୀ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

Ongole Bull Makes A Comeback. A bull is priced Rs12 lakhs and there is heavey demand for its simen for multiplication of the breed. Urine of ongle cow is very important for ayurvedic medicines. *The Hindu Dt 1.8.2009.*

ଗୁଜୁରାଟ ସରକାର କିଛିମାସ ତଳେ ବ୍ରାଜିଲରୁ ୫୦୦୦ ଗିର୍ ଷଣ୍ଢ ଓ ଗାଈ ନିଜରାଜ୍ୟକୁ ଆଣିବା ପାଇଁ ବ୍ରାଜିଲ ସରକାରଙ୍କ ସହିତ ବୁଝାମଣା କରିଛନ୍ତି । ଗିର୍ କିସମ ଗାଈମାନେ ଦୁଧିଆଳି । ଚରିବୁଲି ଦିନକୁ ୭/୮ ଲିଟର କ୍ଷୀର ଦେଇଥାନ୍ତି । ବଳଦ ଖରା, ବର୍ଷା, ଶୀତରେ ହଳକରନ୍ତି, ଶଗଡ଼ ବୁହାନ୍ତି ।

ବିଦେଶୀ ଗାଈ ମାୟାରେ ଆମ ପଶୁସମ୍ପଦ ବିକାଶ ବିଭାଗ ଏହି ସବୁ କିସମ ଗାଈମାନଙ୍କୁ ଅଦରକାରୀ ବିଚାର କଲେ । ଷଣ୍ଢମାନଙ୍କୁ ଦୁର ଦୁର ମାର୍ ମାର୍ କଲେ । ଏମାନଙ୍କ ବଂଶ ପ୍ରାୟ ଲୋପ ଉପରେ । ଆମ ସମ୍ପତ୍ତି ପରହାତ ହେଲାପରେ ଏବେ ଆମକୁ ହାତ ପତାଇବାକୁ ପଡୁଛି । ଧନ୍ୟରେ ସରକାର ।

୪୦/୫୦ ବର୍ଷ ପଛକୁ ଚାହିଁଲେ ଆମେ ଦେଖିବା ସେତେବେଳେ ଦେଶରେ ଜମିଦାର, ମକଦ୍ଦମ ଓ ବଡ଼ବଡ଼ ଚାଷୀଙ୍କ ହାତରେ ଜମିଥିଲା । ହେଲେ ଗୋରୁ, ଗାଈ, ମଇଁଷିଙ୍କ ପାଇଁ ଯଥେଷ୍ଟ ଚାରଣଭୂମିଥିଲା । ପ୍ରତ୍ୟେକ ଚାଷୀ ପରିବାରରେ ହଳେ, ୨ହଳ ବଳଦ, ୮/ ୧୦ଟି ଗାଈ ବାଛୁରୀ ଥିଲେ । ହଳକରିବା, କ୍ଷୀର ଖାଇବା, ଘିଅ ଲହୁଣୀ, ଦହିକରିବା ସହିତ ଜମିପାଇଁ ଯଥେଷ୍ଟ ଖତ ମିଳିପାରୁଥିଲା । ଘସି ଜାଳେଣୀ ପାଇଁ ବ୍ୟବହାର ହେଉଥିଲା । ଏମାନେ ସବୁ ଦେଶୀ ଗାଈ ଥିଲେ । ଆଜି ଅବସ୍ଥା ବଦଳି ଯାଇଛି । ଗରିବ ଘରକୁ ରଜା ହାତୀ ଦେଲା ଭଳି ଏବେ ବ୍ୟାଙ୍କ୍‌ମାନେ ଛୋଟ ଓ ନାମମାତ୍ର ଚାଷୀ,କୃଷି ଶ୍ରମିକଙ୍କୁ ଗୋଟିଏ ଗୋଟିଏ ହାତୀ ଧରାଇ ଦେଉଛନ୍ତି । ଜର୍ସି, ହୋଲଷ୍ଟିନ ଗାଈ । ବାନ୍ଧିବାକୁ ଘର ନାହିଁ । ଚରିବାକୁ ପଡ଼ିଆନାହିଁ । ଘୋଡ଼ା ଛ'ଟଙ୍କାକୁ ବାଖର ନଅଟଙ୍କା ଭଳି ଗାଈ କିଣିବାକୁ ସିନା ବ୍ୟାଙ୍କ୍ ଋଣ ଦେଲା । ଦାନା ? ଦିନକୁ ହାରାହାରି ୮ ଲିଟର କ୍ଷୀର ଦେଉଥିବା ଗାଈପାଇଁ ୬/୭ କିଲୋ ଦାନା । ୬୦/୭୦ ଟଙ୍କା ଖାଲି ଦାନା ଖର୍ଚ୍ଚ । ସବୁରୋଗ ଏ ଗାଈଙ୍କୁ ଗ୍ରାସକରେ । ମାଷ୍ଟାଇଟିସ୍ ହେଲେ ପହ୍ନା ଖତମ । ମିଲ୍କ ଫିଭର ହେଲେ ଗାଈ ସେପୁରକୁ ଯିବ । ଥାଇଲେରିଆସିସ୍ ହେଲେ ଗୋଟିଏ ଗାଈକୁ ଚିକିତ୍ସା ପାଇଁ ପ୍ରାୟ ୨୦୦୦ ଟଙ୍କା । ବଣ୍ଠିଗଲେ ବି କ୍ଷୀର କମିଲା । ଦେଉଳକୁ ମୁଖଶାଳା ଉଚ୍ଚା,କାହାକୁ କହିବ ? ଏ କ୍ଷୀରରେ ପୁଣି ଘିଅ କମ୍ । ଖାଣ୍ଟି କ୍ଷୀର ଓମ୍‌ଫେଡ଼କୁ ଦେଲେ ଲିଟର ୧୦ଟଙ୍କା । ବିଚରା ଚାଷୀଟି ହିସାବ

ନ ପାଇ ପାଗଳ ହୋଇଯିବ। ଆମରାଜ୍ୟରେ ତ କୃଷକ ଆତ୍ମହତ୍ୟା ସରକାର ସ୍ୱୀକାର କରନ୍ତି ନାହିଁ। ହିସାବ କଲେ କେବଳ ଜର୍ସିଗାଇ ଯୋଗୁଁ ଦେଶରେ ବର୍ଷକୁ ଶତାଧିକ କୃଷକ ଆତ୍ମହତ୍ୟା କରୁଥିବେ। ସେମାନଙ୍କ ମଧରେ ମହିଳାମାନଙ୍କ ସଂଖ୍ୟା ଅଧିକ। କାରଣ ଏବେ ସ୍ୱୟଂସହାୟକ ଗୋଷ୍ଠୀ ବେପାରରେ ମହିଳାମାନଙ୍କୁ ଗୋଟିଏ ଗୋଟିଏ ଗାଇ ଧରାଇ ଦିଆଯାଉଛି ତ ? ଅଖା ଧୋଉଥିବେ, ସରକାରଙ୍କର ଗୁଣ ଗାଉଥିବେ। ସବୁଦିନ ଗିରସ୍ତ ଭାରିଜାଙ୍କର ଦାନା ପାଇଁ କଳି। ଋଣ, ପରିଶ୍ରମ, ଦାନା ଓ ଔଷଧ ହିସାବ କଲେ ମୂଳ ଖାଉଥିବ ପଛେ ଲାଭ ଶୂନ। ଅଧିକ ଅମଳକ୍ଷମ ଧାନ ଚାଷ ପାଇଁ ଯେପରି ବିହନ, ସାର, କୀଟନାଶକ ଓ ଅଧିକ ପାଣି ନନେଲେ ଫସଲ ମିଳିବ ନାହିଁ, ବିଦେଶୀ ଗାଇକଥା ଠିକ୍ ସେଇୟା। ସରକାରଙ୍କ ସଦ୍‌ବୁଦ୍ଧି ହେଉ। ଦେଶୀଗାଇକୁ ଫେରନ୍ତୁ, ଚାଷୀକୁ ବଞ୍ଚାନ୍ତୁ।

## ବିଦେଶୀ ଗାଇର ମହାତ୍ମ୍ୟ-

ଆଗରୁ ବିଦେଶୀ ଗାଇ କଥା କିଛି କିଛି କୁହାଯାଇଛି। ୟୁରୋପ, ଆମେରିକା, ଅଷ୍ଟ୍ରେଲିଆ,ନ୍ୟୁଜିଲ୍ୟାଣ୍ଡ ଭଳି ଦେଶ ମାନଙ୍କରେ ଦେଖାଯାଉଥିବା ଚୁଳନଥିବା ଗାଈ (Taurus)କୁ ଆମେ ଭାରତୀୟମାନେ ବିଦେଶୀଗାଇ କହିବା। ଏମାନେ ଶୀତପ୍ରଧାନ ଦେଶ ବା ଅଞ୍ଚଳରେ ରହିଲେ ସୁସ୍ଥ ସବଳ ରୁହନ୍ତି। ୟୁରୋପମହାଦେଶର ହଲାଣ୍ଡ, ଡେନ୍‌ମାର୍କ, ସୁଇଜରଲ୍ୟାଣ୍ଡ୍ ଓ ଇଂଲଣ୍ଡ୍‌ରେ ପ୍ରଥମେ ଏହି ଜାତୀୟ ଗାଇ ପାଳନ କରାଯାଉଥିଲା। ପ୍ରାକୃତିକ ପରିବେଶ ଅନୁକୂଳ ଥିବାରୁ ସେହିସବୁ ଦେଶରେ ପ୍ରଚୁର ଘାସ ହୁଏ। ହଲାଣ୍ଡ ତ' ଘାସର ଦେଶ କହିଲେ ଅତ୍ୟୁକ୍ତି ହେବନାହିଁ। ତେଣୁ ହଲାଣ୍ଡରେ ଦୁଗ୍ଧ ବ୍ୟବସାୟ ପୃଥିବୀ ପ୍ରସିଦ୍ଧ। ବିଦେଶୀ ଗାଇର ଯେଉଁ ପ୍ରଧାନ ୪ଟି ପ୍ରଜାତି ଭାରତରେ ଦେଶୀଗାଇର ଶଙ୍କରୀକରଣ (Cross Breeding) ବ୍ୟବହାର କରାଯାଇ ଥାଏ, ସେମାନଙ୍କର ବୈଶିଷ୍ଟ୍ୟ ସାରଣୀ-୨ରେ ଉଲ୍ଲେଖ କରାଗଲା।

ସାରଣୀ( ୨ )ରୁ ଧାରଣାହେବ ବିଦେଶୀ ଗାଇମାନେ ଦେଶୀ ଗାଇମାନଙ୍କଠାରୁ ଯଥେଷ୍ଟ ଅଧିକ କ୍ଷୀର ଦେଉଛନ୍ତି। ସାରଣୀରେ ଦର୍ଶାଯାଇଥିବା ଗାଈଗୁଡ଼ିକ ଶୁଦ୍ଧ (pure)ପ୍ରଜାତି। ଏମାନେ ଖୁବ୍ ଅଧିକ ଖାଦ୍ୟ ଖାଆନ୍ତି ଏବଂ ବିଳାସ ପରିବେଶରେ ପୋଷ୍ୟ ହୋଇଥାନ୍ତି। ମାତ୍ର ଆମ ଦେଶୀଗାଇରୁ ଜନ୍ମ ନେଉଥିବା ଏହି ୪ଶ୍ରେଣୀର ଗାଇମାନଙ୍କର ହାରାହାରି ଦୁଗ୍ଧ ଉତ୍ପାଦନ ୩୦୫ ଦିନ ପାଇଁ କ୍ଷୁଦ୍ର ବା ନାମମାତ୍ର ଚାଷୀ, ମହିଳା ଚାଷୀଙ୍କ ପାଖରେ ୨୫୦୦ଲିଟରରୁ ଆଦୌ ଅଧିକ ହେବ ନାହିଁ। ଅନ୍ୟ ପକ୍ଷେ ଏମାନଙ୍କ ପାଇଁ ଚାଷୀକୁ

ଆୟଠାରୁ ଯଥେଷ୍ଟ ଅଧିକ ଖର୍ଚ୍ଚ କରିବାକୁ ପଡ଼ିଥାଏ। ଲେଖକ ନିଜ ଅଭିଜ୍ଞତାରୁ ଏହା ଜୋରଦେଇ କୁହନ୍ତି। ଏକ ନିରପେକ୍ଷ ସର୍ଭେ କରାଗଲେ ସତ୍ୟାସତ୍ୟ ଆହୁରି ସ୍ପଷ୍ଟ ହୋଇଯିବ।

କେବଳ ରୋଗର ଚିକିତ୍ସା ପାଇଁ ଗୋଟିଏ ଗାଈ ପାଇଁ ବର୍ଷକୁ ଦୁଇହଜାର ଟଙ୍କା ପର୍ଯ୍ୟନ୍ତ ଖର୍ଚ୍ଚ କରିବାକୁ ପଡ଼ିଥାଏ। ବିଦେଶୀ ଗାଈମାନେ ଆକ୍ରାନ୍ତ ହେଉଥିବା କେତେକ ପ୍ରଧାନ ରୋଗ ଏବଂ ଚିକିତ୍ସା ଖର୍ଚ୍ଚ ସାରଣୀରୁ ଜାଣିହେବ।

ସଂକ୍ଷେପରେ କହିଲେ ବିଦେଶୀଗାଈ ଭାରତୀୟ ଚାଷୀଙ୍କପାଇଁ ମରଣଯନ୍ତା ପ୍ରମାଣିତ ହେଲାଣି।

## ଭାରତରେ ଡାଇରୀର ସ୍ଥିତି-

ଭାରତ ପୃଥିବୀରେ ଦୁଗ୍ଧ ଉତ୍ପାଦନରେ ପ୍ରଥମ ସ୍ଥାନ ଅଧିକାର କରିଛି। ୨୦୦୭-୦୮ରେ ଦେଶରେ ଦୁଗ୍ଧ ଉତ୍ପାଦନ ପରିମାଣ ୧୦୪.୮୪ ମେଟ୍ରିକଟନ ଥିଲା। ମୁଣ୍ଡପିଛା କ୍ଷୀର ପରିମାଣ ୧୯୬୮-୬୯ ରେ ୧୧୨ଗ୍ରାମରୁ ବଢ଼ି ୨୦୦୭-୦୮କୁ ଏହି ପରିମାଣ ୨୫୨ଗ୍ରାମରେ ପହଞ୍ଚିଛି। ଏହି ହାରାହାରି ହିସାବରୁ ଏପରି ମନେକରିବା ଉଚିତ ହେବନାହିଁ ଯେ ଭାରତର ପ୍ରତ୍ୟେକ ବ୍ୟକ୍ତି,ମହିଳା ବା ଶିଶୁ ଦିନକୁ ୨୫୨ଗ୍ରାମ କ୍ଷୀର ଖାଇ ପାରୁଛନ୍ତି। ଦେଶର ଗ୍ରାମାଞ୍ଚଳରେ ୭୦ କୋଟି ଲୋକ ବସବାସ କରନ୍ତି। ମୋଟ କ୍ଷୀରର ଶତକଡ଼ା ୯୦ପ୍ରତିଶତ ଗ୍ରାମାଞ୍ଚଳରୁ ହିଁ ମିଳିଥାଏ। ମାତ୍ର ଏହି କ୍ଷୀରର ୮୦ରୁ ୯୦ ପ୍ରତିଶତ ସହରାଞ୍ଚଳକୁ ବାବୁମାନଙ୍କ ପାଇଁ ପଠାଯାଇ ଥାଏ। ଗରିବ ଚାଷୀଟିଏ ଉତ୍ପାଦିତ କ୍ଷୀର ଅଧିକାଂଶ ସ୍ଥଳେ ସମ୍ପୂର୍ଣ୍ଣ ବେପାରୀ ବା ଓମ୍‌ଫେଡ଼କୁ ଦେଇଥାଏ। ଏପରି କରିବାକୁ ସେ ବାଧ୍ୟ। ଗାଈ ବା ମଇଁଷିର ଦାନା ଖର୍ଚ୍ଚ ତ' ପ୍ରତିଦିନ ଯୋଗାଇବାକୁ ପଡ଼ିବ। ତା' ଛଡ଼ା ଯଦି ୨ପଇସା ବଞ୍ଚାଇପାରେ, ତେଲ ଲୁଣ ଖର୍ଚ୍ଚ କରିବ। ନିଜର ଶିଶୁପୁତ୍ର ବା କନ୍ୟାପାଇଁ କ୍ଷୀର ଟିକିଏ ବଞ୍ଚାଇ ପାରୁନଥିବାରୁ ସ୍ତ୍ରୀ,ପୁରଷଙ୍କ ମଧ୍ୟରେ ଝଗଡ଼ା ନିତିଦିନିଆ ଖବର। ଏପରି ଦୟନୀୟ ଅବସ୍ଥାରେ ସେ ବ୍ୟାଙ୍କ୍‌କୁ ଗାଈଋଣ ବି ସୁଝି ପାରେ ନାହିଁ।

ଦେଶରେ ଉତ୍ପାଦିତ କ୍ଷୀରର ୮୦ଭାଗ କ୍ଷୀର ବେପାରୀମାନେ କିଣିଥାନ୍ତି। ସେମାନେ ଚାଷୀମାନଙ୍କୁ ମୂଲ୍ୟରେ ଠକିଥାନ୍ତି, ସମବାୟ ମାତ୍ର ୨୦ଭାଗ କ୍ଷୀର କିଣିଥାଏ। ବିଚରା କ୍ଷୀରଚାଷୀ ଶୋଷଣର ଶିକାର ହୋଇଥାଏ। ଆମଦେଶର ମୋଟ ଗୋସମ୍ପଦ ସଂଖ୍ୟା ୧୮୭ନିୟୁତ ଥିବା ବେଳେ ମଇଁଷିଙ୍କ ସଂଖ୍ୟା ୭୫ ନିୟୁତ। ଗାଈମାନଙ୍କର ସଂଖ୍ୟାରେ

ବାର୍ଷିକ ଅଭିବୃଦ୍ଧି ହାର ୦.୭% ଥିବାବେଳେ ମଇଁଷିଙ୍କ ଅଭିବୃଦ୍ଧି ହାର ୧.୭%। ଏଥିରୁ ସ୍ପଷ୍ଟହୋଇଛି କି କେନ୍ଦ୍ର ବା ରାଜ୍ୟ ସରକାରମାନେ ଯୋଜନାବଦ୍ଧ ଭାବେ ଦେଶରୁ ଗୋ-ସମ୍ପଦ ସଂଖ୍ୟା କମାଇବାରେ ସଫଳ ହୋଇଛନ୍ତି। ୧୯୫୦ବେଳର ଗୋସଂପଦ ସଂଖ୍ୟା ୨୦୦୮ ବେଳକୁ ୧୦ପ୍ରତିଶତ କମିଗଲାଣି। ଏହା ଏକ ଉଦ୍‌ବେଗଜନକ ସମସ୍ୟା। ଅନ୍ୟ ଏକ ତଥ୍ୟରୁ ଜଣାପଡ଼େ ଦେଶର ଦୁଗ୍ଧ ଉତ୍ପାଦନର ୫୦ପ୍ରତିଶତ ମଇଁଷିଙ୍କଠାରୁ ମିଳିଥାଏ। ଏହାର ବଡ଼ କାରଣ ମଇଁଷି ଆମଦେଶର ନିଜସ୍ୱ, ବିଦେଶରେ ଜାତିଆ ମଇଁଷି ନାହାଁନ୍ତି। ଆମ ଦେଶର ମୁରା ମଇଁଷି ଦିନକୁ ହାରାହାରି ୫ଲିଟର କ୍ଷୀର ଦେଇଥାନ୍ତି। ମଇଁଷି କ୍ଷୀରରେ ୭ ପ୍ରତିଶତ ଘିଅ ଥାଏ। (Source-FAO Animal Production and Health,paper-1979)

ଭାରତ ସରକାର ଗାଈ ଓ ମଇଁଷିର ବଂଶାନୁଗୁଣ ବୃଦ୍ଧିପାଇଁ (Genetic Improvement) ଜାତୀୟ ପ୍ରକଳ୍ପ (National Project for Cattle & Buffalo Breeding (NPCBB) ୨୦୦୦ ଅକ୍ଟୋବର ଠାରୁ ଆରମ୍ଭ କରିଛନ୍ତି। ଏଥିରେ ଦେଶୀଗାଈର ବଂଶାନୁଗୁଣ ଉନ୍ନତି ପାଇଁ ଅଧିକ ଧ୍ୟାନ ଦିଆଯିବା କଥା ଉଲ୍ଲେଖ ଅଛି। (Genetic Upgradation and Development of Indigenous breeds on priority basis)। ୧୦ବର୍ଷ ପରେ ମଧ୍ୟ ଓଡ଼ିଶାରେ ଏଥିପାଇଁ ଆଖିଦୃଷ୍ଟିଆ କାମ ହୋଇଥିବା ଜଣାପଡୁନାହିଁ। (Ref-Economic Survey-2008-2009, page-186)

*ଭାରତରେ ପଶୁପାଳନ ଓ ଦୁଗ୍ଧଉତ୍ପାଦନର ରାଜନୈତିକ ଅର୍ଥନୀତି-*

୧୯୫୦ମସିହା ପର୍ଯ୍ୟନ୍ତ ଆମଦେଶୀ ଷଣ୍ଢ ଗୋସମ୍ପଦର ବଂଶବୃଦ୍ଧି ପାଇଁ ବ୍ୟବହାର କରାଯାଉ ଥିଲେ। ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗୋଟିଏ ସୁସ୍ଥ ସବଳ ଷଣ୍ଢଥିଲେ। ଷଣ୍ଢ ମହାଦେବଙ୍କର ବୋଲି ଲୋକେ ପୂଜାକରୁଥିଲେ। ସମସ୍ତେ ଖାଇବାକୁ ଦେଉଥିଲେ। ବିଲବାଡ଼ିରେ ବୁଲିଖାଇଲେ ବି ଲୋକମାନେ ବାଧା ଦେଉନଥିଲେ। ସ୍ଥାନୀୟ ପ୍ରଜାତି ଗାଈର ଷଣ୍ଢମାନେ ହିଁ ସେତେବେଳେ ଗାଁମାନଙ୍କରେ ଥିଲେ। ପ୍ରଥମ ପଞ୍ଚବାର୍ଷିକ ଯୋଜନାକାଳରେ ସାହିୱାଲ,ରେଡ଼ସିନ୍ଧି,ହରିୟାନା,ଗିର,ଓଙ୍ଗଲ, ଥରପାରକର ଷଣ୍ଢ ସେମାନଙ୍କ ଉତ୍ପତ୍ତି ସ୍ଥଳରୁ ସଂଗ୍ରହ କରାଯାଇ ଦେଶର ବିଭିନ୍ନ ରାଜ୍ୟ ପଶୁପାଳନ କେନ୍ଦ୍ରମାନଙ୍କୁ ପଠାଗଲା। ପ୍ରଥମେ ଏହି ଜାତୀୟ ଷଣ୍ଢମାନେ ସଂଗମପାଇଁ ବ୍ୟବହାର କରାଗଲେ। ମାତ୍ର ଏହାଦ୍ୱାରା ଜଣାପଡ଼ିଲା ଗୋଟିଏ ଷଣ୍ଢ ବର୍ଷକୁ ମାତ୍ର ୫୦ରୁ ୬୦ଟି ଗାଈଙ୍କୁ ସଂଗମ

କରିବାକୁ ସକ୍ଷମ ହେଉଛି । ସେତେବେଳକୁ ଜଣାଗଲାଣି ବିଲାତ ଆମେରିକାରେ ଗୋଟିଏ ଷଣ୍ଢ ଦ୍ୱାରା କୃତିମପ୍ରଜନନ କରାଇଲେ ବର୍ଷକୁ ୧୦,୦୦୦ ଗାଈ ଗର୍ଭଧାରଣ କରି ପାରୁଛନ୍ତି । ୧୯୫୧-୫୬ ମଧ୍ୟରେ ଦେଶରେ ୬୦୦କିଭିଲେଜ କେନ୍ଦ୍ର ଖୋଲାଯାଇ ଦେଶୀ ଷଣ୍ଢ ଠାରୁ ସଂଗୃହୀତ ଶୁକ୍ରଦ୍ୱାରା କୃତ୍ରିମ ପ୍ରଜନନ କରାଗଲା ।

୧୯୫୦କୁ କାଁଭାଁ ସରକାରୀ ଫାର୍ମ ଓ ଧନୀକ ଶ୍ରେଣୀ ଚାଷୀ ଜର୍ସି, ହୋଲଷ୍ଟିନ ଗାଈ ପାଳିଲେଣି । ଏହି ସମୟରୁ ଭାରତୀୟ ଗୋସମ୍ପଦ ଓ ଦୁଗ୍ଧଉତ୍ପାଦନ କ୍ଷେତ୍ରରେ ବିଦେଶୀ ଶକ୍ତିର ପ୍ରବେଶ ଆରମ୍ଭ ହେଲା । ସେତେବେଳେ ହଲାଣ୍ଡ, ଡେନ୍‌ମାର୍କ, ସୁଇଜରଲ୍ୟାଣ୍ଡ ଭଳି ୟୁରୋପୀୟ ରାଷ୍ଟ୍ର ଓ ଆମେରିକାରେ ବଡ଼ ବଡ଼ କୋଟିପତିମାନେ ଡାଇରୀ ଫାର୍ମକରି କ୍ରମାଗତ କ୍ଷତିର ସମ୍ମୁଖୀନ ହେଲେଣି । ସରକାର ଚାଷୀଙ୍କୁ ଯଥେଷ୍ଟ ସବ୍‌ସିଡ଼ି ଦେଲେ ମଧ୍ୟ ଉତ୍ପାଦିତ କ୍ଷୀର, ଦୁଗ୍ଧଗୁଣ୍ଡ, ଘିଅ (Butter oils) ବିକ୍ରୀ ନହୋଇ ବଳକା ଗଦା ହେଲାଣି । ଏଣେ ଗାଈଗୋରୁଙ୍କ ସଂଖ୍ୟାବଢ଼ି ସେମାନଙ୍କୁ ପାଳିବା ସମସ୍ୟା ହେଲାଣି । ଲକ୍ଷ ଲକ୍ଷ ଦୁଧିଆଳି ଗାଈଙ୍କୁ ମାଂସପାଇଁ କାଟିବା ଆରମ୍ଭ ହୋଇଯାଏ । ଚାଷୀମାନେ ସୁରକ୍ଷା ପାଇଁ ସରକାରଙ୍କ ଉପରେ ଚାପପକାନ୍ତି । ବିଶ୍ୱବ୍ୟାଙ୍କ, ୟୁରୋପୀୟ କମନ ମାର୍କେଟ(ବର୍ତ୍ତମାନର ୟୁରୋପୀୟ ୟୁନିୟନ) ଭାରତ ଉପରେ ଆଖି ପକାଇଲେ । ଖାଦ୍ୟ ସାହାଯ୍ୟ ସୂତ୍ରେ ଭାରତକୁ କ୍ଷୀରଗୁଣ୍ଡ,ବଟର ଅଏଲ, ଲହୁଣୀ, ଛେନା ଏପରିକି ମାଗଣା ଜର୍ସିଗାଈ ଓ ଷଣ୍ଢ ପଠାଇଲେ । ମାଗଣା ମିଳିଲେ ଆଲକାତରା ପିଇଲା ଭଳି ଆମ ସରକାର କୃତ କୃତ ହୋଇ ସାହାଯ୍ୟ ଗ୍ରହଣ କଲେ । ହଠାତ୍ ଆମ ଦେଶୀଜାତୀୟ ଷଣ୍ଢଗୁଡ଼ାକ ଅଦରକାରୀ ହୋଇଗଲେ । ଜର୍ସି ଷଣ୍ଢକୁ କୃତ୍ରିମ ପ୍ରଜନନ ପାଇଁ ବ୍ୟବହାର କରାଗଲା । ଏହି ପ୍ରକ୍ରିୟା ୧୯୬୦-୬୪ପର୍ଯ୍ୟନ୍ତ ଚାଲିଲା । ସେତେବେଳକୁ ଆନନ୍ଦରେ ଜାତୀୟ ଡାଇରୀ ବିକାଶ ପରିଷଦ (National Dairy Development Board) ଗଠନ ହେଲାଣି । NDDB ଅଧ୍ୟକ୍ଷ ଭର୍ଗିସ୍ କୁରିଏନଙ୍କ ଉତ୍ସର୍ଗୀକୃତ ପ୍ରଚେଷ୍ଟାରେ ଭାରତରେ ଡାଇରୀ ଶିଳ୍ପର ପ୍ରଗତି ହେଲାଣି । କୁରିଏନଙ୍କ ମିଶନଥିଲା ଭାରତୀୟ ଦୁଗ୍ଧଉତ୍ପାଦନକାରୀ ଚାଷୀଙ୍କ ଉନ୍ନତି କରିବା, ବିଦେଶୀ ଗାଈ ବା ବିଦେଶୀ ଷଣ୍ଢ ଦ୍ୱାରା କୃତ୍ରିମ ପ୍ରଜନନ ତାଙ୍କ କାର୍ଯ୍ୟକ୍ରମରେ ନଥିଲା । ସେ କହୁଥିଲେ,'The aim of the Indian Dairy Movement is to develop the dairy farmer, not the dairy animal' । ଯେଉଁମାନେ NDDBର ମନ୍ଥନ ଓ ପଶୁପତି ସିନେମା ଦେଖିଥିବେ, ସେମାନେ ଏହି ନୀତିର ଆଭାସ ପାଇଥିବେ । କେବଳ କ୍ଷୀର ନୁହେଁ, ଜାତୀୟ ବଳଦପାଇଁ ସେ ଆମ ଦେଶୀ ଥରପାରକରର ବଂଶବୃଦ୍ଧି ପାଇଁ ମଧ୍ୟ ପ୍ରକଳ୍ପ କରିଥିଲେ । ଚାଷୀମାନେ ବାର୍ଷିକ

୫,୦୦୦କୋଟି ଟଙ୍କାର କାମ ବଳଦଙ୍କଠାରୁ ପାଇଥାନ୍ତି। ୧୯୫୦ ବେଳକୁ ଆମଦେଶରେ ଟ୍ରାକ୍ଟର ସଂଖ୍ୟା ମାତ୍ର ୫୦ଟି ଥିଲା। ଫୋର୍ଡ କମ୍ପାନୀ ଫର୍ଗୁସନ କମ୍ପାନୀ ଆମେରିକା,ହଲାଣ୍ଡ,ବିଲାତର ଟ୍ରାକ୍ଟର କମ୍ପାନୀମାନେ ଭାରତରେ ଟ୍ରାକ୍ଟର ବେପାର ପାଇଁ ବିଦେଶୀ ଗାଈ ସାହାଯ୍ୟ କଲା। ବିଦେଶୀ ଗାଈର ଅଣ୍ଡିରା ବାଛୁରୀଟିଏ ହେଲେ ଚାଷୀ ତାର ଶୀଘ୍ର ମୃତ୍ୟୁକୁ ଅପେକ୍ଷା କରେ। କାରଣ ଏମାନେ ବଳଦ ହୋଇପାରିବେ ନାହିଁ। ଏଣେ ଦେଶୀଗାଈ ପ୍ରତି ସରକାରଙ୍କର ବୈମାତୃକ ଭାବଯୋଗୁଁ ଦେଶୀ ବଳଦଙ୍କ ସଂଖ୍ୟା ଆଶାତୀତ ଭାବେ କମିଲା। ଟ୍ରାକ୍ଟରର ବେପାର ବଢ଼ିବ ହିଁ ବଢ଼ିବ। ସାମ୍ରାଜ୍ୟବାଦୀ ଆମେରିକା ଓ ପୁଞ୍ଜିବାଦୀ ୟୁରୋପୀୟ ଦେଶମାନଙ୍କର ବହୁଦେଶୀୟ କମ୍ପାନୀମାନଙ୍କର ବେପାର ବଢ଼ିଲା। କେବଳ ମହୀନ୍ଦ୍ରା ଓ ମହୀନ୍ଦ୍ରା ୧.୧୩ ଲକ୍ଷ ଟ୍ରାକ୍ଟର ବିକିଛି ୨୦୦୮ ରେ ୨୦୦୯ପାଇଁ ୧.୫ ଲକ୍ଷ ଟ୍ରାକ୍ଟର ଉତ୍ପାଦନର ଲକ୍ଷ୍ୟ ରଖିଛି। *(Economic Times-9.9.2009)*

୫୦ବର୍ଷ ତଳୁ ବିଦେଶୀରାଷ୍ଟ୍ରମାନେ ଭାରତରେ ଡାଇରୀ ଆନ୍ଦୋଳନକୁ ଖତମ କରିବାପାଇଁ ଯେଉଁ ଗଛ ଲଗାଇଥିଲେ, ଆଜି ତା'ର ଫଳ ଖାଉଛନ୍ତି। ବିଦେଶୀ ଷଣ୍ଢର ଶୁକ୍ର ମାଲିକମାନେ/କମ୍ପାନୀମାନେ ସଂଗ୍ରହ କରି ଶୁକ୍ର ବ୍ୟାଙ୍କ୍‌ରେ-୧୯୬ଡିଗ୍ରୀ ସେଲିସିୟସ ତାପରେ ସଂରକ୍ଷଣ କରିଛନ୍ତି। ସେହି ହିମୀକୃତ ଶୁକ୍ର ଆମ ଦେଶକୁ ବିକୁଛନ୍ତି କୃତ୍ରିମ ପ୍ରଜନନ ପାଇଁ। ଗୋଟିଏ ଗୋଟିଏ ଷଣ୍ଢରୁ ସେମାନେ ୧୦୦ କୋଟି ଟଙ୍କା ପର୍ଯ୍ୟନ୍ତ ରୋଜଗାର କରୁଛନ୍ତି। ଷଣ୍ଢ ମରିଯାଉ। ଏହି ସଂଗୃହୀତ ଶୁକ୍ର ଶହେବର୍ଷ ପର୍ଯ୍ୟନ୍ତ ବେପାର ହୋଇପାରିବ। ଡ଼ି.ଏଫ.ଆଇ.ଡି ମହାବାତ୍ୟା ବେଳେ କିଛି ଦୁହାଁଳିଆ ଗାଈଦେଇ ଏବଂ ଦୁଗ୍ଧ ସମବାୟର ଗୃହନିର୍ମାଣ ପାଇଁ ଆର୍ଥିକ ସହାୟତା କରି  ଦାନୀ ବୋଲାଉଛି। ମାତ୍ର କେତେଜଣ ଜାଣନ୍ତି ବିଲାତରୁ ଆସୁଥିବା ଶୁକ୍ରରେ ଗୋଟିଏ ଗାଈର କୃତ୍ରିମ ପ୍ରଜନନ କଲେ ଟ୨୦୦.୦୦ ମୂଲ୍ୟ ସେମାନେ ସରକାରଙ୍କ ଠାରୁ ନେଉଛନ୍ତି। ସରକାର ମଧ୍ୟ ପ୍ରଥମେ ମାଗଣା କୃତ୍ରିମ ପ୍ରଜନନ କରି ବର୍ତ୍ତମାନ ଟ୧୦ରୁ ୧୦୦ ଟଙ୍କା ମଧ୍ୟରେ ଗୋଟିଏ ଗାଈ ପାଇଁ ଆଦାୟ କଲେଣି।୧୯୯୦-୯୬ ମଧ୍ୟରେ ଆମ ସରକାର ଦେଶୀ ଷଣ୍ଢମାନଙ୍କପାଇଁ ସମୂହ ମୁଷ୍କଛେଦନ ଯୋଜନାରେ ସାରାଦେଶରୁ ଦେଶୀ ଷଣ୍ଢମାନଙ୍କୁ ଧରି ସେମାନଙ୍କର ମୁଷ୍କଛେଦନ କରିଦେଲେ। ନିଷ୍ଠୁରତାର ଆଉ ଅଧିକ ଉଦାହରଣ କ'ଣ ହୋଇପାରେ ? ଚାଷୀ ବର୍ତ୍ତମାନ ପଇସା ଦେଇ ଗାଈକୁ ଫଳାଇବାକୁ ବାଧ୍ୟ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

ଆମେ କ୍ଷୀରଉତ୍ପାଦନରେ ଆଜିବି ଆତ୍ମନିର୍ଭରଶୀଳ ହୋଇପାରିଲେ ନାହିଁ। ଏବେ ତ ହଲାଣ୍ଡ, ନ୍ୟୁଜିଲାଣ୍ଡ, ଡେନ୍‌ମାର୍କରୁ ଗୁଣ୍ଡଦୁଧ, ଟେଟ୍ରାପ୍ୟାକ୍, ତରଳ କ୍ଷୀର, ବଟର ଅଏଲର ସୁଅ ଆମଦେଶକୁ ଚାଲିଛି। ବିଶ୍ୱ ବାଣିଜ୍ୟ ସଂଗଠନ ପ୍ରତି ଆମର ଅଙ୍ଗୀକାରବଦ୍ଧତା ଏହାର କାରଣ। ୨୦୦୫ରେ କେନ୍ଦ୍ରସରକାର ଆଣ୍ଟି ଡମ୍ପିଂ ଡ୍ୟୁଟି ଛାଡ଼ କରିବା ଦ୍ୱାରା ନ୍ୟୁଜିଲାଣ୍ଡର ଘିଅ ଆମ ବଜାରକୁ ଅକ୍ତିଆର କରିଲା। ଆମ ଦେଶୀଘିଅର ମୂଲ୍ୟ ମଧ୍ୟ ଆଶାତୀତଭାବେ କମିଗଲା। କ୍ଷୀର ଗୁଣ୍ଡ ହେଉ ବା ବଟଲ ଅଏଲ ହେଉ ସେମାନେ ଶସ୍ତାରେ ବିକୁଛନ୍ତି ତ। ସେମାନଙ୍କର ଦେଶ ଡାଇରୀ ଚାଷୀଙ୍କୁ ଦିନକୁ ଗୋଟିଏ ଗାଈପିଛା ୫୦ଡଲାର ବା ୨,୫୦୦ ଟଙ୍କା ପର୍ଯ୍ୟନ୍ତ ସବ୍‌ସିଡ଼ି ଦେଉଥାନ୍ତି। ମାତ୍ର ଆମଦେଶରୁ ଗୁଣ୍ଡଦୁଧ ବିଶେଷକୁ ରପ୍ତାନୀ କରିବା ପାଇଁ ୨୦୦୭ ଫେବୃୟାରୀ ଠାରୁ ଅକ୍ଟୋବର ପର୍ଯ୍ୟନ୍ତ ବ୍ୟାନ୍ କରିବାଫଳରେ ଡାଇରୀ ସମବାୟମାନଙ୍କୁ ୫୦୦୦କୋଟି ଟଙ୍କା କ୍ଷତି ସହିବାକୁ ପଡ଼ିଲା। କ୍ଷୀରର ରାଜନୈତିକ ଅର୍ଥନୀତି ଘିଅପରି ଦାମିକା ହେଉନାହିଁକି ? ଧନ୍ୟରେ ଗଣତନ୍ତ୍ର ସରକାର। ଧନ୍ୟ ବିଦେଶ ପ୍ରୀତି !

ଦେଶରେ ଦୁଗ୍ଧ ଉତ୍ପାଦନବୃଦ୍ଧି, ଚାଷ ପାଇଁ ବଳଦ ଓ ନିରନ୍ତର ଗୋପାଳନ ପାଇଁ ବିକଳ୍ପ ତ' ଅଛି। ସବୁଠାରୁ ଜରୁରୀ ପଦକ୍ଷେପ ହେବ ଦେଶୀଗାଈର ବଂଶ ବୃଦ୍ଧିପାଇଁ ଓ ଜାତିଆବଳଦ ପାଇବାପାଇଁ ସାହିୱାଲି, ଥରପାରକର, ଓଙ୍ଗଲ, ଗିର ଓ ରେଡ଼ସିନ୍ଧି ଭଳି ଦେଶୀ ଷଣ୍ଢ ଦେଶସାରା ଯୋଗାଇବା ବା ସେହି ଜାତୀୟ ସୁସ୍ଥ ସବଳ ଉନ୍ନତ ଷଣ୍ଢମାନଙ୍କଠାରୁ ଶୁକ୍ର ସଂଗ୍ରହ କରି ଗାଁ ଗାଁରେ କୃତ୍ରିମ ପ୍ରଜନନ କରାଇବା। କ୍ଷୁଦ୍ର ଓ ନାମମାତ୍ର ଚାଷୀ ବିଦ୍ରୋହ କରିବା ଆଗରୁ ସରକାର ଏହି ପଦକ୍ଷେପ ନିଅନ୍ତୁ।



# କ୍ଷୀରରେ ବିଷ ରାଜନୀତି

୧୦ ଜାନୁଆରୀ ୨୦୧୨ । ସେଦିନ ପ୍ରମୁଖ ଖବରକାଗଜ ଟାଇମ୍ସ୍ ଅଫ୍ ଇଣ୍ଡିଆର ପ୍ରଥମ ପୃଷ୍ଠାରେ ଏକ ଚାଞ୍ଚଲ୍ୟକର ଖବର ପ୍ରକାଶ ପାଇଲା 'ଦେଶର ୭୦ ପ୍ରତିଶତ କ୍ଷୀର ଅପମିଶ୍ରିତ' । ଦେଶ ମାନେ ଆମ ଦେଶ ଭାରତକୁ ବୁଝାଉଛି । ଭାରତ ଖାଦ୍ୟ ସୁରକ୍ଷା ମାନକ ପ୍ରାଧିକରଣ କର୍ତ୍ତୃପକ୍ଷ (Food Safety Standards Authority of India) ଦିଲ୍ଲୀ ସମେତ ଦେଶର ୩୩ଟି ରାଜ୍ୟରୁ ୧,୭୯୧ଟି କ୍ଷୀର ନମୂନା ସଂଗ୍ରହ କରି ପଣ୍ଡିଚେରୀ, ପୁଣେ, ଗାଜିଆବାଦ, ଗୌହାଟୀ ଏବଂ କୋଲକାତାରେ ଥିବା କେନ୍ଦ୍ରୀୟ ଗବେଷଣା ଓ ପରୀକ୍ଷାଗାରମାନଙ୍କରେ ଏହି ନମୁନାଗୁଡ଼ିକ ପରୀକ୍ଷା କରାଇଥିଲେ । ଏହି ପରୀକ୍ଷାରୁ କେବଳ ୫୬୫ଟି (୩୧.୫ପ୍ରତିଶତ) ସରକାରୀ ନିର୍ଦ୍ଧାରିତ ମାନ ପୂରଣ କରୁଥିଲାବେଳେ ୧,୨୨୬ (୬୮.୪ ପ୍ରତିଶତ)ଟି ନମୁନା ଅପମିଶ୍ରିତ କ୍ଷୀର ବୋଲି ଜଣାପଡ଼ିଛି । କେରଳ, କର୍ଣ୍ଣାଟକ, ତାମିଲନାଡୁ ଏବଂ ଆନ୍ଧ୍ରପ୍ରଦେଶରୁ ସଂଗୃହୀତ ନମୁନାରେ ଅପମିଶ୍ରଣ ହାର ଅପେକ୍ଷାକୃତ କମ୍ । ଅପମିଶ୍ରଣର ମାତ୍ରା ୨୮ପ୍ରତିଶତରୁ ୬.୭ପ୍ରତିଶତ ମଧ୍ୟରେ । ଓଡ଼ିଶା, ଛତିଶଗଡ଼, ବିହାର, ପଶ୍ଚିମବଙ୍ଗ ଓ ଝାଡ଼ଖଣ୍ଡରୁ ସଂଗୃହୀତ ନମୂନାଗୁଡ଼ିକ ଶତ ପ୍ରତିଶତ ଅପମିଶ୍ରିତ । କ୍ଷୁଧା, ଶିଶୁ ଓ ମାତୃ ମୃତ୍ୟୁହାର, ପୁଷ୍ଟିହୀନତା ଏବଂ ଦାରିଦ୍ର୍ୟ ମାନକରେ ଓଡ଼ିଶା ଆଗଧାଡ଼ିରେ ଥିବା ତ ସମସ୍ତେ ଜାଣନ୍ତି । କ୍ଷୀର ଅପମିଶ୍ରଣ ଭଳି ଏକ ନିନ୍ଦନୀୟ ଘଟଣାରେ ମଧ୍ୟ ଓଡ଼ିଶା ଯେ ପ୍ରଥମ ସ୍ଥାନରେ ଅଛି, ଏହା ରାଜ୍ୟବାସୀ ଓ ରାଜ୍ୟ ସରକାରଙ୍କ ପାଇଁ ଏକ ଅପମାନ ଓ ଲଜ୍ଜାର କଥା ନୁହେଁ କି ?

ରାଜଧାନୀ ଦିଲ୍ଲୀରେ ବିତରଣ କରାଯାଉଥିବା କ୍ଷୀର ମଧ୍ୟ ୭୦ପ୍ରତିଶତ ଅପମିଶ୍ରିତ । ପୃଥିବୀର ବୃହତ୍ତମ ଦୁଗ୍ଧ ସମବାୟ ସଂସ୍ଥା ଜାତୀୟ ଦୁଗ୍ଧ ବିକାଶ ପରିଷଦ (National Dairy Development Board)ର ୨ଟି ବ୍ରାଣ୍ଡ୍ ଅମୂଲ ଓ ମଦର ଡାଇରୀର କ୍ଷୀର ଦିଲ୍ଲୀରେ ବିତରଣ ହୋଇଥାଏ । ଅତ୍ୟନ୍ତ କ୍ଷୋଭର ବିଷୟ ଏହିକି ଯେ ଦୁଗ୍ଧବନ୍ୟାର ରାଜ୍ୟ

■ *ଆଉ କେତେ ବିଷ ପିଇଲେ ଚେତିବା... !*

ଗୁଜୁରାଟରେ କ୍ଷୀରର ଭେଜାଲ ମାତ୍ରା ୮୯ ପ୍ରତିଶତ । ଜାତୀୟ ଡାଇରୀ ବିକାଶ ପରିଷଦରେ ଯେପର୍ଯ୍ୟନ୍ତ ରାଜନୀତି ପଶିନଥିଲା, ଏହାର ମାନ ଖୁବ୍ ଉଚ୍ଚରେ ଥିଲା । ଏହି ସଂସ୍ଥାରେ ଦଳୀୟ ରାଜନୀତି ପ୍ରବେଶ ପରେ ଏହା ପ୍ରଦୂଷଣଆଡ଼କୁ ମୁହାଁଉଛି । ନରେନ୍ଦ୍ର ମୋଦୀଙ୍କ ଭେଜାଲ ବିକାଶ ମଡ଼େଲର ଏହା ଏକ ନମୁନା । ମାତ୍ର ରାଜସ୍ଥାନ, ପଞ୍ଜାବ, ହରିୟାନା, ଉତ୍ତରପ୍ରଦେଶ ଏବଂ ମହାରାଷ୍ଟ୍ର ମଧ ଭେଜାଲ ଧାରାରେ ଅଧିକ ଖାଦ୍ୟ ସୁରକ୍ଷା ମାନକ କର୍ତ୍ତୃପକ୍ଷଙ୍କ ଅନୁସନ୍ଧାନ ରିପୋର୍ଟରେ ଗୋଆ ଓ ପଣ୍ଡିଚେରୀ କ୍ଷୀର ଶତପ୍ରତିଶତ ଶୁଦ୍ଧ ବୋଲି ଜଣାପଡ଼ିଛି । ଏହି ଦୁଇ ରାଜ୍ୟର ସରକାର, କ୍ଷୀରଚାଷୀ ଓ ଖାଉଟିମାନେ ନିଶ୍ଚିତଭାବେ ଏଥିପାଇଁ ଗର୍ବ କରୁଥିବେ । ମାତ୍ର ସେମାନେ ଜାଣିଲେ ଆଶ୍ଚର୍ଯ୍ୟ ହେବେ ଯେ ସେମାନଙ୍କର କ୍ଷୀର ହେଉ ବା ପୃଥିବୀର ଅନ୍ୟ ଯେକୌଣସି ଦେଶର କ୍ଷୀର ହେଉ, ଏହା ବିଷମୁକ୍ତ ନୁହେଁ । ସେ କଥାକୁ ପରେ ଆସିବା ।

କ୍ଷୀର ଅପମିଶ୍ରଣ ପରି ଏକ ଚାଞ୍ଚଲ୍ୟକର ଖବର ପ୍ରକାଶ ପାଇଲାପରେ ଦେଶସାରା ବେଶ୍ ହୋ-ହଲ୍ଲା ଆରମ୍ଭ ହୋଇଯାଇଛି । ଏଭଳି ନମୂନା ପରୀକ୍ଷା ଓ କେନ୍ଦ୍ର ସରକାର ଓ ରାଜ୍ୟ ସରକାରମାନଙ୍କ ଖୋଳତାଡ଼ ଦେଖି ଖାଉଟି, ବୁଦ୍ଧିଜୀବୀ ବା କ୍ଷୀର ଉତ୍ପାଦନକାରୀ ଚାଷୀମାନେ ଆଶ୍ଚର୍ଯ୍ୟ ହୋଇପାରନ୍ତି । କ୍ଷୀରରେ ଅପମିଶ୍ରଣ କ'ଣ ଆଜି ନୂଆ କଥା ? ପରିବେଶବିତ୍ ମାନଙ୍କମଧ୍ୟରୁ କେତେକ କହିପାରନ୍ତି, 'ଖାଲି ଅପମିଶ୍ରଣ କଥା କାହିଁକି ପଦାକୁ ଆସୁଛି ? କ୍ଷୀରରେ ବିଷ ଅଛି -ସେକଥା କାହିଁକି ଉଠୁନାହିଁ ?' ଦିଲ୍ଲୀ ଓ ଓଡ଼ିଶା ଉଚ୍ଚ ନ୍ୟାୟାଳୟ, ରାଜ୍ୟ ମାନବିକ ଅଧିକାର କମିଶନ ଭଳି ନ୍ୟାୟପାଳିକାମାନେ ସରକାରଙ୍କଠାରୁ ସ୍ପଷ୍ଟୀକରଣ ମାଗିଲେଣି । ଅଧିକରୁ ଅଧିକ ତଥ୍ୟ ଲୋକଲୋଚନକୁ ଆସୁଛି । କ୍ଷୀର ଭେଜାଲ ଜାଣି ଦିଲ୍ଲୀରେ ମା'ମାନେ ପିଲାଙ୍କୁ ବଜାର କ୍ଷୀର ପିଆଇବା ବନ୍ଦ କରିଦେଉଛନ୍ତି (New Indian express, 11Jan, 2012', 'Ma why does this milk taste like detergent.') । ସହରାଞ୍ଚଳର ବହୁ ସଚେତନ ଲୋକ କ୍ଷୀର କିଣିବା ବନ୍ଦ କରିଦେଉଥିବା ଖବର ମଧ ମିଳୁଛି । ମାସେ, ୧୫ଦିନ ଏ ନାଟକ ଚାଲିବ । ଲୋକେ ଭୁଲିଯିବେ । ସାଧାରଣ ଲୋକଙ୍କ ସ୍ମରଣ ଶକ୍ତି କମ୍ ତ' । ସରକାରଙ୍କୁ ଏକଥା ବେଶ୍ ମାଲୁମ୍ । ଭେଜାଲ ପ୍ରକ୍ରିୟା ପୁଣି ନୂଆ ରୂପ ନେଇ ମାଡ଼ିଚାଲିବ, ଏଭଳି ସନ୍ଦେହକୁ ଏଡ଼ାଇ ଦିଆଯାଇନପାରେ । ଓଡ଼ିଶାରେ ସମବାୟ ଦୁଗ୍ଧ ଫେଡ଼େରେସନ (ସଂଘ)-'ଓମ୍‌ଫେଡ଼' ରାଜ୍ୟରେ ଉତ୍ପାଦିତ କ୍ଷୀରର ୨୭ପ୍ରତିଶତ ପ୍ରକ୍ରିୟାକରଣ କରି ଖାଉଟିଙ୍କୁ ବିକ୍ରି କରିଥାଏ । ମାନ୍ୟବର ଓଡ଼ିଶା ଉଚ୍ଚନ୍ୟାୟାଳୟ ଏକ ଜନସ୍ୱାର୍ଥ ମାମଲାର ବିଚାର କରି ରାଜ୍ୟ ସରକାରଙ୍କୁ ନୋଟିସ୍

କରିଛନ୍ତି ସରକାର ଓମ୍‌ଫେଡ୍ କ୍ଷୀରର ଶୁଦ୍ଧତା ନେଇ ସତ୍ୟପାଠ କରନ୍ତୁ (New Indian Express, 20Jan, 'Adulterated Milk: Notice To Govt and OMFED)।

କ୍ଷୀର ଅପମିଶ୍ରଣ ପାଇଁ କ'ଣ କ'ଣ ବ୍ୟବହାର କରାଯାଉଛି ? କେଉଁମାନେ ଓ କେଉଁ ପରିସ୍ଥିତିରେ ଏପରି ଅପମିଶ୍ରଣ କରୁଛନ୍ତି ? ସରକାରୀ, ଘରୋଇ ଡାଇରୀ, ଗୋଆଲାମାନଙ୍କର ଅପମିଶ୍ରଣର ଭୂମିକା କ'ଣ ? ଆଗରୁ କେବେ କ୍ଷୀର ଅପମିଶ୍ରଣ କଥା ଉଠିଥିଲା ଓ କ'ଣ ପଦକ୍ଷେପ ନିଆଯାଇଛି ? କ୍ଷୀର ଅପମିଶ୍ରଣ ବାହାନାରେ ସରକାର ଓ କ୍ଷୀର କମ୍ପାନୀମାନଙ୍କର କିଛି ଷଡ଼ଯନ୍ତ୍ର ଅଛି କି ? ବିଶୁଦ୍ଧ କ୍ଷୀର ଆଗରୁ କେବେ ମିଳୁଥିଲା ? ଏହିଭଳି କେତେକ ପ୍ରଶ୍ନର ଉତ୍ତର ଖୋଜିଲେ ଭବିଷ୍ୟତରେ ବିଶୁଦ୍ଧ କ୍ଷୀର ମିଳିବା ପାଇଁ ରାସ୍ତା ଦେଖାଯିବ।

ଅତ୍ୟନ୍ତ ସହଜ ଓ କ୍ଷୀର ଅପମିଶ୍ରଣର ପ୍ରଧାନ ଉପାଦାନ ପାଣି। କ୍ଷୀର ଓ ନୀର ସମ୍ପର୍କର ନିବିଡ଼ତା ଆମେ ଜାଣୁ। ଯେଉଁ କ୍ଷୀରରେ ଟୋପାଏ ପାଣି ମିଶି ନଥାଏ, ତାହାକୁ ନିରୁତା କ୍ଷୀର କୁହନ୍ତି। ଏହାର ମୂଲ୍ୟ ଅଧିକ। ଲିଟରକୁ ୧୦୦ମିଲିଲିଟର ଠାରୁ ଆରମ୍ଭ କରି ଲିଟରରେ ଲିଟରେ ପାଣି ମିଶାଇବାର ଚଳଣି ମଧ୍ୟ ଆମ ରାଜ୍ୟରେ ଅଛି। ଯେଉଁଠି ନିରୁତା କ୍ଷୀର ଲିଟରକୁ ୨୫ଟଙ୍କା, ପାଣିମିଶା କ୍ଷୀର ୨୦ଟଙ୍କାରୁ ୧୦ଟଙ୍କା ପର୍ଯ୍ୟନ୍ତ ପାଣିର ମାତ୍ରା ଅନୁସାରେ ହୋଇଥାଏ। ଆମ ରାଜ୍ୟରେ ଓମ୍‌ଫେଡ୍ କ୍ଷୀରର ବିକ୍ରୀମୂଲ୍ୟ ଲିଟର ପ୍ରତି ୨୪ଟଙ୍କା ରହିଛି। ମାତ୍ର ଏହା ନିରୁତା କ୍ଷୀର ନୁହେଁ। ଏଥିରୁ ଚିକ୍କଣ କାଢ଼ି ଓମ୍‌ଫେଡ୍ ଦୁଧଗୁଣ୍ଡ ମିଶାଇଥାଏ। କ୍ଷୀରର ମୂଲ୍ୟ ଏଥିରେ ଥିବା ଛେନା (Solid Not Fat-SNF) ଓ ଚିକ୍କଣ (fat)ର ଅନୁପାତକୁ ନେଇ ସ୍ଥିର କରାଯାଏ। କ୍ଷୀରରେ ୮.୫ ପ୍ରତିଶତ ଛେନା (solid Not Fat) ଏବଂ ୪.୫ପ୍ରତିଶତ ଚିକ୍କଣ (Fat) ଥିବା କ୍ଷୀରର ମୂଲ୍ୟ ଚାଷୀପାଏ ଲିଟର ପ୍ରତି ୧୬ଟଙ୍କା ୬୫ପଇସା। ମାତ୍ର ଓମ୍‌ଫେଡ୍ ଖାଉଟୀଙ୍କୁ ବିକୁଥିବା କ୍ଷୀରର ମାନ ଛେନା ୮.୫%,ଓ ଘିଅ ୩.୫%। ଲିଟରପ୍ରତି ୨ ପ୍ରତିଶତ ଘିଅ କାଢ଼ି ନେଇ ଓମ୍‌ଫେଡ୍ ୪ଟଙ୍କାର ଅଧିକ ଲାଭ କରିଥାଏ। ଅର୍ଥାତ୍ ଚାଷୀକୁ ୧୬ଟଙ୍କା ୬୫ ପଇସା ଦେଉଥିବା ସ୍ଥଳେ ଓମ୍‌ଫେଡ୍ ୨୮ଟଙ୍କା ପାଉଛି। ଲିଟର ପ୍ରତି ୧୨ଟଙ୍କା ଲାଭ। ଚାଷୀକୁ କେତେ ଅଧିକ ଶୋଷଣ କରାଯାଉଛି, ସଚେତନ ବୁଦ୍ଧିଜୀବୀ ଭାବନ୍ତୁ ତ !

ସହରରେ ଗୋଆଲାମାନେ ଗାଇଚିରରୁ କ୍ଷୀର ଦେଉଛନ୍ତି ବୋଲି ସତ ଫଳେଇ କୁହନ୍ତି। ଖାଉଟୀକୁ ଠିଆ କରାଇ ଗାଈ ଦୁହଁନ୍ତି। ମାତ୍ର କୌଶଳ କରି ଗାଈ ଦୁହାଁ ବାଲତିରେ ପାଣି ନେଇଥାନ୍ତି। ବେଳେବେଳେ ଅଣ୍ଟାରେ ପାଣି ଭର୍ତ୍ତି ଟିଉବ ବାନ୍ଧି ସେଥିରୁ ଆଖି ପିଛୁଳାକେ

ଗାଈଦୁହାଁ ବାଲତିକୁ ପାଣି ଛାଡ଼ି ଦିଅନ୍ତି। ଖାଉଟୀ ପ୍ରାୟ ଏପ୍ରକାର ଜାଲିଆତି ଧରିପାରନ୍ତି ନାହିଁ। ଠାଏ ଠାଏ ଜାଣିଲେ ମଧ ନଜାଣିଲା ପରି ନୀରବ ରୁହନ୍ତି। ଭରସିକରି କଥା ଫିଟାନ୍ତି ନାହିଁ। କାଳେ ଆସନ୍ତା କାଲି ଆଉ କ୍ଷୀର ମିଳିବ ନାହିଁ। ଗୋଆଲାମାନେ ଘରେ ଘରେ ବୁଲି ଯେଉଁ କ୍ଷୀର ବିକନ୍ତି, ବେଳେବେଳେ ନାଳନର୍ଦ୍ଦମାରୁ ମଧ ପାଣି ମିଶାଇବାକୁ ଡରନ୍ତି ନାହିଁ। ସରକାରୀ ହେଉ, କମ୍ପାନୀ ହେଉ, ବେପାରୀ ହେଉ ବା କେତେକ ଅସାଧୁ ଚାଷୀ ହୁଅନ୍ତୁ; ଲାଭପାଇଁ ସବୁ ଅପକର୍ମ କରିପାରନ୍ତି। ଏପରି ଦୂଷିତ ପାଣିମିଶା କ୍ଷୀର ଯୋଗୁଁ ଖାଉଟୀର ପରିବାର, ବିଶେଷତଃ ପିଲାମାନେ ଡାଇରିୟା, ଜଣ୍ଡିସ୍, ଟାଇଫଏଡ୍ ଭଳି ମାରାତ୍ମକ ରୋଗର ଶିକାର ହୋଇଥାନ୍ତି। ଶତ ପ୍ରତିଶତ ପାଣି ମିଶା କ୍ଷୀରରେ ଗୁଣ୍ଡଦୁଗ୍ଧ ମିଶାଇ ଛେନା ବେପାରୀମାନେ ବଜାରରେ ଯେଉଁ ଛେନା ବିକନ୍ତି, ମାଗଣା ମିଳିଲେ ମଧ ଖାଇବା ଉଚିତ ନୁହେଁ। ଏହା କେବଳ ଅପମିଶ୍ରିତ ନୁହେଁ, ବିଷାକ୍ତ ମଧ।

ପାଣି ଛଡ଼ା କ୍ଷୀରରେ ଲୁଣ, ଚିନି, ଗ୍ଲୁକୋଜ, ସ୍କିମଡ୍ ମିଲ୍କ ପାଉଡ଼ର, ସୋଡ଼ିୟମ ବାଇକାର୍ବୋନେଟ୍ (ଖାଇବା ସୋଡ଼ା), ୟୁରିୟା, ଡେଟରଜେଣ୍ଟ, ନଡ଼ିଆରସ, ଚିନାବାଦାମ କ୍ଷୀର, ସୋୟାବିନ୍ କ୍ଷୀର, ଚର୍ବି ଓ ଖାଇବା ତେଲ ଭଳି ନାନା ରକମର ଜିନିଷ ମିଶାଇ କ୍ଷୀରକୁ ବିଷାକ୍ତ କରାଯାଉଛି। ଚାଷୀମାନେ କ୍ଷୀର ଓମ୍‌ଫେଡ୍ ବା କମ୍ପାନୀମାନଙ୍କୁ ବିକ୍ରି କଲେ କ୍ଷୀରରେ ଥିବା ଛେନା ଅଂଶ (solid not fat) ଏବଂ ଚିକ୍କଣ (fat) ବଢ଼ାଇବା ପାଇଁ ଏହିସବୁ ଜିନିଷରୁ ଏକାଧିକ ମିଶାଇଥାନ୍ତି। କ୍ଷୀରରେ ଏସ୍‌ଏନ୍‌ଏଫ୍ ବଢ଼ାଇବା ପାଇଁ ଲୁଣ, ଚିନି, ଗ୍ଲୁକୋଜ, ସ୍କିମ୍‌ଡ଼ ମିଲ୍କ ପାଉଡ଼ର (ଦୁଧଗୁଣ୍ଡ), ୟୁରିୟା, ଚିନାବାଦାମ କ୍ଷୀର ଓ ସୋୟାବିନ୍ କ୍ଷୀର ଭଳି ପଦାର୍ଥ ମିଶାଇବାକୁ ହୋଇଥାଏ। କ୍ଷୀରରେ ଏସ୍‌ଏନ୍‌ଏଫ୍ ପରିମାଣ ଜାଣିବାପାଇଁ ଲ୍ୟାକ୍ଟୋମିଟର ବ୍ୟବହାର କରାଯାଏ। ଲ୍ୟାକ୍ଟୋମିଟରେ ମାପ ୨୮-୩୨ ରହିଲେ ଛେନା ଅଂଶ ୮.୫ ପ୍ରତିଶତ ହେବ। ତେଣୁ ପାଣିମିଶା କ୍ଷୀରରେ ଉପରୋକ୍ତ ପଦାର୍ଥରୁ ଗୋଟିଏ ଦୁଇଟି ମିଶାଇଲେ ଛେନା ମାପ ଆସିଯିବ। କେତେକ ଅସାଧୁ ଚାଷୀ କ୍ଷୀରର ଉପର ଅଂଶ କାଢ଼ି ରଖିଥାନ୍ତି। ଉପର କ୍ଷୀରରେ ଅଧିକ ଘିଅ। ଘିଅ ୪.୫ ପ୍ରତିଶତ କରିବା ପାଇଁ କ୍ଷୀରରେ ଖାଇବା ତେଲ ବା ଚର୍ବି ଅଥବା ନଡ଼ିଆ ରସ ମିଶାଇଥାନ୍ତି। ଖାଇବା ତେଲ ବା ଚର୍ବି ତ କ୍ଷୀରରେ ଭଲ ମିଶିବ ନାହିଁ। କ୍ଷୀରରେ ଡେଟରଜେଣ୍ଟ ମିଶାଇଲେ ତାହା ଖାଇବା ତେଲ ବା ଚର୍ବିକୁ କ୍ଷୀରରେ ବେଶ୍ ମିଶାଇ ଦେବ। ଡେଟରଜେଣ୍ଟ ଇମ୍ୟୁଲାଇଜର କାମ କରେ। ଡେଟରଜେଣ୍ଟ ନମିଳିଲେ ସାମ୍ପୋ ମଧ ବ୍ୟବହାର କରାଯାଇଥାଏ। ଖରାଦିନେ ରାତି କ୍ଷୀର ଓ ଦିନ କ୍ଷୀର ମିଶାଇ ବେପାରୀକୁ ଯେଉଁମାନେ ବିକନ୍ତି, କ୍ଷୀର ନ ଛିଣ୍ଡିବାପାଇଁ

ଖାଇବା ସୋଡ଼ା ପକାଇଥାନ୍ତି। ଭୋଜି ଭାତରେ କ୍ଷୀର ଆଉଟିଲାବେଳେ ରୋଷେୟା ଖାଇବାସୋଡ଼ା ଟିକେ ପକାଇବା ଦେଖିଥିବେ। ଗୋଆଲାମାନେ ସହରକୁ କ୍ଷୀର ପଠାଇଲା ବେଳେ କ୍ଷୀରରେ ୟୁରିୟା ମଧ ପକାଇଥାନ୍ତି। ଏହା ଦ୍ୱାରା କ୍ଷୀର ନଛିଣ୍ଡି ଅଧିକ ସମୟ ବଞ୍ଚିପାରିବ। ୟୁରିୟାକୁ ପାଖରେ ଦେଖିଲେ ଏହାର ତୀବ୍ର ବିଷାକ୍ତ ଓ ଦୁର୍ଗନ୍ଧ ବାରିହେବ। ସହରର ମା'ମାନେ ସେମାନଙ୍କ ପିଲାମାନଙ୍କର ଉତ୍ତମ ସ୍ୱାସ୍ଥ୍ୟ ପାଇଁ ଏହି ୟୁରିୟାମିଶ୍ରିତ କ୍ଷୀର କିଣିବାକୁ ବାଧ ହୋଇଥାନ୍ତି। (Head And Tail- Menaka Gandhi, P-85)।

ନକଲି ବା ସିନ୍ଥେଟିକ୍ କ୍ଷୀରର ଚଳଣି ଦିଲ୍ଲୀ ଓ ଉତ୍ତର ଭାରତର ବହୁ ସହରରେ ଅଛି। ନକଲି କ୍ଷୀର ତିଆରି ପାଇଁ ୨୫୦ମିଲିଲିଟର ଖାଇବା ତେଲ ସହିତ ୨୦ ମିଲିଲିଟର ତରଳ ଡେଟରଜେଣ୍ଟ, ମୁଠାଏ ୟୁରିୟା, କିଛି ଚିନି ସହିତ ୨/୩ଲିଟର ପାଣି ମିଶାଇ ଘାଣ୍ଟିଦେଲେ ବେସ୍ ଧୋବ ଫର ଫର ଫେଣଲଗା କ୍ଷୀର ତିଆରି ହୋଇଗଲା। ୟୁରିୟା ଏବଂ ଚିନି ଯୋଗୁଁ ନକଲି କ୍ଷୀରରେ ଛେନା ଅଂଶ ୮.୫ପ୍ରତିଶତ ଏବଂ ଖାଇବା ତେଲରୁ ଘିଅ ମାପ ୪.୫ପ୍ରତିଶତ ଆସିଯାଏ। ବାସ୍ ନିରୁତା କ୍ଷୀର ମିଳିଗଲା ! ଡେଟରଜେଣ୍ଟ ଏହି ଅପମିଶ୍ରଣକୁ ଦୁଧିଆ ରଙ୍ଗ କରିଥିବା ବେଳେ ୟୁରିୟା ଯୋଗୁଁ ଏହି ଅପମିଶ୍ରଣକୁ ୮ଘଣ୍ଟା ପରେ ଫୁଟାଇଲେ ମଧ ଏହା ଛେନା ଛିଣ୍ଡେ ନାହିଁ। ବିଜ୍ଞାନ, ବୈଜ୍ଞାନିକ ଓ ବେପାରୀମାନଙ୍କ ଦ୍ୱାରା ଉଦ୍ଭାବିତ ଏହି ନକଲି କ୍ଷୀର ! (Indian Express, March 3, 1996, 'Beware! The Morning Glass of Milk could be soap and Detergent)। ଫର୍ମାଲ ଡିହାଇଡ଼ ଓ ହାଇଡ୍ରୋଜେନ ପେରକ୍ସାଇଡ଼୍ ଭଳି ରାସାୟନିକ ବିଷ ମଧ ସିଧା କ୍ଷୀରରେ ମିଶାଯାଉଛି କ୍ଷୀରକୁ ବେଶୀ ସମୟ ବଞ୍ଚାଇ ରଖିବା ପାଇଁ ଏବଂ ଅପମିଶ୍ରିତ କ୍ଷୀରର ରଙ୍ଗ ସଫେଦ୍ କରିବା ପାଇଁ।

କ୍ଷୀର ଅପମିଶ୍ରଣ ପାଇଁ କେବଳ ଚାଷୀକୁ ଦାୟୀ କରାଯାଇନପାରେ। କ୍ଷୀର ବେପାରୀ, ସରକାରୀ ବା କମ୍ପାନୀ ଡାଇରୀ ଏବଂ ସ୍ଥଳ ବିଶେଷରେ କ୍ଷୀର ସମବାୟ ସଂସ୍ଥା ମାନଙ୍କର ଭୂମିକା ମଧ କମ୍ ନୁହେଁ। ଚାଷୀଟିଏ ଆଜିଦିନରେ ଗୋଟିଏ ଲିଟର ନିରୁତାକ୍ଷୀର ପାଇଁ ୨୫ଟଙ୍କା ଖର୍ଚ୍ଚ କରୁଛି। ଦାନା କିଲୋକୁ ୧୮ଟଙ୍କା (ଚୋକଡ଼+ମୁଗଚୁନି+ପିଡ଼ିଆ+ମକା)। ନଡ଼ା ବିଡ଼ାକୁ ୩ଟଙ୍କା। ଗୁହାଳ ଗୋବର ୩ ଟଙ୍କା। ରୋଗ ବଇରାଗ ଖର୍ଚ୍ଚ ଲିଟର ପ୍ରତି ୪ଟଙ୍କା। ଏସବୁକୁ ମିଶାଇ ଗାଉଁଲି ହିସାବରେ ଲିଟର ପ୍ରତି ଖର୍ଚ୍ଚ ବରଂ ୨୫ଟଙ୍କାରୁ ଅଧିକ ଆସିବ। କମ୍ପାନୀ ବା ଓମ୍ଫେଡ୍ ଭଳି ସଂସ୍ଥାମାନେ ଲିଟର ପ୍ରତି ୧୫ଟଙ୍କାରୁ ଅଧିକ

ପ୍ରାୟତଃ ଦିଅନ୍ତି ନାହିଁ। ଗୋଆଲାମାନେ ଲିଟର ପ୍ରତି ଏବେ ମଧ୍ୟ ୧୦ଟଙ୍କା ଦେଉଛନ୍ତି। ପ୍ରକାରାନ୍ତରେ ଚାଷୀକୁ ସବୁଜସଙ୍କେତ ଦେଉଛନ୍ତି ପାଣି ବା ଅନ୍ୟାନ୍ୟ ଅପମିଶ୍ରଣ କରିବା ପାଇଁ। ଚାଷୀ ବଞ୍ଚିବା ପାଇଁ ନିଜର ବିବେକ ବିରୁଦ୍ଧରେ ଏପରି ଅପକର୍ମ କରିଥାଏ। କାହା ପାଖେ ଗୁହାରି କରିବ ? ସରକାରଗୁଡ଼ାକ ତ' ସଂଖ୍ୟାକୁ ଧରି ମଜଗୁଲ। ଆମ ଦେଶରେ କେନ୍ଦ୍ର ଓ ରାଜ୍ୟ ସରକାରମାନେ କୃଷକବିରୋଧୀ। ନହେଲେ ୧୦ବର୍ଷ ଭିତରେ ଅଢ଼େଇଲକ୍ଷ ଚାଷୀ ଆତ୍ମହତ୍ୟା କରୁଥାନ୍ତେ ? ପୃଥିବୀରେ ଆଉ ଏପରି କେଉଁ ଦେଶ ଅଛି ?

ଆମ ଓଡ଼ିଶା କଥା ନକହିଲେ ଭଲ। NDDB ସହାୟତାରେ ୧୯୮୦ ଜାନୁଆରୀ ୨୬ତାରିଖ ଦିନ ଓମ୍‌ଫେଡ୍ ଜନ୍ମନିଏ। ଓଡ଼ିଶାର ଲକ୍ଷ ଲକ୍ଷ କ୍ଷୀର ଚାଷୀଙ୍କୁ ସମବାୟ ସୂତ୍ରରେ ବାନ୍ଧି ସେମାନଙ୍କ ଠାରୁ ସଂଗ୍ରହ କରି ଚାଷୀକୁ ନ୍ୟାଯ୍ୟ ମୂଲ୍ୟ ଦେବା ଓ ଖାଉଟୀକୁ ଶୁଦ୍ଧ କ୍ଷୀର ଯୋଗାଇବା ଲକ୍ଷ୍ୟରେ ଅମୁଲ ଢାଞ୍ଚାରେ ସାରା ରାଜ୍ୟରେ କ୍ଷୀର ସମବାୟ ଗଠନ କରାଗଲା। ଅମୁଲ ଢାଞ୍ଚା ତ୍ରିସ୍ତରୀୟ ସମବାୟର ବିଶେଷତ୍ୱ ସମବାୟଗୁଡ଼ିକ ଚାଷୀଦ୍ୱାରା, ଚାଷୀମାନଙ୍କର ଓ ଚାଷୀ ପାଇଁ ଉଦ୍ଦିଷ୍ଟ। କାଗଜ କଲମରେ ଏସବୁ କଥା ରହିଛି। ଓମ୍‌ଫେଡ୍‌ରେ ତ୍ରିସ୍ତରୀୟ ନିର୍ବାଚନ ନିୟମିତ ହୁଏନାହିଁ। ଦୁଗ୍ଧ ଉତ୍ପାଦନକାରୀ ସମବାୟ ସମିତିର ପରିଚାଳନା ବୋର୍ଡ଼ର ଅଧ୍ୟକ୍ଷ ଓ ସମ୍ପାଦକଙ୍କର ନିଜ ସମିତି। ନିୟମିତ ବୋର୍ଡ଼ ମିଟିଂ ବା ସାଧାରଣ ସଭା ହୁଏନାହିଁ। ଜିଲ୍ଲା ସଂଘ (Union) ବା ଫେଡ଼େରେସନ କେବଳ କ୍ଷୀର କିଣି ପଇସା ଶାଗମାଛରେ ଦିଅନ୍ତି। ପ୍ରଶିକ୍ଷଣ, ଗୋରୁ ଗାଈଙ୍କ ସ୍ୱାସ୍ଥ୍ୟ ସୁରକ୍ଷା ଭଳି କାମ କରନ୍ତି ନାହିଁ। ଜିଲ୍ଲା ସଂଘ ଗୁଡ଼ିକରେ ଚାଷୀମାନେ ପରିଚାଳନା ପରିଷଦର ନାମକୁ ମାତ୍ର ସଭ୍ୟ। ଗୋରୁ ମୁଣ୍ଡ ଥାପି କପା ତୋଳିବା ନ୍ୟାୟରେ ସଂଘ ପରିଚାଳକ (Union Manager) ବର୍ଷେ ଦୁଇବର୍ଷରେ ଥରେ ଅଧେ ବୋର୍ଡ଼ ମିଟିଂ ଡକାଇଥାନ୍ତି। ବୋର୍ଡ଼ର ଅଧ୍ୟକ୍ଷ ଜଣେ ଚାଷୀ ପ୍ରତିନିଧି ହେବାର ଉପବିଧିରେ ନିର୍ଦ୍ଧାରିତ ଥିଲେ ମଧ୍ୟ ସରକାର ଜିଲ୍ଲାପାଳମାନଙ୍କୁ ବୋର୍ଡ଼ ଅଧ୍ୟକ୍ଷ ଦାୟିତ୍ୱ ଦେଇଥାନ୍ତି। ଜଣେ ଚାଷୀ ଅଧ୍ୟକ୍ଷହେଲେ ଲକ୍ଷ ଲକ୍ଷ ଚାଷୀ ଭାଇମାନଙ୍କୁ ଯେଉଁ ନ୍ୟାୟ ଦେଇପାରିବ, ଜିଲ୍ଲାପାଳମାନଙ୍କ ଠାରେ ସେପରି ଆଶା କରିବା ବୃଥା। ସେ ମହାଶୟ ଜଣେ ଭାରତୀୟ ପ୍ରଶାସନିକ ଅଧିକାରୀ। ହୁକୁମ ଦେବା ତାଙ୍କ କାମ। ଚାଷୀର ଭଲମନ୍ଦ ବୁଝିବାକୁ ରାଜ୍ୟ ସରକାର କ'ଣ ତାଙ୍କୁ ଥୋଇଛି। ସୁବିଧାବେଳ ଦେଖି ସଂଘ ପରିଚାଳକ ଜିଲ୍ଲାପାଳମାନଙ୍କଠାରୁ ଦସ୍ତଖତ କରାଇନେଇ ଚାଷୀକୁ ଶୋଷଣ କରିଥାନ୍ତି। କ୍ଷୀର ବ୍ୟବସାୟରୁ ଲାଭରୁ ସେମାନେ ମୋଟା

ଦରମା, ଗସ୍ତଖର୍ଚ୍ଚ, ଗାଡ଼ିଘୋଡ଼ା କିଣାରେ ବେପରୁଆ ଭାବେ ଖର୍ଚ୍ଚ କରିଥାନ୍ତି। ସଂଘକୁ ଖୋଳ କରିଦିଅନ୍ତି। ଚାଷୀ ଲାଭାଂଶ ପାଆନ୍ତି ନାହିଁ। ଯଦି କେତେବେଳେ କେମିତି ବୋନସ୍ ମିଳେ, ତାହା ଯଦୁମଣିଙ୍କ ପରେ ପାଣି କହିଲେ ଚଳେ। ଯଦି କେତେବେଳେ କେମିତି ସଂଘ ପରିଚାଳନା ପରିଷଦ (Board) ସଭ୍ୟ କେହି କେହି ପାଟିତୁଣ୍ଡ କରନ୍ତି ସେମାନଙ୍କୁ ମଦ, ମାଂସ ଓ ଦରକାର ପଡ଼ିଲେ କିଛି ଟଙ୍କା ପଇସା ଦେଇ ସେମାନଙ୍କର ପାଟି ବନ୍ଦ କରିଦେବା ଦକ୍ଷତା ସଂଘ ପରିଚାଳକଙ୍କର ଥାଏ। ସଂଘର ଜାଲିଆତି ଚରିତ୍ର ମଧ୍ୟରେ ଅବଶ୍ୟ ଜଣେ ଜଣେ ଭଲ ମ୍ୟାନେଜର ଅଛନ୍ତି।

ଏବେ ଓମ୍‌ଫେଡ୍‌ର ଶୀର୍ଷ ପରିଚାଳନା ପରିଷଦ କଥା କହିବା। ଏହି ବୋର୍ଡ଼ପାଇଁ କେତେବେଳେ ନିର୍ବାଚନ ହୁଏ ନାହିଁ। ସରକାରଙ୍କ ମନୋନୀତ ବ୍ୟକ୍ତିମାନେ ପରିଚାଳନା ପରିଷଦର ସଭ୍ୟ ରୁହନ୍ତି। ଜଣେ ସର୍ବଭାରତୀୟ ପ୍ରଶାସନିକ ଅଧିକାରୀ ବା ବେଳେବେଳେ ସରକାରୀ ଦଳର ଅସଫଳ ନେତାଙ୍କୁ ଅଧ୍ୟକ୍ଷ କରି ବସାଇ ଦିଆଯାଏ। ଜଣେ ହେଲେ କ୍ଷୀର ଚାଷୀ ଓମ୍‌ଫେଡ୍ ବୋର୍ଡ଼ରେ ଗତ ୩୨ ବର୍ଷ ଭିତରେ ସ୍ଥାନ ପାଇନାହାନ୍ତି। ପିଲା କାନ୍ଦିଲେ ସିନା ମା କ୍ଷୀର ଦେବ। ଜଣେ ଚାଷୀ ଓମ୍‌ଫେଡ୍‌ର ଅଧ୍ୟକ୍ଷ ପଦବୀରେ ବସିଲେ ସିନା ଚାଷୀର ଭଲମନ୍ଦ ସବୁକିଛି ବୁଝୁଥାନ୍ତା। ସରକାରୀ ଲୋକ ନିଜେ ହଡ଼ପ ନକରି ଚାଷୀପାଇଁ ଭାବିବା, ଏପରି ଆଶା କରିବା ନିର୍ବୋଧତା ନୁହେଁ କି ? ଓମ୍‌ଫେଡ୍ ବସ୍ତୁତଃ ଏକ 'ଚାଷୀ ମାରଣ ଯନ୍ତା' କହିଲେ ଅତ୍ୟୁକ୍ତି ହେବନାହିଁ।

ବର୍ତ୍ତମାନ କ୍ଷୀରରେ ଅପମିଶ୍ରଣ କଥା ପଦାକୁ ଆସିବାରୁ ରାଜ୍ୟ ସରକାର ଓ ଓମ୍‌ଫେଡ୍ ଖୋଳତାଡ଼ ଆରମ୍ଭ କରିଛନ୍ତି। କଟକ ଦୁଗ୍ଧ ସମବାୟ ସଂଘ (Cuttack District Milk Union) ଦୈନିକ ପ୍ରାୟ ୨ ଲକ୍ଷ ଲିଟର କ୍ଷୀର ଓମ୍‌ଫେଡ୍‌କୁ ଯୋଗାଇଥାଏ। କଟକ, ଜଗତସିଂହପୁର, କେନ୍ଦ୍ରାପଡ଼ା ଓ ଯାଜପୁର ଜିଲ୍ଲାର ୧୨୭୦ଟି ଦୁଗ୍ଧ ଉତ୍ପାଦନକାରୀ ସମବାୟ ଏବେ ଓମ୍‌ଫେଡ୍ ସ୍କ୍ୱାର୍ଡ଼ର କୋପଦୃଷ୍ଟିରେ। କ୍ଷୀର ଅପମିଶ୍ରିତ ଦର୍ଶାଇ ଓମ୍‌ଫେଡ୍ ହଜାର ହଜାର ଲିଟର କ୍ଷୀର ଫେରାଇଦେଉଛି। ଅମୃତ ହାଣ୍ଡିରେ ଟୋପାଏ ବିଷ ପଡ଼ିଲେ ହାଣ୍ଡିଟାଯାକ ବିଷ ପାଲଟିଯାଏ। ପାଞ୍ଚ ତିନିଜଣ ଅସାଧୁ ଚାଷୀ କ୍ଷୀର ଭେଜାଲ କରି ସମିତିକୁ ଦେଲେ। ଯାଞ୍ଚ ହେଲା ତ ସମିତିର ସମସ୍ତ କ୍ଷୀର ଅପମିଶ୍ରିତ ଘୋଷଣା ହେଲା। କ୍ଷୀର ଫେରାଇ ଦିଆଗଲା। ଚାଷୀକୁ ମୂଲ୍ୟ ମିଳିଲା ନାହିଁ। (No Payment)। ଚାଷୀ ଘରୋଇ କମ୍ପାନୀଆଡ଼କୁ ମୁହାଁଇଲେ। (ଅପମିଶ୍ରିତ କ୍ଷୀରକୁ ନେଇ ସଂଘ ଓ

ସମିତିର ମୁଣ୍ଡ ବ୍ୟଥାଟି ଚାଷୀ ଘରୋଇ କମ୍ପାନୀ ମୁହାଁ- ସମାଜ. ତା. ୨୧.୧.୨୦୧୨,ପୃଷ୍ଠା-୯)।

ଆମ ରାଜ୍ୟର ଛତୁ ଫୁଟିଲା ଭଳି ଘରୋଇ ଡାଇରୀ ମାଡ଼ିଯାଉଛି। କାମଧେନୁ, ସିସୋର, ମିଲ୍କସିଟି, ମିଲ୍କମନ୍ତ୍ର, ଅମ୍ରିତ ଭଳି ଘରୋଇ କମ୍ପାନୀମାନଙ୍କର ଏବେ କଟେପୁଅ ବାର। ମିଛି ମିଛିକା 'ଆମେ ଏହି ଅପମିଶ୍ରିତ ଭେଜାଲ କ୍ଷୀର ରଖି ବଦନାମ ହେବୁନାହିଁ' କହି କ୍ଷୀର ରଖୁଛନ୍ତି। ଚାଷୀକୁ କମ୍ ପଇସା ଦେବା ସହଜ ହୋଇଯାଉଛି। ଓଡ଼ିଶାରେ ଦୈନିକ ୧୫/୧୬ ଲକ୍ଷ ଲିଟର କ୍ଷୀର ଉତ୍ପାଦନ ହୁଏ। ଓମ୍‌ଫେଡ୍ ମାତ୍ର ୪ଲକ୍ଷ ଲିଟର ଓ ଘରୋଇ କମ୍ପାନୀମାନେ ପ୍ରାୟ ୨ଲକ୍ଷ ଲିଟର କାରବାର କରିଥାନ୍ତି। ଅବଶିଷ୍ଟ ୯/୧୦ଲକ୍ଷ ଲିଟର କ୍ଷୀର ଗୋଆଲାମାନେ ଛେନା ବ୍ୟବସାୟ କରିଥାନ୍ତି। ଓଡ଼ିଶାରୁ ଛେନା କଲିକତା ମଧ୍ୟ ଯାଏ। ରସଗୋଲା, ସନ୍ଦେଶ ଓ ଅନ୍ୟାନ୍ୟ ମିଠା ପାଇଁ। ଘରୋଇ କମ୍ପାନୀ ଓ ଗୋଆଲାମାନେ କ୍ଷୀରକୁ ଯେତେ ପାରନ୍ତି ଅପମିଶ୍ରଣ କରନ୍ତି। ତାଙ୍କର ଲାଭ ଦରକାର ନା। ଖାଉଟି ମରୁ, ଚାଷୀ ମରୁ। ଆମ ସରକାର ତ ଘରୋଇ କମ୍ପାନୀ ଓ ଛେନାବେପାରୀଙ୍କ କ୍ଷୀର ଯାଞ୍ଚ କରୁନାହାନ୍ତି। କେତେକ ଫୁସ୍‌ଫା ବିଜେଡ଼ିର ଜଣେ ଦୁଇଜଣ ତୁଙ୍ଗନେତା ଓ ବିଦେଶୀ ଭାରତୀୟଙ୍କର କେତୋଟି ଘରୋଇ ଡାଇରିରେ ଭାଗିଦାରୀତା ଅଛି। ଛେନା ବେପାରୀଙ୍କର ମଧ୍ୟ ଜୋରଦାର ଲବି ଅଛି। ସରକାରୀ ଅଧିକାରୀଙ୍କ ସାହସ ପାଉନାହିଁ ଘରୋଇ କମ୍ପାନୀ ବା ଛେନା ବେପାରୀଙ୍କ ଦିହରେ ହାତ ମାରିବା ପାଇଁ।

ଶୁଣାଯାଏ ଏବଂ ପରିଚାଳନା ଶୈଳୀରୁ ଜଣାପଡ଼େ ଗତ ୪/୫ହେଲା ଓଡ଼ିଶା ସରକାର ଏକ ଗୁପ୍ତ ଯୋଜନା କରୁଛନ୍ତି ଓମ୍‌ଫେଡ଼୍‌କୁ ଘରୋଇକରଣ କରିବା ପାଇଁ। ଭାରତର ସମସ୍ତ ରାଜ୍ୟ ଦୁଗ୍ଧ ଫେଡ଼େରେସନ୍‌ର ଅଧ୍ୟକ୍ଷ ଜଣେ ଜଣେ ଦୁଗ୍ଧଚାଷୀ ଥିବାବେଳେ ଓଡ଼ିଶାରେ ଏହାର ବ୍ୟତିକ୍ରମ କାହିଁକି ?

ପଶ୍ଚିମବଙ୍ଗରେ ଇଚ୍ଛାମତୀ ଡାଇରୀ କେବଳ ମହିଳା ମାନଙ୍କର, ମହିଳାମାନଙ୍କ ପାଇଁ ଏବଂ ମହିଳାମାନଙ୍କ ଦ୍ୱାରା ପରିଚାଳିତ। ଏହି ଦୁଗ୍ଧ ସମବାୟ ଦୈନିକ ୫୦ହଜାର ଲିଟର କ୍ଷୀର କାରବାର କରେ। ଏହାର ଅଧ୍ୟକ୍ଷ ଜଣେ ମହିଳା। ଓଡ଼ିଶାର ଚାଷୀ କ'ଣ ଏଡ଼େ ନିକମ୍ମା ? ଓଡ଼ିଶାରେ ଗୋଟାଏ ଫାସିବାଦୀ ସରକାର ଚାଲିଛି ତ। ଓମ୍‌ଫେଡ଼୍‌ର ସମିତି ସଂଖ୍ୟା ୩୨୫୦। ଦୁଇଲକ୍ଷ ଚାଷୀ ପରିବାର ଏହାର ପରିସରଭୁକ୍ତ। ଦୈନିକ ୫ଲକ୍ଷ ଲିଟର କ୍ଷୀର କାରବାର କରୁଛି। ଚାଷୀ ଏଠି ଗୌଣ। ଓଡ଼ିଶାରେ ଚାଷୀ ସଙ୍ଗଠିତ ନୁହନ୍ତି।

ଜଗନ୍ନାଥ ଧାମ। ଅଞ୍ଚଳେ ସନ୍ତୁଷ୍ଟ। ଗୋଡ଼ ଟଣାଟଣି ଅଛି। ଲଢ଼େଇକୁ କିଏ ବାହାରୁଛି। ଆପେ ବଞ୍ଚିଲେ ବାପାର ନା ନୀତିରେ ସମସ୍ତେ ଅଛନ୍ତି। ସାବଧାନ ସରକାର ତ ତାଙ୍କ ଅକ୍ତିଆରରେ ଓମ୍‌ଫେଡ୍‌କୁ ରଖିଛନ୍ତି। କେଉଁଦିନ ସକାଳୁ ଉଠି ଚାଷୀଭାଇ ଦେଖିବ ତ ଆଉ ଓମ୍‌ଫେଡ୍ ନାହିଁ। ଗୋଟେ ଘରୋଇ ବା ବିଦେଶୀ କମ୍ପାନୀ ମାଲିକହେଲାଣି। ପୁଣି ପଲସନ୍‌ଯୁଗକୁ ଫେରିବାକୁ ପଡ଼ିବ। 'କ୍ଷୀର ଅପମିଶ୍ରଣ' ସରକାରଙ୍କୁ ଏଥିପାଇଁ ଖୋରାକ ଯୋଗାଇବ। ଦେଶୀ ବିଦେଶୀ ଡାଇରୀ କମ୍ପାନୀମାନଙ୍କର ଓମ୍‌ଫେଡ୍ ଉପରେ ଆଖି।

ଏଥର କ୍ଷୀରରେ ମାରାତ୍ମକ ବିଷ କଥାକୁ ଆସିବା। ଅଶିଦଶକରେ କ୍ଷୀର ବିଷମାତ୍ରା ପରୀକ୍ଷା ପାଇଁ ୧୨ଟି ରାଜ୍ୟରୁ ନମୁନା ପରୀକ୍ଷା କରାଯାଇଥିଲା। ICMR (Indian Council of Medical Research) ଏହି ଯାଞ୍ଚକାର୍ଯ୍ୟ ହାତକୁ ନେଇଥିଲା। ୨୨୦୫ଟି ନମୁନା ପରୀକ୍ଷା କରାଯାଇଥିଲା। ପରୀକ୍ଷାରୁ ୧୮୭୪ଟି ନମୁନାରେ ବିଟା-ଏଚ୍‌ସିଏଚ୍ (Beta- Hexa Chlorocyclohexane-HCH)ର ଅବଶିଷ୍ଟାଂଶ (Residue) ଥିବାର ପ୍ରମାଣ ମିଳିଥିଲା। ସମସ୍ତ ନମୁନାରେ ଡିଡିଟି (Dichloro di-phenyle chloroethane) ମାତ୍ରା ନିର୍ଦ୍ଧାରିତ ମାତ୍ରାଠାରୁ ଅଧିକ ଥିଲା। ଭାରତୀୟ କୃଷି ଅନୁସନ୍ଧାନ ପରିଷଦ (Indian Council of Agriculture Research - ICAR) ନବେ ଦଶକରେ ମଧ୍ୟ ଅନୁରୂପ ପରୀକ୍ଷା କରିଥିଲେ। ସେମାନଙ୍କ ଅନୁସନ୍ଧାନରୁ ମଧ୍ୟ କ୍ଷୀରରେ HCH I DDT ମାତ୍ରା ଅଧିକ ଥିବାର ପ୍ରମାଣ ମିଳିଥିଲା। ଆନ୍ଧ୍ର ପ୍ରଦେଶର କ୍ଷୀରରେ DDT ମାତ୍ରା ସର୍ବାଧିକ ଥିବା ଜଣାପଡ଼ିଥିଲା ବେଳେ ୭୭.୮ ପ୍ରତିଶତ ନମୁନାରେ HCHର ମାତ୍ରା ଅଧିକ ଥିବା ଜଣାପଡ଼ିଥିଲା। ପଞ୍ଜାବ, ମହାରାଷ୍ଟ୍ର ଓ ବିହାରରୁ ମିଳିଥିବା ନମୂନାଗୁଡ଼ିକରେ HCHର ମାତ୍ରା ଅଧିକ ଥିଲା। DDT ଏବଂ HCH ଘିଅରେ ଦ୍ରବଣୀୟ। ତେଣୁ କ୍ଷୀରରୁ ଘିଅପ୍ରସ୍ତୁତ ବେଳେ ଲହୁଣୀ ବା ଘିଅକୁ ଅଧିକ ବିଷ ଚାଲିଯାଇଥାଏ। ଯେହେତୁ କ୍ଷୀରରେ ଏହି ଦୁଇଟି ବିଷ କୀଟନାଶକର ମାତ୍ରା ଅଧିକ ଥିବା ଆମେ ଜାଣୁଛେ, ଦୁଗ୍ଧଜାତ ଦ୍ରବ୍ୟ ଲହୁଣୀ, ଘିଅ ଓ ଛେନାରେ ଏହାର ମାତ୍ରା ବହୁଗୁଣରେ ବଢ଼ିଯାଏ। ଆମେ ଖାଉଥିବା ଛେନା, ଲହୁଣୀ ଓ ଘିଅ, ରସଗୋଲାରେ ଯେ ବିଷ ଏବଂ ଉତ୍କଟ ବିଷ ବର୍ତ୍ତମାନ କ୍ଷୀର ଅପମିଶ୍ରଣକୁ ଏକଥା ଆସିନାହିଁ। (Pesticides In India- Toxic link-Page-35)

DDT ଓ HCHର ମାତ୍ରା ମଧ୍ୟ ଗାଈକ୍ଷୀରରୁ ମା'ମାନଙ୍କ କ୍ଷୀରକୁ ଆସିଥାଏ। ଶିଶୁପାଇଁ ଏଗୁଡ଼ିକ ଅତ୍ୟନ୍ତ ମାରାତ୍ମକ। ବୟସ୍କ ଲୋକମାନେ DDT ଓ HCH ମିଶ୍ରିତ କ୍ଷୀର ବା

କ୍ଷୀରଜାତ ଦ୍ରବ୍ୟ ବ୍ୟବହାର କରୁଥିବା ଯୋଗୁଁ କର୍କଟ, ବକ୍ଷକର୍କଟ, ବନ୍ଧ୍ୟାତ୍ୱ, ପୁରୁଷତ୍ୱହାନୀ, ବହୁମୂତ୍ର, ଏପିଲେପ୍‌ସି, ପକ୍ଷାଘାତ, ଚର୍ମରୋଗ ଭଳି ବହୁରୋଗର ଶିକାର ହୋଇଥାନ୍ତି । DDTର କୃଷିକ୍ଷେତ୍ରରେ ବ୍ୟବହାର ନିଷିଦ୍ଧ ହୋଇଥିଲେ ମଧ୍ୟ ମ୍ୟାଲେରିଆ ନିୟନ୍ତ୍ରଣ ପାଇଁ ଏହା ଏବେ ମଧ୍ୟ ବ୍ୟବହାର ହେଉଛି । ଗୋ ଖାଦ୍ୟରେ ଏହା ମିଶିବା ଖୁବ୍ ସହଜ ହେଉଛି । ଆମେରିକାର ଫୁଡ୍ ଆଣ୍ଡ୍ ଡ୍ରଗ୍ ଆଡ଼ମିନିଷ୍ଟ୍ରେସନ ରେଗୁଲେସନ୍‌ସନ୍ କ୍ଷୀରରେ କୌଣସି ପ୍ରକାର କୀଟନାଶକ ଅବଶେଷ (Pesticide Residue) ନ ରହିବା ପାଇଁ ନିୟମ ପ୍ରଣୟନ କରିଛି । ମାତ୍ର DDT, HCH ଭଳି ମାରାତ୍ମକ କୀଟନାଶକ ତ ଚାଷରେ ବ୍ୟବହାର ହେଉଛି । ତେଣୁ ଘାସ, ମକା, କପା, ସୋୟାବିନ୍, ନଡ଼ା, କୁଟାରେ ଏହାର ଉପସ୍ଥିତି ରହୁଛି । ଆର୍ଜେଣ୍ଟିନାରୁ ଆମଦାନୀ ଆଲ୍‌ଫା ଆଲ୍‌ଫା ଘାସରେ ମଧ୍ୟ ଏମାନଙ୍କର ଉପସ୍ଥିତି ପରୀକ୍ଷା ଦ୍ୱାରା ଜଣାପଡ଼ିଛି । ତେଣୁ ଆମେରିକା ଓ ୟୁରୋପିୟାନ୍ ୟୁନିଅନ୍‌ର ବେପାର କ୍ଷୀର ଓ କ୍ଷୀର ଗୁଣ୍ଡ ଏ ବିଷରୁ ମୁକ୍ତ ନୁହେଁ । (Silent Spring-Page-141) । 'ବୁଦ୍ଧି ନଆସଇ ଘରକୁ, ବୁଦ୍ଧି ବତାଉଛି ପର'କୁ ନୀତିରେ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନେ ନିଜ ଦେଶରେ ବିଷମିଶ୍ରିତ କ୍ଷୀର ବେପାର କରୁଥିଲାବେଳେ ଭାରତରେ କ୍ଷୀରରେ ଏକଚାଟିଆ ବେପାର କରିବା ପାଇଁ ଚକ୍ରାନ୍ତ କରି କୁହନ୍ତି ଆମ କ୍ଷୀର ଅପମିଶ୍ରିତ । ଇଣ୍ଡୋସଲଫାନ୍, ୨,୪-ଡ଼ି, ରାଉଣ୍ଡ ଅପ୍, ବ୍ରେଟାକ୍ଲୋର, କ୍ଲୋରୋପ୍ଲାଇପସ୍, ଥିମେଟ୍ ଭଳି ଶଙ୍ଖୁଆବିଷ ଠାରୁ ଭୟଙ୍କର ବିଷ କୀଟନାଶକ ଫସଲ, ପନିପରିବା, ଘାସମରା ପାଇଁ ପୃଥିବୀ ସାରା ବ୍ୟବହାର ହେଉଛି । ବିଶୁଦ୍ଧ କ୍ଷୀର ଆସିବ କେଉଁଠୁ ? ଗାଈ, ମଇଁଷିଙ୍କର କ୍ଷୀର ବଢ଼ାଇବା ପାଇଁ କେତେକ ମାରାତ୍ମକ ହର୍ମୋନ ବ୍ୟବହାର କରାଯାଇଥାଏ । ଦୁହାଁଳିଆ ଗାଈ ଅଧିକଦିନ କ୍ଷୀର ଦେବାପାଇଁ ପ୍ରୋଲାକ୍ଟିନ୍ ନାମକ ଏକ ସିନ୍ଥେଟିକ ହର୍ମୋନ ବ୍ୟବହାର କରାଯାଏ । ମୁମ୍ବେଇର ଗୋଶାଳାମାନଙ୍କରୁ କ୍ଷୀର ପରୀକ୍ଷା କରି କ୍ଷୀରରେ ପ୍ରୋଲାକ୍ଟିନ୍ ହର୍ମୋନ୍ ଥିବାର ଜଣାପଡ଼ିଛି । NDDBର ଏକ୍‌ଜିକ୍ୟୁଟିଭ ଡାଇରେକ୍ଟର ଡ.ଏମ୍.ପି.ଜି. କୁରୁପଙ୍କ ଅନୁସନ୍ଧାନରୁ ଜଣାପଡ଼ିଛି ହର୍ମୋନ ଥିବା ଏହି କ୍ଷୀର ବ୍ୟବହାର କରିବା ଦ୍ୱାରା ଯକ୍ଷ୍ମା, ବ୍ରୁସେଲୋସିସ୍, ଆଣ୍ଠୁଲାନ (ଗଣ୍ଠିଦରଜ ଓ ଫୁଲିବା) ଏବଂ ବନ୍ଧ୍ୟାତ୍ୱ ଭଳି ରୋଗମାନ ହୋଇଥାଏ । ଗାଈ, ମଇଁଷିଙ୍କଠାରୁ ଶୀଘ୍ର କ୍ଷୀର କାଢ଼ିବାପାଇଁ ଅକ୍‌ସିଟୋସିନ୍ ନାମକ ଏକ ହର୍ମୋନ୍ ଇଞ୍ଜେକସନ୍ ବ୍ୟବହାର କରାଯାଏ । ହର୍ମୋନ୍ ଇଞ୍ଜେକସନ୍ ଡାକ୍ତରଙ୍କ ପରାମର୍ଶ ବିନା ପ୍ରୟୋଗ କରିବା ନିଷିଦ୍ଧ ଅଛି । ମାତ୍ର ଗୋଆଲାମାନେ ବେଶ୍ ସହଜରେ ଅକ୍ସିଟେକ୍‌ସିନ ଇଞ୍ଜେକସନ ଗାଈ, ମଇଁଷିକୁ ଫୋଡ଼ି ସହଜ ଓ ଶୀଘ୍ର କ୍ଷୀର ଦୁହିଁଥାନ୍ତି । ଆମେ ଯେଉଁ କ୍ଷୀର ବ୍ୟବହାର କରୁ,

ସେଥିରେ ଅକ୍ସିଟେକ୍ସିନ ରେସିଡ୍ୟୁ ଥାଏ। ଏହାଦ୍ୱାରା ଝିଅମାନଙ୍କ ସ୍ୱାସ୍ଥ୍ୟରେ କୁପ୍ରଭାବ ପଡ଼ିଥାଏ। କ୍ଷୀରରେ ସଂକ୍ରମିତ ଗୋଖାଦ୍ୟ ଯୋଗୁଁ ଆର୍ସେନିକ୍, କାଡ଼ିମମ୍, ଦସ୍ତା, ତମ୍ବା ଓ ସୀସା ଭଳି ଭାରିଧାତୁର ଅଂଶଥିବାର ଅମୁଲ କ୍ଷୀର ଓ ଲହୁଣି ପରୀକ୍ଷା ଦ୍ୱାରା ଜଣାପଡ଼ିଥିଲା। ଏହିସବୁ ଭାରି ଧାତୁ ପ୍ରଭାବରେ ଶିଶୁମାନଙ୍କର ମସ୍ତିଷ୍କ, ଶରୀର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ, ବୃକକ୍, କର୍କଟ ଭଳି ରୋଗ ହୋଇଥାଏ। ଆମେ କେତେଜଣ ଏତେ ଭିତରକୁ ଯାଉଛେ ?

ଆମେରିକାର ମନ୍‌ସାଣ୍ଟୋ ବହୁରାଷ୍ଟ୍ରୀୟ କମ୍ପାନୀ ୧୯୮୩ ମସିହାରେ ଗାଈ ମଇଁଷିଙ୍କ ପୁଷ୍ଟିସାଧନ ପାଇଁ ଏକ ହର୍ମୋନ ଉଦ୍‌ଭାବନ କଲା। ଜୈବ ପ୍ରଯୁକ୍ତି ବିଦ୍ୟା (BIOTECHNOLOGY) ପ୍ରୟୋଗ କରି ବୋଭାଇନ୍ ସେମାଟ୍ରୋଟ୍ରୋପାଇନ୍ (BO-VINE SOMATO-TROPINE-bst) ହର୍ମୋନ୍ ପ୍ରୟୋଗ ଦ୍ୱାରା ଗାଈ , ମଇଁଷିଙ୍କର କ୍ଷୀର ଉତ୍ପାଦନ ପରିମାଣ ୨୦ପ୍ରତିଶତ ବଢ଼ିଗଲା। ବେପାରରେ ଖୁବ୍ ଲାଭ। ଗୋଟିଏ ଗାଈ ପାଇଁ ବାର୍ଷିକ ହର୍ମୋନ ଖର୍ଚ୍ଚ ୨୦୦ଡଲାର (୧୦ହଜାର ଟଙ୍କା) ବର୍ତ୍ତମାନ ଡଲାରର ଅବ-ମୂଲ୍ୟାୟନ ହିସାବରେ)। (Return To Nature- A Dosier Of South Asian Network) ସେଇ ମନ୍‌ସାଣ୍ଟୋ କମ୍ପାନୀ ୧୯୯୩ମସିହାରେ ରିକୋମ୍ବିନାଣ୍ଟ ବୋଭାଇନ୍ ଗ୍ରୋଥ୍ ହର୍ମୋନ ନାମକ ଆଉ ଏକ ଔଷଧ ତିଆରିକରି ବଜାରକୁ ଛାଡ଼ିଲା। (Recom-binant Bovine Growth Hormone -RBGH)। ଏହି ଔଷଧ ଗାଇକୁ ଦିଆଗଲେ କ୍ଷୀର ପରିମାଣ ୪୦ପ୍ରତିଶତ ବଢ଼ିପାରେ। ୨୦୦୨ସୁଦ୍ଧା ଏହି ହର୍ମୋନ୍ ପୃଥିବୀର ୨୨ପ୍ରତିଶତ ଦେଶରେ ପ୍ରଚଳନ ହୋଇଗଲା। ଆମେରିକା, ଦକ୍ଷିଣ ଆଫ୍ରିକା, ବ୍ରାଜିଲରେ ଏହାର ପ୍ରଚଳନ ଖୁବ୍ ବେଶୀ। RBGH ହର୍ମୋନ୍ ଖାଇଥିବା ଗାଈର କ୍ଷୀର ବ୍ୟବହାର କଲେ ସ୍ତନ, ମୁତ୍ରାଶୟ, ମଳଦ୍ୱାର, ଫୁସ୍‌ଫୁସ୍‌ରେ କ୍ୟାନସର ହେବାର ବହୁ ପ୍ରମାଣ ମିଳିଛି। (Genetic Roulette-Jeffrey M. Smith, page-156- findings by Fredrich-Wilhem Graefe Zu Baringdorf- Former Vice President Of The Agriculture Committee Of The European Union)।

ଆଉ କେତେ ବିଷ କ୍ଷୀର ପିଇଲେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ କାରସାଦି ଜାଣିପାରିବା ? କମ୍ପାନୀ କ୍ଷୀର, ବିଦେଶ କ୍ଷୀର କେତେ ଶୁଦ୍ଧ ? ଡକାୟତମାନେ ଆମ ଚାଷୀକୁ ମାରିବାପାଇଁ କ୍ଷୀର ଅପମିଶ୍ରଣ କଥା କହୁଛନ୍ତି। ବିଷ ଓ ଅପମିଶ୍ରଣର ମୁଖ୍ୟ କଳାକାରମାନେ କିଏ ଜାଣିହେଉଛି ତ ? ଚାଲୁଣି କହୁଛି ଛୁଞ୍ଚିକୁ ତୋ' ଦେହରେ ଗୋଟେ କଣା !

ପୃଥିବୀର ବୃହତ୍ତମ ସାମ୍ୟବାଦୀ ରାଷ୍ଟ୍ର ଚୀନ୍‌ର କ୍ଷୀର ଘୋଟାଲା କଥାଟି ଏଠାରେ ପ୍ରକାଶ କଲେ କମ୍ପାନୀ କ୍ଷୀରର ମହତ୍ୱ ଆହୁରି ସ୍ପଷ୍ଟ ହୋଇଯିବ। ସେପ୍ଟେମ୍ବର ୯, ୨୦୦୮। ଚୀନ୍‌ର ଗଣମାଧ୍ୟମରେ ପ୍ରକାଶ ପାଇଲା, 'କ୍ଷୀରରେ ମାଲେମାଇନ' ଅପମିଶ୍ରଣ ଯୋଗୁଁ ହଜାର ହଜାର ଶିଶୁ ଅସୁସ୍ଥ। ସେପ୍ଟେମ୍ବର ୧୦, ୨୦୦୮କୁ ପୃଥିବୀର ସବୁ ବଡ଼ ବଡ଼ ଗଣମାଧ୍ୟମରେ ଚୀନ୍‌ର କ୍ଷୀର ଘୋଟାଲା ଖବର ପ୍ରକାଶ ପାଏ। ୨୦୦୮ ନଭେମ୍ବର ବେଳକୁ ୩ଲକ୍ଷ ଶିଶୁ ଆକ୍ରାନ୍ତ ହେଲେଣି। ୬ଟି ଶିଶୁ କିଡ୍‌ନୀରେ ପଥର ଓ କୀଡ଼ନି ସଂକ୍ରମଣଜନିତ ଅନ୍ୟ ରୋଗରେ ଆକ୍ରାନ୍ତ ହୋଇ ମଲେଣି। ପୃଥିବୀର ସବୁ ବଡ଼ ଦେଶ ଆମେରିକା, ୟୁରୋପିୟାନ୍ ୟୁନିଅନ୍ ଚୀନ୍‌ର କ୍ଷୀର ଓ କ୍ଷୀରଜାତ ଦ୍ରବ୍ୟ ଆମଦାନି ବନ୍ଦ କରିଦେଲେ। ଭାରତ ମଧ୍ୟ ଚୀନ୍‌ରୁ ଚକୋଲେଟ୍ ଆମଦାନୀ ଉପରେ ଅଙ୍କୁଶ ଲଗାଇଦେଲା। ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା (WHO) କହିଲା, 'China's Milk Scandal Is One Of The Largest Food Safety Events On The World'।

ମାଲାମାଇନ ଗୋଟିଏ ରାସାୟନିକ ପଦାର୍ଥ। ଏଥିସହିତ ଫର୍ମାଲ ଡିଭାଇଡ୍ ମିଶାଇ ରେସିନ୍ (ଏକପ୍ରକାର ପ୍ଲାଷ୍ଟିକ) ତିଆରି ହୁଏ। କ୍ଷୀରରେ ମାଲାମାଇନ୍ ମିଶାଇଲେ କ୍ଷୀରର ଛେନା ଅଂଶ (Solid Not Fat) ବଢ଼ିଯାଏ। ମାଲାମାଇନ୍ ଜଳରେ ଅଦ୍ରବଣୀୟ। ଏଥି ସହିତ ଫର୍ମାଲ ଡିହାଇଡ୍ ମିଶାଗଲେ ଏହା କ୍ଷୀରରେ ମିଶିଯାଉଥାଏ। WHOର ଦ୍ୱିତୀୟ ରିପୋର୍ଟ ଆସେ 'Malamide Scandal is a large scale intentional activitiy to deceive consumers for simple, basic short-term profit.' କେଉଁମାନେ ଚୀନ୍ କ୍ଷୀର ବେପାରରେ ଦଲାଲି କରୁଥିଲେ। ନିଉଜିଲାଣ୍ଡ, ଡେନମାର୍କ, ସୁଇଜରଲ୍ୟାଣ୍ଡର କ୍ଷୀର କମ୍ପାନୀ, ବିଲାତର କ୍ୟାଡ଼ବରି, ୟୁନିଲିଭର, ନେସ୍‌ଲେ ଭଳି ବହୁ ବିଦେଶୀ କମ୍ପାନୀମାନେ ଏ କେଳେଙ୍କାରିର ଖଳନାୟକ। ପୃଥିବୀର ବୃହତ୍ତମ ସାମ୍ୟବାଦୀ ରାଷ୍ଟ୍ର ଚୀନ୍‌ର ବିଦେଶୀ ପ୍ରୀତିର ମାଲାମାଇନ୍ ସ୍କାଣ୍ଡାଲ ଏକ ଜ୍ୱଳନ୍ତ ଉଦାହରଣ।

ଆମ ଦେଶରେ ଯେଉଁ କ୍ଷୀର ଅପମିଶ୍ରଣ ନାଟକବାଜି ଏବେ ଚାଲିଛି, ବିଦେଶୀ କ୍ଷୀର କମ୍ପାନୀମାନଙ୍କର ଏଥିରେ ହାତଥିବା ଆଉ ସନ୍ଦେହର କଥା ନୁହେଁ। ଭାରତର କ୍ଷୀରବଜାର ଦଖଲ ପାଇଁ ଏହା ଏକ ଅଭିନବ ଚକ୍ରାନ୍ତ। ଲୁଚିଚି ନା ଗୋଡ଼ ଦିଟା ଦିଶୁଛି– ଗହିରାଭାବେ ନଦେଖିଲେ ଜାଣିହେବ। ଭାରତରେ କ୍ଷୀର ବ୍ୟବସାୟର ଇତିହାସ ଉପରେ ଆଖି ପକାଇଲେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କର ଦୁଷ୍କାର୍ଯ୍ୟ, ସାମ୍ରାଜ୍ୟବାଦୀ ଆମେରିକାର ଭାରତ ସରକାରଙ୍କ

ଉପରେ ଚାପ ଏବଂ 'କ୍ଷୀରରେ ବିଷ' ରାଜନୀତି ବୁଝିହେବ। 'ପଲସନ ଡାଇରୀ'ଗୋଟିଏ ସୁଇଜରଲ୍ୟାଣ୍ଡ କମ୍ପାନୀ। ଗୁଜୁରାଟର କ୍ଷୀର ଉତ୍ପାଦନ ପାଇଁ ନାମ ଅଛି। ପଲସନ ଗୁଜୁରାଟର ଆନନ୍ଦ ଜିଲ୍ଲାରେ କ୍ଷୀର ବେପାର ଆରମ୍ଭ କରି ଦିଲ୍ଲୀ, ବମ୍ବେ, କଲିକତା ଭଳି ସହରକୁ କ୍ଷୀର, ଛେନା, ଲହୁଣୀ ପଠାଉଥିଲା। ଚାଷୀମାନଙ୍କୁ ଶୋଷଣର ମାତ୍ରା ଅସହ୍ୟ ହେଲା। ଚାଳିଶି ଦଶକରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ନେତୃତ୍ୱରେ ଚାଷୀମାନେ ସଙ୍ଗଠିତ ହୋଇ ଆନ୍ଦୋଳନ କଲେ। ପଲସନକୁ ବିଦାକରି ଅମୁଲ ଡାଇରି କୋଅପରେଟିଭ୍ ତିଆରି କଲେ। ଚାଷୀମାନଙ୍କ ଦ୍ୱାରା ଅମୁଲର ସଫଳ ପରିଚାଳନା ଏବଂ ଚାଷୀମାନଙ୍କୁ କ୍ଷୀରର ଉଚିତ ମୂଲ୍ୟ ଏବଂ ଲାଭାଂଶରୁ ପ୍ରତିବର୍ଷ ବୋନସ ବଣ୍ଟନ ଦ୍ୱାରା ଅମୁଲ ଡାଇରୀର ପ୍ରସାର ମଧ ହେଲା। ଡଃ ଭର୍ଗିଜ୍ କୁରିଏନ ଏହାର ମ୍ୟାନେଜର ଥାନ୍ତି। ଷାଠିଏ ଦଶକରେ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀଙ୍କ ପ୍ରସ୍ତାବ ଓ ଅମୁଲର ବିନ୍ଧାଣି କୁରିଏନ୍ଙ୍କ ଉଦ୍ୟମରେ ଜାତୀୟ ଦୁଗ୍ଧ ବିକାଶ ପରିଷଦ, ଆନନ୍ଦ (National Dairy development Board, Ananda) ଜନ୍ମ ନେଲା। NDDBର ବୈଷୟିକ ପରାମର୍ଶ ଓ ଆର୍ଥିକ ସହାୟତାରେ ଦେଶସାରା ଅମୁଲ ଢାଞ୍ଚାରେ ତ୍ରିସ୍ତରୀୟ ଦୁଗ୍ଧ ସମବାୟ ମାନ ଗଢ଼ିଉଠିଲା। ଚାଷୀମାନଙ୍କର, ଚାଷୀମାନଙ୍କ ପାଇଁ ଏବଂ ଚାଷୀମାନଙ୍କ ଦ୍ୱାରା ଗଠିତ ସମବାୟଗୁଡ଼ିକ ଭାରତବର୍ଷରେ ସଫଳତା ସହିତ କାମ କରୁଛି। NDDBର ସଫଳ କାହାଣୀର ସଂକ୍ଷିପ୍ତ ସୂଚନା ହେଲା ଏହା ପୃଥିବୀରେ ବୃହତ୍ତମ ସମବାୟ ପରିଚାଳିତ ଡାଇରୀ ସଂସ୍ଥା। NDDBର ତତ୍ତ୍ୱାବଧାନରେ ଭାରତବର୍ଷରେ ୧,୩୩,୩୪୯ଟି ଗ୍ରାମ୍ୟ ଦୁଗ୍ଧ ଉତ୍ପାଦନ ସମବାୟ ସମିତି ପ୍ରତିଦିନ ଦୁଇବେଳା ଚାଷୀଙ୍କଠାରୁ କ୍ଷୀର ସଂଗ୍ରହ କରୁଛି। ୧୩.୯ନିୟୁତ ଚାଷୀ ପରିବାର ଏହି ସମିତିମାନଙ୍କରେ ସଭ୍ୟ। ଦୈନିକ ୨୫.୧ନିୟୁତ କ୍ଷୀର କାରବାର ହୋଇଥାଏ। NDDBର ପରିଚାଳନା ଓ ଡଃ ଭର୍ଗିଜ କୁରିଏନ୍ଙ୍କ ଦିଗ୍‌ଦର୍ଶନ ଉପରେ ଆଧାରିତ ଏହି ସଂସ୍ଥା ଯୋଗୁଁ ଭାରତ ବର୍ତ୍ତମାନ ପୃଥିବୀରେ ସର୍ବାଧିକ ଦୁଗ୍ଧ ଉତ୍ପାଦନକାରୀ ଦେଶର ମାନ୍ୟତା ପାଇଛି। ଆମେରିକା, ୟୁରୋପୀୟ ସଂଘ, ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଣ୍ଡ ଯଥାକ୍ରମେ ୨ୟ, ୩ୟ, ୪ର୍ଥ ଓ ୫ମ ସ୍ଥାନରେ ଅଛନ୍ତି। ୨୦୦୨ରେ ପୃଥିବୀର ବାର୍ଷିକ ଦୁଗ୍ଧ ଉତ୍ପାଦନ ପରିମାଣ ୫୯୩ନିୟୁତ ଟନ୍ ଥିଲାବେଳେ ଭାରତର ୧୨୫ନିୟୁତ ଟନ୍।

ପୁଣି ବିଦେଶୀ କମ୍ପାନୀମାନଙ୍କର ପାଟିରୁ ଲାଳ ବାହାରିଲା। ଏତେ କ୍ଷୀର! ଆମେ କ୍ଷୀର ବେପାରରେ ପଶିବା! ୧୯୯୨ମସିହା। ସେତେବେଳକୁ ଭାରତବର୍ଷ ଅର୍ଥନୈତିକ

ସଂସ୍କାର ନୀତି ଲାଗୁ କଲାଣି । ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣ (LPG)ର ଯୁଗ ଆରମ୍ଭ ହୋଇଯାଇଛି । ବିଶ୍ୱବ୍ୟାଙ୍କ, ବିଶ୍ୱ ବାଣିଜ୍ୟ ସଙ୍ଗଠନ ଚାପରେ ୧୯୯୨ମସିହାରେ ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ତାଗିଦରେ ଭାରତ ସରକାର ପାର୍ଲିଆମେଣ୍ଟରେ ଗୋଟିଏ ବିଲ୍ ଆଣିଲେ । ଏହି କୃଷକମାରଣ ବିଲ୍‌ର ନାମ ଦୁଗ୍ଧ ଓ ଦୁଗ୍ଧପାତ ଦ୍ରବ୍ୟ ଆଦେଶ (Milk and Milk Product Order-1992) । ଭାରତରେ ଦୁଗ୍ଧ ଉତ୍ପାଦନ କ୍ଷୁଦ୍ର ଓ ନାମମାତ୍ର ଚାଷୀ, ଗ୍ରାମ୍ୟ ମହିଳା ଓ କୃଷି ଶ୍ରମିକମାନେ ହିଁ କରିଥାନ୍ତି । ଦେଶସାରା ଚାଷୀ ଓ ଚାଷୀ ସଙ୍ଗଠନମାନେ ଏହି ବିଲ୍‌ର ତୀବ୍ର ବିରୋଧ କଲେ । ଖୋଦ୍ ଡଃ ଭର୍ଗିଜ୍ କୁରିଏନ୍ ମଧ୍ୟ ବିଲ୍‌ର ବିରୋଧ କରି ଏହାଦ୍ୱାରା ପୁଣି ବିଦେଶୀ ଶକ୍ତି ହାତକୁ ଭାରତୀୟ କ୍ଷୀର ବ୍ୟବସାୟ ଚାଲିଯିବ ବୋଲି ସତର୍କ କଲେ । ଶ୍ରୀଯୁକ୍ତ ରବିରାୟ ସେତେବେଳେ ଲୋକସଭା ସଭ୍ୟ । ଲେଖକ ଏହି ଡ୍ରାକୋଲିୟାନ ବିଲ୍‌ର ଭୟାବହତା ସମ୍ପର୍କରେ ତାଙ୍କୁ ଚିଠି ଲେଖିଲେ । ସଂସଦରେ ଶ୍ରୀଯୁକ୍ତ ରାୟ ବିଲ୍ ବିରୁଦ୍ଧରେ ଦୃଢ଼ ଯୁକ୍ତି ଉପସ୍ଥାପନ କଲେ । ଗଣତନ୍ତ୍ର ତ' ଏକ ସଂଖ୍ୟାର ଖେଳ । ବିଲ୍‌ଟି ଆଇନରେ ପରିଣତ ହୋଇଗଲା ।

ନୂତନ ଆଇନରେ ବ୍ୟବସ୍ଥା ରହିଲା ଦୈନିକ ୧୦ ହଜାର ଲିଟରରୁ ଅଧିକ ତରଳ କ୍ଷୀର ବା ବାର୍ଷିକ ୫୦୦ଟନ୍‌ରୁ ଅଧିକ ଦୁଗ୍ଧଗୁଣ୍ଡ ବ୍ୟବସାୟ କରୁଥିବା ଯେକୌଣସି ଘରୋଇ କମ୍ପାନୀ ଭାରତରେ କ୍ଷୀର ବ୍ୟବସାୟ କରିପାରିବେ । ଦେଶୀ ବିଦେଶୀ ବାଛବିଚାର ରହିବ ନାହିଁ । ସେମାନଙ୍କୁ କୌଣସି ଲାଇସେନ୍ସ କରିବାକୁ ପଡ଼ିବ ନାହିଁ । କେବଳ ସରକାରୀ ଦପ୍ତରରେ ପଞ୍ଜୀକରଣ କରିବାକୁ ହେବ । ଅତ୍ୟାବଶ୍ୟକ ସାମଗ୍ରୀ ଆଇନ- ୧୯୫୫ ସେକ୍‌ସନ୍-୩ (Essential commodity Act-1955- Section-3) । କେନ୍ଦ୍ର କୃଷି ବିଭାଗର ଖାଦ୍ୟପ୍ରକ୍ରିୟାକରଣ ଓ ସମବାୟ ମନ୍ତ୍ରାଳୟ ଦାୟିତ୍ୱରେ ଏହି ଆଇନ କାର୍ଯ୍ୟକାରି ହେଲା । ୧୯୯୯ରେ MMPO ଆଇନରେ ପୁଣି କେତେକ ସଂଶୋଧନ କରାଗଲା । ଘରୋଇ କମ୍ପାନୀ (Private Players)ମାନଙ୍କ ପାଇଁ ଆଇନକୁ ସମ୍ପୂର୍ଣ୍ଣ କୋହଳ (Full Flexibility) କରି ଦିଆଗଲା ଏବଂ ଭାରତରେ କ୍ଷୀର ବ୍ୟବସାୟ କରିବାରେ ସମ୍ପୂର୍ଣ୍ଣ ସ୍ୱାଧୀନତା ମିଳିଗଲା । ପ୍ରଥମେ ପଞ୍ଜିକରଣ ସମୟସୀମା ୯୦ଦିନ ରଖାଯାଇଥିଲା । ନୂଆବ୍ୟବସ୍ଥା ଅନୁସାରେ ଏହାକୁ ୪୫ ଦିନକୁ କମାଇ ଦିଆଗଲା । ୨୦୦୧ବେଳକୁ ବିଶ୍ୱବାଣିଜ୍ୟ ସଙ୍ଗଠନ (World Trade Organisation)ନିର୍ଦ୍ଦେଶରେ ବିଦେଶରୁ ଦୁଗ୍ଧଜାତ ଦ୍ରବ୍ୟ ଆମଦାନୀ କଟକଣା ଉଠାଇ ଦିଆଗଲା । (Abolition of Quantitative Restriction in Dairy Products Import-2001) ।

ଭାରତର ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ କାରବାର ପାଇଁ ନୀତି ନିୟମ ଆମେରିକାର କୃଷି ବିଭାଗ (USDA) କରିଥାଏ। ୨୦୧୧ ବର୍ଷ ପାଇଁ ଏପରି ଏକ ରିପୋର୍ଟ ରିତାମ୍ବରା ସିଂହ ପ୍ରସ୍ତୁତ କରିଥିଲେ ଏବଂ ଏହାକୁ ଥମ୍ ରାଇଟ (Thom wright) ଅନୁମୋଦନ କରିଥିଲେ। ରିପୋର୍ଟରେ ଦର୍ଶାଯାଇଥିଲା ଭାରତରେ ଦୁଗ୍ଧ ଉତ୍ପାଦନ ଖର୍ଚ୍ଚ ପୃଥିବୀରେ ସବୁଠାରୁ କମ୍। ମାତ୍ର ଦେଶର କ୍ରସ୍‌ବ୍ରିଡ୍ ଗାଈ ସଂଖ୍ୟା ବଢ଼ାଇ ଉତ୍ପାଦନ ଆହୁରି ଅଧିକ କରିହେବ। ବିଦେଶୀ କମ୍ପାନୀମାନେ ଏହାର ସୁଯୋଗ ନେଇ ଭାରତରେ କ୍ଷୀର ବ୍ୟବସାୟ କରିବେ ଏବଂ କ୍ଷୀର ବ୍ୟବସାୟ ପାଇଁ ଶତ ପ୍ରତିଶତ ବୈଦେଶିକ ପୁଞ୍ଜି ବିନିଯୋଗ କରାଯିବ। ଏହି ମର୍ମରେ କନ୍‌ଫେଡ଼େରେସନ ଅଫ୍ ଇଣ୍ଡିଆନ୍ ଇଣ୍ଡଷ୍ଟ୍ରିଜ୍ (CII) ଏବଂ ମେକ୍‌ନ୍‌ସି (Mekinsey) ଅନୁରୂପ ରିପୋର୍ଟ ଦେଇଥିଲେ। ଆମ କେନ୍ଦ୍ର ସରକାର ସୁଧାର ଗାଈ ଭଳି ବିଦେଶୀ ଶକ୍ତିମାନଙ୍କ ଗୁହାଳରେ ପଶିଛନ୍ତି। ବିଦେଶୀ ଡାଇରୀ କମ୍ପାନୀମାନଙ୍କ ଭିତରେ ଅଛନ୍ତି ବ୍ରିଟାନିୟା, କ୍ୟାଡ଼ବରି, ନେସଲେ, ୟୁନିଲିଭର, ସ୍ମିଥ୍‌କ୍ଲିନ ବିଚାମ, ହେନଜ୍, ଫ୍ରୋମାଗେରିଶ୍ ବେଲ, ଫ୍ରାନ୍ସ, ବୋନ୍‌ଗ୍ରେନ୍, ଫ୍ରାନ୍ସ ଭଳି ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀ ଦେଶସାରା ମାଡ଼ିଗଲେଣି। ଗତ ୨୦ବର୍ଷର ବେପାର ଭିତରେ ସେମାନଙ୍କ ଚେର ମାଡ଼ିଗଲାଣି। ଆମ ଦେଶୀ କମ୍ପାନୀ ଡାବର, ନନ୍ଦି ମଧ୍ୟ ସେମାନଙ୍କ ସହିତ ଅଛନ୍ତି। ଦେଶୀ ବିଦେଶୀ ଘରୋଇ କମ୍ପାନୀମାନେ ଜାଣିଛନ୍ତି ଅମୁଲ ଦେହରେ ସେମାନେ ହାତ ଦେଇପାରିବେ ନାହିଁ। ମାତ୍ର ନାମକୁ ସମବାୟ ବୋଲାଉଥିବା ଓମ୍‌ଫେଡ୍ ଭଳି ସଂସ୍ଥାକୁ ଅକ୍ତିୟାର କରିବା ଯୋଗାଡ଼ରେ ସେମାନେ ଅଛନ୍ତି। କ୍ଷୀରରେ ଅପମିଶ୍ରଣ କଥା ଉଠାଇବା ପାଇଁ WTOବରାଦରେ ୨୦୧୧ରେ ଖାଦ୍ୟ ସୁରକ୍ଷା ମାନକ ପ୍ରାଧିକରଣ ଆଇନ (Food Safety Regulatory Authority of India)କୁ ସଂଶୋଧନ କରି ଅଧିକ ଶକ୍ତିଶାଳୀ କରିଛନ୍ତି। ଏହାଦ୍ୱାରା ଛୋଟଚାଷୀ ଅଣନିଃଶ୍ୱାସୀ ହୋଇଯିବେ। ମାଇକ୍ରୋବାଇଓଲଜି କଥା ଉଠାଇ ଗୁହାଳ ସଫା, ଗାଈ ପହ୍ଲା ସଫା, ଗାଈ ଦୁହାଁଳିର ହାତ ସଫା, ବାଲତି ସଫା କରି ଛୋଟଚାଷୀକୁ ସଫା କରିଦେବେ।

ନିକଟରେ ଦୁଗ୍ଧ ଉତ୍ପାଦନ ବୃଦ୍ଧି ନାଁରେ ୪୦ହଜାର ବିଦେଶୀ ଗାଈ ନ୍ୟୁଜିଲାଣ୍ଡ, ଡେନ୍‌ମାର୍କ ଓ ଅନ୍ୟାନ୍ୟ ଦେଶରୁ ଆସୁଛନ୍ତି। ମିନିଡାଇରୀ ଯୋଜନାରେ ୫୦ବା ଅଧିକ ଦୁଧିଆଳି ଗାଈକୁ ନେଇ ଦେଶସାରା ହଜାର ହଜାର ନୂଆ ଡାଇରୀ ଗଢ଼ିଉଠିବ। ଏଭଳି ଡାଇରୀ ସମାଜର ଧନିକ ଶ୍ରେଣୀ, ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଯୁବକମାନେ ହିଁ କରିପାରିବେ। ଏହା ବ୍ୟବସାୟିକ ଡାଇରୀ ହେବ। ଯନ୍ତ୍ରପାତି ଦ୍ୱାରା ଗୁହାଳ ସଫାଠାରୁ ଆରମ୍ଭ କରି ଗାଈ

ଦୁହାଁ ପର୍ଯ୍ୟନ୍ତ କରାଯିବ। ଛୋଟ ଓ ନାମମାତ୍ର ଚାଷୀ ଗାଇ ରଖିପାରିବେ ନାହିଁ। ଅପମିଶ୍ରଣ ଆଳରେ ସେମାନଙ୍କୁ ତଣ୍ଡିଆ ଦେଇ କମ୍ପାନୀମାନେ ତଡ଼ିଦେବେ। ଲକ୍ଷ ଲକ୍ଷ କ'ଣ କୋଟି କୋଟି ଚାଷୀ, ମହିଳା ଗାଇ ଗୋଟିଏ ଦୁଇଟି ପାଳି ଦିନରାତି ଖଟି ଦୁଇପଇସା ରୋଜଗାର କରୁଥିଲେ। ସେମାନଙ୍କ ଜୀବିକା ଯିବ। ବିକାଶ ନାଁରେ ଏହା ବିନାଶ ନୁହେଁ ତ ଆଉ କ'ଣ? ଖାଦ୍ୟ ପ୍ରକ୍ରିୟାକରଣ ମନ୍ତ୍ରଣାଳୟ (Ministry of Food Processing Industries, Govt of India) ୨୮.୧.୨୦୧୨ର ରପୋର୍ଟ ଦେଖିଲେ ସରକାର କିପରି ଡାଇରୀ ଶିଳ୍ପପାଇଁ ଶତ ପ୍ରତିଶତ ବିଦେଶୀ ପୁଞ୍ଜି ବିନିଯୋଗ ପାଇଁ ଅନୁମତି ଦେଇଛନ୍ତି ଜାଣିହେବ। କ୍ଷୀର ଶୁଦ୍ଧତା ପରୀକ୍ଷା ପାଇଁ ବହୁ ସରଳ ଉପାୟ ଅଛି। ଆଗେ ଡାଇରୀ ଇନ୍ସପେକ୍ଟର, ଫୁଡ୍ ଇନ୍ସପେକ୍ଟର ମାନେ ଏ କାମ କରୁଥିଲେ। କେତେକ ସରଳ ଯନ୍ତ୍ର, କେମିକାଲ ସହାୟତାରେ କ୍ଷୀରରେ ପାଣି, ଦୁଧଗୁଣ୍ଡ, ଡେଟରଜେଣ୍ଟ, ଖାଇବାତେଲ, ୟୁରିଆ, ଚିନି ବା ଲୁଣ ଭଳି ଅପମିଶ୍ରଣକୁ ସହଜରେ ଜାଣିହେବ। ସୋସାଇଟର ସମ୍ପାଦକମାନଙ୍କୁ ଏହି ପରୀକ୍ଷା ସମ୍ପର୍କରେ ତାଲିମ ଦେଇ ସେମାନଙ୍କୁ ଆବଶ୍ୟକୀୟ ଯନ୍ତ୍ର ଓ କେମିକାଲ ଯୋଗାଇ ଦେଲେ ବହୁ ପରିମାଣରେ ଅପମିଶ୍ରଣ କମିପାରିବ। ଏହା ଓମ୍‌ଫେଡ୍‌ର କାମ। ଚାଷୀକୁ ସୁରକ୍ଷା ଦେବା ଏବଂ ଖାଉଟିକୁ ଶୁଦ୍ଧ କ୍ଷୀର ଯୋଗାଇବା ଏହାଦ୍ୱାରା ସମ୍ଭବ ହୁଅନ୍ତା। ଗୋଆଲା, ଛେନା ବେପାରୀ ଓ ଘରୋଇ ଡାଇରୀମାନଙ୍କ ପାଇଁ ନିୟମିତ କ୍ଷୀର ପରୀକ୍ଷାର ବ୍ୟବସ୍ଥା ସରକାର କରିପାରନ୍ତେ। ଏହାଦ୍ୱାରା ଧୁଆମୂଳା ଅଧୁଆ ମୂଳା ସମସ୍ତଙ୍କୁ ଏକା ଆଖିରେ ଦେଖିବା ବନ୍ଦ ହୋଇପାରନ୍ତା।

ଚାଷୀମାନେ ମନେରଖନ୍ତୁ ଆଗିଲା ଦିନମାନଙ୍କରେ କମ୍ପାନୀମାନଙ୍କର ଅଭିବୃଦ୍ଧି ପାଇଁ ଆମ ଜନପ୍ରିୟ ସରକାର ଆମକୁ ନିପାତ କରିବା ପାଇଁ ସଂକଳ୍ପବଦ୍ଧ। ସେମାନେ ଆଜି ବିକାଶ ନାଁରେ ଯାହାସବୁ କରୁଛନ୍ତି କାଲି ଯେ କ୍ଷୀର ଚାଷୀ ହଜାରେ ସଂଖ୍ୟାରେ ଆତ୍ମହତ୍ୟା କରିବେ ଏ ଦୂରଦୃଷ୍ଟି ସେମାନଙ୍କର ନାହିଁ। ଓଡ଼ିଶାର କ୍ଷୀର ଚାଷୀମାନେ ସଙ୍ଗଠିତ ହୋଇ ଓମ୍‌ଫେଡ୍‌କୁ ଦଖଲ କରିବା ପାଇଁ ଆନ୍ଦୋଳନ କରନ୍ତୁ। ପାଣିଚିଆ ଆନ୍ଦୋଳନ ନୁହେଁ। ଗୁଜୁରାଟରେ ଅମୁଲ ଚାଷୀ ଯେଉଁ ଆନ୍ଦୋଳନକୁ ପରିଚିତ କରିପାରିଛନ୍ତି। ଯେତେଦିନ ପର୍ଯ୍ୟନ୍ତ ଓମ୍‌ଫେଡ୍ ଓ ୟୁନିୟନ୍ ବୋର୍ଡ଼ମାନଙ୍କର ଅଧକ୍ଷପଦ ଚାଷୀମାନେ ଦଖଲ ନକରିଛନ୍ତି ସରକାରଙ୍କ ଠାରୁ ନ୍ୟାୟ ମିଳିବ ନାହିଁ। ଚାଷୀକୁ କ୍ଷୀର ମୂଲ୍ୟ ଠିକ୍ ମିଳିବ ନାହିଁ। କ୍ଷୀରରେ ଅପମିଶ୍ରଣ କରି ଦୀର୍ଘମିଆଦି ଜୀବିକା ଗଢ଼ାଯାଇ ନପାରେ। ମା, ଶିଶୁ, ରୋଗୀ ବା ବୁଢ଼ାବୁଢ଼ୀଙ୍କ ଜୀବନ ସହିତ ଆମେ ଆଉ ଖେଳିବା ନାହିଁ। ସରକାରଙ୍କୁ ଧରିବା।

ଆଗରୁ କହିଛୁ ଦେଶୀ ହେଉ ବା ବିଦେଶୀ; ବିଶୁଦ୍ଧ କ୍ଷୀର ଏକବିଂଶ ଶତାବ୍ଦୀରେ ପାଇବା ଆଉ ସମ୍ଭବ ନୁହେଁ। କୃଷିକ୍ଷେତ୍ରରେ କୀଟନାଶକ ପ୍ରୟୋଗ, ଗାଈ, ମଇଁଷିଙ୍କୁ ହର୍ମୋନ ଖୁଆଇବା ବନ୍ଦ ନହେବା ପର୍ଯ୍ୟନ୍ତ କ୍ଷୀର ଶୁଦ୍ଧ ହୋଇପାରିବ ନାହିଁ। ଭାରତୀୟ ସଂସ୍କୃତିରେ ପଞ୍ଚାମୃତର ପ୍ରଚଳନ ଅଛି। କ୍ଷୀର, ଦହି, ଘିଅ, ମହୁ, ଗୁଡ଼କୁ ମିଶାଇ ପଞ୍ଚାମୃତ ତିଆରି କରାଯାଏ। ଅର୍ଥାତ କ୍ଷୀର ଅମୃତ ସଦୃଶ। ମାତ୍ର ସେଇ କ୍ଷୀର ଆଜି ବିଷ। ବିଦେଶୀ ଗାଈ ଓ ରାସାୟନିକ କୃଷି, ଚାରଣଭୂମିର ଅଭାବ କ୍ଷୀରକୁ ବିଷ କରିଛି। ପରିବେଶବିତ୍‌ମାନେ ବିବ୍ରତ ବର୍ତ୍ତମାନର ବିକାଶଧାରା ଯଦି ଚାଲୁରହେ , ଆସନ୍ତା ୫୦ବର୍ଷ ଭିତରେ ଏ ପୃଥିବୀ ମରୁଭୂମି ପାଲଟିଯିବ। ମାଟି, ପାଣି, ପବନରେ ବିଷ ଭରିଯିବ। କୃଷି, ଗୋପାଳନ, ମତ୍ସ୍ୟଚାଷ ସବୁ ପ୍ରଭାବିତ ହେବ। ସମସ୍ୟା ଅନେକ। ସମାଧାନର ବାଟ ଗୋଟିଏ। ପ୍ରାକୃତିକ କୃଷି ଓ ଦେଶୀ ଗାଈ ପାଳନ ହିଁ ଶୁଦ୍ଧ କ୍ଷୀର ପାଇବାର ଏକମାତ୍ର ରାସ୍ତା। ସମ୍ବଲପୁର, ବରଗଡ଼, ସୁବର୍ଣ୍ଣପୁର, ଝାରସୁଗୁଡ଼ା, କେଉଁଝର ଓ ନୟାଗଡ଼ ଜିଲ୍ଲାମାନଙ୍କର ଧାନତଳି ମଡ଼କରୁ ଆମ ବୈଜ୍ଞାନିକ, ଶାସକ, ବୁଦ୍ଧିଜୀବୀ ଶିଖନ୍ତୁ। କେବଳ କ୍ଷୀର ନୁହେଁ ମାଛ, ମାଂସ, ପନିପରିବା, ଫଳ ଓ ଖାଦ୍ୟଶସ୍ୟରେ ବିଷ ଭର୍ତ୍ତି ହୋଇଛି। ବେଳ ଥାଉ ଥାଉ ବିକଳ୍ପକୁ ଆପଣେଇବା ବୁଦ୍ଧିମାନର କାର୍ଯ୍ୟ। ସାମ୍ରାଜ୍ୟବାଦୀ ଆମେରିକା ହାତରେ ନମାରି ଆମ ଦେଶକୁ ଭାତରେ ମାରିବାର ଚକ୍ରାନ୍ତ କରୁଛି। ସରକାର ସାବଧାନ। 'କ୍ଷୀର ଅପମିଶ୍ରଣ' ଯୋଜନାର ଭିତରକୁ ପଶନ୍ତୁ। ଚାଷୀ ଓ ଖାଉଟିର ସୁରକ୍ଷା ପାଇଁ ଦେଶୀ ଗାଈ ଓ ଦେଶୀ ଚାଷକୁ ରାଷ୍ଟ୍ରୀୟ ନୀତିରେ ଅଗ୍ରାଧିକାର ଦିଅନ୍ତୁ। ଦେଶ ବଞ୍ଚିବ, ଚାଷୀ ବଞ୍ଚିବ, ଖାଉଟି ବଞ୍ଚିବ। ଏକ ନୂତନ ଭାରତ ଜନ୍ମହେବ। ଶୁଦ୍ଧ ପୂତ ପବିତ୍ର ଭାରତ। ଅମୃତମୟ ଭାରତ।



# ପାଣି ! ପାଣି ! ପାଣି ପାଇଁ ହାହାକାର୍ ବେପରୁଆ ସରକାର୍

୧୫ ମଇ ୨୦୧୨। ଟିଟିଲାଗଡ଼ରେ ତାପମାତ୍ରା ୪୪°। ରାଜ୍ୟସାରା ତାପମାତ୍ରା ୪୦°/୪୪° ଉପରେ। ଜୁନ୍‌ମାସ ଖରା ବାକିଅଛି। ୨୦୧୧ଠାରୁ ୨୦୧୨ରେ ତାପମାତ୍ରା ଅଧିକ। ବର୍ଷକୁ ବର୍ଷ ବଢୁଛି ସିନା କମିବାର ନାଁ ନାହିଁ। ଅଂଶୁଘାତରେ କିଛି ମଲେଣି। ଗୋରୁ, ଗାଈ, ଛେଳି, ମେଣ୍ଢା କେତେ ମରୁଛନ୍ତି, ସେଗୁଡ଼ାକ ସରକାରଙ୍କ ଆଖିକୁ ଆସେନି। ପିଇବାକୁ ପାଣି ନପାଇ ଏମାନେ ମରୁଛନ୍ତି। ସରକାର ସଫେଇ ଦେଉଛନ୍ତି ଜଳବାୟୁ ପରିବର୍ତ୍ତନ ଓ ବିଶ୍ୱ ଉତ୍ତପ୍ତିକରଣ ପାଇଁ ଏପରି ଦଶା। କିନ୍ତୁ କିଏ ଏହି ପରିବର୍ତ୍ତନ ପାଇଁ ଦାୟୀ ? ଏହା କ'ଣ ପ୍ରାକୃତିକ ନା ମଣିଷକୃତ ? ମଣିଷକୃତ ହେଲେ ସେ ମଣିଷ କିଏ ? ସାଧାରଣ ମଣିଷଟି କ'ଣ ଏ ବିପଦର କାରଣ ? ନା ବୈଜ୍ଞାନିକ, ଶିଳ୍ପପତି, ସରକାର, ପଇସାବାଲା ବା ବୁଦ୍ଧିଜୀବୀମାନେ ଏପରି ବିପଦର ସୂତ୍ରଧର ? ବାଘ ଶିକାରକୁ କାବୁ କରି ରାମ୍ପୁଡ଼ି, କାମୁଡ଼ି, ବିଦାରି, ଝୁଣି, ରକ୍ତଶୋଷି ମାରିଲା ଭଳି ଆମ ସରକାରର ଏଇ ବଡ଼ପଣ୍ଡାଗୁଡ଼ାକ ଜଙ୍ଗଲ ନିପାତ କଲେ। ଗାଡ଼ି, ଘୋଡ଼ା, ଫ୍ରିଜ, ଏୟାର କଣ୍ଡିସନର ଭଳି ଯନ୍ତ୍ରପାତି ବ୍ୟବହାର କଲେ। ବିଷ ବାଷ୍ପ ବାହାରି ବାୟୁ, ଆକାଶ ପୁରିଯାଉଛି। କଳ କାରଖାନା କରି କୋଟିପତି ହେଲେ। କାରଖାନାରୁ ବିଷ ବାଷ୍ପ ବାହାରି ଚାରିଆଡ଼େ ବ୍ୟାପିଗଲା। କମ୍ପାନୀମାନଙ୍କର ବେପାର ବଢ଼ିବା ପାଇଁ ଚାଷୀକୁ କହି ବୋଲି ଜମିରେ ରାସାୟନିକ ସାର ବିଞ୍ଚିଲେ। ବିଷ ବାଷ୍ପ ବାହାରିଲା। ଏହି ବିଷ ବାଷ୍ପ ଜଳବାୟୁ ପରିବର୍ତ୍ତନ ବା ତାପମାତ୍ରା ଅଧିକର କାରଣ। ପଇସାବଳରେ ସେମାନେ ମଉଜକରିବା ବେଳେ ଗାଁ ଗଣ୍ଡାର ମଳିମୁଣ୍ଡିଆ ମଣିଷଟା ପାଣି ଟୋପେପାଇଁ ଡହଳ ବିକଳ ହେଉଛି। ବଡ଼ବଡ଼ିଆ ତ ଥଣ୍ଡାଘରେ ଆରାମରେ ଶୋଇଲେ। ବାହାରକୁ ଥଣ୍ଡା ଚାରିଚକିଆରେ ଗଲେ। ସେମାନେ ଏ ଖରାର ଦାଉ ଜାଣିବେ ବା କିମିତି ? ବିଚରା ଗାଁ ଦିନ ମଜୁରିଆଟି ! କାମକୁ ନଗଲେ ପିଲାଛୁଆଙ୍କୁ ଢୋକ ଦେବ କେମିତି। ମରୁ, ସରୁ ମୂଳ ମଜୁରିକୁ ତ ଯିବ। ଶୋଷ

ହେଲେ ପାଣି ଟୋପାଏ ନାହିଁ। ଅଂଶୁଘାତରେ ମରିବ ନାହିଁ ତ ଆଉ କ'ଣ ତା' ଭାଗ୍ୟରେ ଅଛି ? ଗରିବ ଲୋକଙ୍କ ପାଇଁ ଭାଗ୍ୟ, ଭଗବାନ ଥିବାକଥା ତ ଏଇ ବଡ଼ଲୋକମାନେ, ବ୍ରାହ୍ମଣମାନେ ଶାସ୍ତ୍ରରୁ ବାକ୍ୟ ଉଦ୍ଧାର କରି ବୁଝାଇଥାନ୍ତି। 'ଏ ଜନ୍ମରେ କଷ୍ଟ କଲେ ଆରଜନ୍ମକୁ ସ୍ୱର୍ଗପ୍ରାପ୍ତି' କଥାଟା ଗରିବ ଲୋକ ମୁଣ୍ଡରେ ପୁରାଇ ପୃଥିବୀକୁ ଲୁଟିବା ବଡ଼ପଣ୍ଡାମାନଙ୍କର ଭାଣ୍ଡାମୀ।

ସହରଗୁଡ଼ାକ ତ ସରକାରଙ୍କ ନିକଟ। ସହରୀ ଲୋକଙ୍କୁ ସରକାର କେମିତି ନା କେମିତି ପାଣି ଦେବେ। ସେମାନେ ମୁଣ୍ଡପିଛା ପାଇଖାନାରେ ଥରକେ ୧୨ଲିଟର ପାଣି ବରବାଦ କରନ୍ତି। ପାର୍କ, ଛକ, ବଡ଼ ଅଫିସ, କ୍ଲବ୍ ଆଗରେ ପାଣି ଫୁକାର। ଦିନରାତି ପାଣି ଫୁକାର ଚମ୍ପାବାଣ ପରି ଚାରିଆଡ଼େ ବିଛେଇ ପଡୁଛି। ସନ୍ଧ୍ୟାହେଲେ ରଙ୍ଗବେରଙ୍ଗ ବିଜୁଳି ଆଲୁଅ ପଡ଼ି ଚାରିଆଡ଼ ଝଲସୁଛି। ଠାଏ ଠାଏ ଜଳକ୍ରୀଡ଼ା ପାଇଁ ୨୪ଘଣ୍ଟା ପାଣିଚାଲିଛି। ଗଲଫ୍ ଖେଳ ପାଇଁ ପଡ଼ିଆରେ ପାଣି ସୁଅ ଛୁଟୁଛି। ଅମଲା, ପ୍ରଶାସନିକ ଅଧିକାରୀ, ରାଜନେତା, ପଇସାବାଲା ଲୋକେ ପିଲାପିଲିଙ୍କୁ ନେଇ ସନ୍ଧ୍ୟାରେ ବୁଲିଯିବେ। ସେମାନଙ୍କ ଚିତ୍ତବିନୋଦନ ପାଇଁ ସରକାରଙ୍କର ଏସବୁ ବ୍ୟବସ୍ଥା। ପୁଣି ପାଣି ପାଇପ ଫାଟି ଦିନରାତି ଠାଏ ଠାଏ ପାଣି ବୋହିଯାଉଛି। 'କମ୍ପାନୀକା ମାଲ୍ ଦରିଆମେ ଡାଲ୍'। ଯାହାବି ହେଉ ଏମାନେ ଭଲରେ ରହିଲେ ସରକାରିଆ ଲୋକେ ରାତିରେ ଆରାମରେ ଶୋଇବେ। ଏମାନଙ୍କର ଟିକେ ଊଣା ହେଲେ ପାଟିତୁଣ୍ଡ, ଘେରାଉ, ବନ୍ଦ, ବିକ୍ଷୋଭ। କିଏ ଏତେ ସମ୍ଭାଳିବ। ପାଣି ତ ବୋହିଯିବା ଧର୍ମ, ବୋହିଯାଉ। 'ଗାଁ ଲୋକଙ୍କୁ ତ ଦୁଇଟଙ୍କିଆ ଚାଉଳ ଦେଲୁ। ସିମେଣ୍ଟ କଂକ୍ରିଟ ରାସ୍ତା କଲୁ। ପାଣି ନାହିଁ। ଖରା ହେଉଛି। ଆମେ ତ ପ୍ୟାକେଜ ପରେ ପ୍ୟାକେଜ ଘୋଷଣା କଲୁ। ମାସକେ ୨/୩ଟା ପ୍ୟାକେଜ। ଏଇ ଗାଁ ଲୋକଙ୍କ ପାଇଁ। ପାଣି ପହଞ୍ଚାଇବାକୁ ସମୟ ଲାଗିବ। ଏତେ ଅସମ୍ଭାଳ କାହିଁକି ?' ପାଗ ବାନ୍ଧୁ ବାନ୍ଧୁ କଚେରୀ ଭୋର। ଏମିତି ଥାପଡ଼ା-ଥାପଡ଼ି କରି ଦୁଇମାସ କଟିଯିବନି ତ ! ପୁଣି ବର୍ଷେ।

ଗାଁ'ଗଣ୍ଡାରେ ଲୋକେ କଥା ହେଉଛନ୍ତି 'ଏବର୍ଷ ମୁଣ୍ଡଫଟା ଖରା। ବାହାରକୁ ବାହାରିଲେ ମୁହଁ ଆଖି ସତେଯେମିତି ପୋଡ଼ିଯାଉଛି। ମୁଣ୍ଡ ଝାଇଁ ଝାଇଁ କରି ବୁଲାଇଦେଉଛି। ଆଖିରୁ ଜୁଳୁଜୁଳିଆ ପୋକ ବାହାରୁଛି। ଚାରିଆଡ଼ ଅନ୍ଧାର ଦିଶୁଛି। ପାଣି ଟୋପାଏ ତ ତୁଣ୍ଡରେ ମାରିବାକୁ ନାହିଁ। ଜୀବ ରହିବ କେମିତି ? ସରକାର ଖରାଆରମ୍ଭରୁ ପାଣି ପ୍ୟାକେଜଗୁଡ଼ାକ ଘୋଷଣା କରିଗଲେ। ପ୍ୟାକେଜ କ'ଣ ପିଇ ଜୀବନ ବଞ୍ଚାଇବୁ। ଏ ସରକାରଟା କେତେ ବାହାପିଆ ହୋ। ଶହେକେ ଶହେ ମିଛ। ଦୁଇଟଙ୍କିଆ ଚାଉଳ ଗଣ୍ଡେ ଦେଉଛ। ଭୋଟ

ନେଉଛ। ଚାଉଳକୁ ରୋଷେଇ କରିବୁ କେମିତି, ପାଣି ତ ନାହିଁ। ପିଲାକୁ ସାଗୁ ଖୁଆଇବୁ କେମିତି, ପାଣି ନାହିଁ। ବୁଢ଼ାବାପାକୁ ଔଷଧ ଦେବୁ କେମିତି, ପାଣି ନାହିଁ। ଏ ସରକାରଟାର କ'ଣ ଦୟାମାୟା ନାହିଁ। କେଡ଼େ ନିଷ୍ଠୁର ସରକାର ହେ। ଭୁଲେଇ ଭାଲେଇ ଭୋଟ ନେଲାବେଳକୁ କେତେ ନେତା ଘରକୁ ନାଇନ ଲଗାଉଥିଲେ। ଏବେ ତ କେହି ଗୋଟେ ବି ଦେଖା ନାହିଁ।' ପାଣିପାଇଁ ଚାରିଆଡ଼େ ହାହାକାର। ଗୋରୁଗାଈ, ମଇଁଷି, ଛେଳି, ମେଣ୍ଢା, ଜୀବଜନ୍ତୁ ସମସ୍ତେ ପାଣି ପାଇଁ ତହଳବିକଳ। ଚାଷୀର ଧାନ, ପାନ, ପନିପରିବା ଆଖି ଆଗରେ ସବୁ ପୋଡ଼ିଯାଉଛି। ଚାଷୀ ପାଖରେ କିଛି ବୁଦ୍ଧିବାଟ ନାହିଁ। ଠିଆ ମରୁଡ଼ି। ନଈ, ନାଳ, ଝରଣାଗୁଡ଼ାକ ମରିଗଲେଣି। ଗାଡ଼ିଆ, ପୋଖରୀ, ବନ୍ଧ ଶୁଖି ଠୋ ଠୋ। କେଉଁଠି କିମିତି ଯଦି ପାଣି ଅଛି ଗୋଡ଼ ବୁଡ଼ାଇବା ମନା। କେହିଜଣେ ମାଫିଆ ମାଛଚାଷ କରିଛି ନା ! ମାଗଣା ପାଣି ପାଇବ। କମ୍ପାନୀ ବଞ୍ଚିବ କିମିତି ? ନଳକୂପରେ କୋଟି କୋଟି ଟଙ୍କାର ବେପାର ନା। ହେଲେ ନଳକୂପ ଗୁଡ଼ାକ ଧର୍ମକୁ ଆଖିଠାରିଲା ଭଳି ପଡ଼ିଛନ୍ତି। ଶହେକେ ନବେ ଅଚଳ। ପାଣି ପାଇଁ ଠାଏ ଠାଏ ଠେଙ୍ଗାବାଡ଼ି।

କେନାଲରେ ପାଣି ନାହିଁ। ପାଣି ତ କମ୍ପାନୀମାନେ ଉପରମୁଣ୍ଡରୁ କଳକାରଖାନା ପାଇଁ ଅଟକାଇ ନେଲେ, ତଳକୁ ଆସିବ କିମିତି। ଶିଳ୍ପ ହେଲେ ରାଜ୍ୟର ଧନସମ୍ପତ୍ତି ବଢ଼ିବନା ! ଚାଷ ମରୁ, ଗାଁଲୋକେ ମରନ୍ତୁ। ଶିଳ୍ପପତିମାନେ କଳା, ଧଳା ଦିପ୍ରକାର ପଇସା ଦେଉଛନ୍ତି। ତାଙ୍କ କଥା ଆଗ। କେନାଲ ଶୁଖି ଫାଟିଲାଣି। ପ୍ରତି ୫୦ହାତରେ କ୍ରିକେଟ ଖେଳ। ପିଲାମାନଙ୍କର ଯାତ। ଶିଶୁବିକାଶ ପାଇଁ ଏ ସରକାର କ'ଣ ବ୍ୟବସ୍ଥା ନକରିଛି ହୋ ! ବଲ୍ ବାଡ଼େଇ ବାଡ଼େଇ ଶୋଷହେଲେ ପାଖ ଦୋକାନକୁ ଦଉଡ଼ି ଯାଉଛନ୍ତି। ଟଙ୍କିକିଆ ଥଣ୍ଡା ପାଉଚ ପାଣି, ଦାନ୍ତରେ ଛିଣ୍ଡାଇ ଢକ ଢକ ପିଇଯାଉଛନ୍ତି। ବାପା, ମାଙ୍କ ମଜୁରୀ ପଇସାରୁ କେହି କେହି ପିଲା ୧୦/୧୫ଟଙ୍କା ମାରିଆଣି କୋକାକୋଲା, ପେପ୍‌ସି ପିଇଯାଉଛନ୍ତି। ଏଗୁଡ଼ାକରେ ବିଷ ଅଛି ସେକଥା ବଡ଼ମାନେ ତ ବୁଝୁନାହାନ୍ତି ସେମାନେ କାଲିକା ଲଣ୍ଡି। ଶଗଡ଼ ଖାଲରେ ପଡୁ କି ଢିପରେ। ଶୋଷତ ମେଣ୍ଟୁଛି। ପୈତୃକ ପ୍ରାଣଟା ତ ବଞ୍ଚିଯାଉଛି। ତାଙ୍କୁ ବେଳ ନାହିଁ ହିସାବ କରିବାକୁ କିମିତି କୋଟି କୋଟି ଟଙ୍କାର ବେପାର ଏ ପାଣି। ପାଣି ଏବେ ନୀଳ ହୀରକ।

ନଦୀ, ନାଳ, ଝରଣା ଓ ଯୋର; ସବୁ ଶୁଖିଲା। ମାଟି ଫାଟି ଆଁ କରିଛି। ନଈଭିତରେ କେଉଁଠି ପିଲାଏ ଭଲିବଲ ଖେଳୁଛନ୍ତି ତ କେଉଁଠି ଯାତ୍ରାପାର୍ଟି ପଡ଼ି ଟିକେଟ ଯାତ (ଅପେରା) କରୁଛି। ନଦୀର ଉପରମୁଣ୍ଡରେ ଏକ ସମୟରେ ଘଞ୍ଚ ଜଙ୍ଗଲ ଥିଲା। ଆମ ରାଜ୍ୟ କ୍ଷେତ୍ରଫଳର

୪୦ଭାଗ ଜଙ୍ଗଲ ଥିଲା। ଗଛଗୁଡ଼ାକ ବର୍ଷାପାଣିକୁ ଧରି ରଖୁଥିଲା। ବର୍ଷସାରା ନଦୀ, ଝରଣାରେ ପାଣି ଝରୁଥିଲା। ଖରାଦିନେ ବି ନଈରେ ଝର। ୨/୩ହାତ ବାଲି ଆଡ଼େଇ ଦେଲେ ଶିରାରୁ ରକ୍ତ ବୋହିଲାଭଳି ଚାରିପଟୁ ପାଣି ଝରି ୪/୫ମିନିଟ୍‌ରେ ଚୁଆ ପୁରି ଯାଉଥିଲା। ନଈରେ ଗାଧୋଉଥିଲେ। ମା, ମାଉସୀ ରୋଷେଇ ପାଇଁ ଗରା, ମାଠିଆରେ ଘରକୁ ପାଣି ନେଉଥିଲେ। ନଈ କୂଳରେ ଟେଣ୍ଡାମାରି ଚାଷୀଭାଇ ଫୁଟି, କଖାରୁ, ଖଡ଼ା, ବାଇଗଣ କିଆରୀକୁ ପାଣି ମଡ଼ାଉଥିଲା। ନଈକୂଳ ଯାକ ଶହ ଶହ ଟେଣ୍ଡା। ଏବେ ଟେଣ୍ଡା କ'ଣ ପିଲାଏ କହିପାରିବେନି। ଏବେ ଏଗୁଡ଼ାକ ଆଈ ମା' କାହାଣୀ ଭଳି ସେମାନଙ୍କୁ ଲାଗିବ।

ମୋଗଲ ସାମ୍ରାଜ୍ୟ ପତନପର୍ଯ୍ୟନ୍ତ ଜଙ୍ଗଲ ସୁରକ୍ଷିତ ଥିଲା। ଜଙ୍ଗଲବାସୀ, ଆଦିବାସୀ ଜଙ୍ଗଲ ଜଗୁଥିଲେ। ଇଂରେଜ ଶାସନକାଳରେ ୨୦୦ବର୍ଷ ଧରି ଜଙ୍ଗଲ ଲୁଟ୍ ହେଲା। ବିଲାତରେ ରେଳରାସ୍ତା, ଜାହାଜ ତିଆରି, କୋଠାବାଡ଼ି, ତାଙ୍କ ମେମ୍‌ସାହବ ମାନଙ୍କ ପାଇଁ ଖଟ, ଚଉକି, ମେଜ ଆସବାବପତ୍ର ତିଆରି ପାଇଁ ଓଡ଼ିଶାରୁ ଶାଳ, ପିଆଶାଳ, ସାଗୁଆନ, ଶିଶୁଭଳି ଦାମିକା କାଠ ଲୁଟେରାମାନେ କାଟି ବୋହିନେଲେ। ଦେଶ ସ୍ୱାଧୀନ ହେଲା। ମନେ ହେଉଥିଲା। ଗଛଗୁଡ଼ାକ ଏଣିକି ନିଶ୍ୱାସମାରିବେ। ନେତା, ପ୍ରଶାସନିକ ଅଧିକାରୀ, କାଠ ମାଫିଆମାନେ ଦୁହାଁଳିଆ ଗାଈ ଭାବି ଜଙ୍ଗଲକୁ ଦୁହିଁ ଚାଲିଲେ। ଆଦିବାସୀ ରୋଷେଇ ପାଇଁ ଶୁଖିଲା କାଠବିଡ଼ାଏ ନେଲେ ସେମାନଙ୍କୁ ଜେଲ୍, ଜୋରିମାନା। ଲୁଟେରାଙ୍କୁ ବାଡ଼ି ଛାଡ଼। ମେଣ୍ଢା ଧୋଉ ଧୋଉ ନିର୍ବାଳ। ଏମାନେ ସବୁ ସରକାରଙ୍କ ଗେହ୍ଲାପୁଅ। ଏମାନଙ୍କ ବିକାଶ ପାଇଁ ଜଙ୍ଗଲ ଶେଷ। ଆଉ ପାଣି ଉପର ମୁଣ୍ଡରେ ଜମା ହୋଇ ରହିବ କିମିତି ? ଆପଣା ହସ୍ତେ ଜିହ୍ୱା ଛେଦି, କେ ତା'ର ଅଛି ପ୍ରତିବାଦୀ। ରକ୍ଷକ ଯଦି ଭକ୍ଷକ ହୁଏ, ଆଉ କେହି ବଞ୍ଚିବେ କି ? ବିକାଶ ନାଁରେ ବିନାଶର ଜୟଯାତ୍ରା।

ମହାନଦୀ ତ ଓଡ଼ିଶାର ବଡ଼ନଦୀ। ହୀରାକୁଦ ବନ୍ଧହେଲା। ବଢ଼ିକମିବ, ବିଲକୁ ପାଣି ମିଳିବ, ବିଜୁଳି ବାହାରିବ। କଳ କାରଖାନାକୁ ପାଣି ଦିଆଯିବ ଏ କଥାଟା ମୂଳରୁ ନଥିଲା। ଏବେ ୧୦/୧୨ବର୍ଷ ହେଲା ହୀରାକୁଦ ପାଣିରୁ ୬୦ପ୍ରତିଶତ ଶିଳ୍ପକୁ ଦିଆଯାଉଛି। ପ୍ରାୟ ଛୋଟବଡ଼ ଶହେଟି ଶିଳ୍ପ। ସରକାରୀ କାଗଜପତ୍ରରେ ଏମାନେ ପାଣି ପାଉଛନ୍ତି, ପାଣି ଚୋରି ବି କରୁଛନ୍ତି। ଏମାନଙ୍କୁ ବାଡ଼ି ଛାଡ଼। ପଇସାବାଲା ଲୋକ ନା'। ଦରକାର ପଡ଼ିଲେ ହାକିମଗୁଡ଼ାକୁ ପଇସାରେ ପୋତିଦେବେ। ଚୋରି ପାଣି ପାଇଁ ତ ପଇସା ନାହିଁ। କାଗଜକଲମ ପାଣି ପଇସା ବି ଏମାନେ ଦିଅନ୍ତି ନାହିଁ। ଖାଲି ହିସାବରେ ଗଡୁଥାଏ। ଅବଶ୍ୟ ସମ୍ବଲପୁରରେ ପଶ୍ଚିମଓଡ଼ିଶା କୃଷକ ସଙ୍ଗଠନମାନେ କମ୍ପାନୀମାନଙ୍କୁ ପାନେ ଦେଇଛନ୍ତି। ଲକ୍ଷ୍ମଣରେଖା

ଟାଣିଛନ୍ତି। ରେଖା ଡେଙ୍ଗ କମ୍ପାନୀ ପାଣି ପାଇଁ ଯାଇପାରିବ ନାହିଁ। ସରକାରଟା ତ କମ୍ପାନୀମାନଙ୍କ କଥାରେ ଚାଲୁଛି, ସରକାର ସେମାନଙ୍କ ପାଇଁ ମଣିଷ ମାରୁଛି। ତାଙ୍କୁ ଆମେ କେତେଦିନ ପାଣି ବନ୍ଦ କରିପାରିବା ?

ଆମ ରାଜ୍ୟରେ କେଉଁ ଅଜା ଅମଳରୁ ବଡ଼ ବଡ଼ ବାମ୍ଫି ଓ କୂଅ ଥିଲା। ବର୍ଷାପାଣି ମାଟିଭିତରେ ୨୦/୨୫ଫୁଟ୍ ତଳେ ଜମିଥାଏ। ବାମ୍ଫି, କୂଳ ଖୋଳିଲେ ପାଣି ମିଳେ। ରାଜୁଡ଼ା ଶାସନ ବେଳେ ଗାଁ ଗାଁରେ, ଗହୀର ମଝିରେ ବଡ଼ ବଡ଼ ବାମ୍ଫି ଖୋଳା ହୋଇଥିଲା। ପଥର ବାମ୍ଫି। ଚାଷୀ ଟେଣ୍ଡାରେ ବିଲକୁ ପାଣି ମଡ଼ାଉଥିଲେ। ଗୋଟା ଝରା। ଦିନକୁ ୫/୬ଘଣ୍ଟା ପାଣି ଟେଣ୍ଡିଲେ ବି ବାମ୍ଫି ଶୁଖୁନଥିଲା। ମରୁଡ଼ିବେଳେ ଜମିକୁ ପାଣି, ରବିଚାଷ ପାଇଁ ପାଣି, ପନିପରିବା ଚାଷ ପାଇଁ ପାଣି। ଏବେକାର ଭଳି ପାଣି ଅଭାବ ନଥିଲା। ବଡ଼ ବଡ଼ ପଥର କୂଅ ମଧ୍ୟ ବେଶ୍ ପାଣି ଯୋଗାଉଥିଲା। କମ୍ପାନୀ ସରକାରଙ୍କ କାନରେ ଫୋଡ଼ିଲେ। ନଳକୂଅ ରାଜୁତି ଚାଲିଲା। ଖୁବ୍ ମୋଟା ବେପାର। ବାମ୍ଫି, କୂଅ ପାଇଁ ପଥର କଟା ଲୋକଙ୍କ ହାତ ବନ୍ଦ। ଖୋଳିବାପାଇଁ ଲୋକମାନେ କାମ ପାଉଥିଲେ- ବନ୍ଦ। ନଳକୂପ ପ୍ରତି ମାସରେ ଖରାପ। ସରକାରୀ ନଳକୂପ କରି ଠିକାଦାର ପଇସା ନେଲା , ପରେ ପରେ ସବୁଦିନ ପାଇଁ ବନ୍ଦ। ଏବେ ଓଡ଼ିଶା ସରକାର କୁହନ୍ତି ଲକ୍ଷାଧିକ ଅଗଭୀର ନଳକୂପ ଖୋଳିଛନ୍ତି। ଚାଷୀମାନଙ୍କୁ ପମ୍ପ ଯୋଗାଉଛନ୍ତି। ଚାଷପାଇଁ ଆଉ ପାଣିର ଅଭାବ କ'ଣ ? ଖୋଜିଲେ ଏମାନେ ଜମିଉପରେ ମିଳିବେ ନାହିଁ। ଶହେକେ ନବେଭାଗ ଚୋରି ହୋଇଯାଇଛନ୍ତି। କାଗଜ ଚୋରି। ଯେଉଁଠି ଯେମିତି ଅଛି ସାଆନ୍ତିଆମାନଙ୍କ ଗାଧୁଆ ଘରେ। ଗାଧୋଇଲେ ପାଣି ଜମିକୁ ବୋହିଯିବ କହିବେ। ବ୍ଲକ୍ କୃଷି ଅଧିକାରୀ, ଠିକାଦାର, ସାଆନ୍ତମାନଙ୍କ ଭାଗୀଦାରିରେ କୋଟି କୋଟି ଟଙ୍କା ଲୁଟ୍ ହେଉଛି। କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ନାଁରେ ଚାଷୀକୁ ଯେଉଁ ଅଗଭୀର ନଳକୂପ ଓ ପମ୍ପ ଦେବାକଥା କାଗଜରେ ଅଛି, ଏହାର ଭିଜିଲାନ୍ସ ତଦନ୍ତ ହେଲେ କେତେ ଯେ ଲୋକ ଜେଲ୍‌କୁ ଯାଆନ୍ତେ; ଜେଲ୍‌ରେ ଜାଗା ମିଳନ୍ତା ନାହିଁ। କିନ୍ତୁ ଓଡ଼ିଶା ସରକାରଟା ନିର୍ମଳ ଶାସନ କଥା କହୁଛି ନାଁ। ଭିଜିଲାନ୍ସ ତଦନ୍ତରେ ଓ ତଳଠାରୁ ଉପର ପର୍ଯ୍ୟନ୍ତ ସମସ୍ତେ ବନ୍ଧାହେବେ। ଚୋରି କରିବ ସରକାର। ଚୋର ଧରିବ ସରକାର। ଏମିତି କ'ଣ ସମ୍ଭବ ! ନଳକୂପ-ରାଜୁତିରେ ବାମ୍ଫି, କୂଅ ଅକାମୀ ହୋଇଗଲା। ପୋତିହୋଇ ପଡ଼ିଲା। ବାମ୍ଫିରୁ ପଥର ତାଡ଼ି କେହି କେହି କୋଠାଘର ବି ତିଆରି କଲେ। ବାଟ ହୁଡ଼ିଲେ। ସୁନା ଗରା ଝୁଣ୍ଟି ପିତଳଗରା ଆଦରିଲେ। ଏବେ ପାଣି ପାଇଁ ମରୁଛନ୍ତି। ସରକାରଙ୍କର ଘଡ଼ିକେ ଘୋଡ଼ା ଛୁଟେ। ପୁଣି ଇନ୍ଦିରାଗାନ୍ଧୀ ଶାସନ

କାଳରେ 'ନିୟୁତ କୂପ' ଯୋଜନା ଆରମ୍ଭ ହୋଇଗଲା। ଇଟା ବା ପଥରରେ ବାନ୍ଧି ଖୋଳାହେବ। ବାନ୍ଧିରୁ ପାଣି ଉଠାଇବାକୁ ପମ୍ପ ଦିଆଯିବ। ସବୁ ତ ପୁଣି ମାଗଣା। ଏବେ ସରକାରୀ ଶାଗୁଣାଙ୍କ ପାଇଁ ମା ଇନ୍ଦିରା ମଢ଼ ଯୋଗାଇଦେଲେ। ୨/୩ ବର୍ଷ ଭିତରେ ଝୁଣି ଝୁଣି ସଫା। ଆମ ରାଜ୍ୟରେ ଏହି ଯୋଜନାରେ ହୁଏତ ଲକ୍ଷାଧିକ କୂଅ ଖୋଳା ହୋଇଥିବ। ସତରେ ନୁହେଁ ସବୁ ମିଛ। କାଗଜ କଲମରେ କୂଅ। ବିଡ଼ିଓ, ସରକାରୀ ଯନ୍ତ୍ରୀ, ସରପଞ୍ଚ ବାଣ୍ଟିକୁଣ୍ଟି ନେଲାପରେ ହିତାଧିକାରୀ ପାଞ୍ଚହଜାର ପାଇଲା, ଭଲ ତ। କିଛି ନକରି ଘରେ ବସି ଯଦି ଏତକ ମିଳିଲା। କିଏ କେତେ ଖାଇଲା ଆମର ଯାଏ ଆସେ କେତେ। ହିତାଧିକାରୀ ଖୁସ୍। ଯୋଜନାର ସଫଳତା ରେଡ଼ିଓ, ଖବରକାଗଜରେ। ସେତେବେଳକୁ ଟିଭି ରାଜୁତି ହୋଇନଥିଲା। ଉଣେଇଶହ ଅଶିଦଶକ କଥା।

ଗାଁରେ ଗାଡ଼ିଆ, ପୋଖରୀ ଥିଲା। ପ୍ରାୟ ୨୦୦୦ ବର୍ଷ ପୂର୍ବରୁ ପୋଖରୀ, ଗାଡ଼ିଆରୁ ପାଣିନେଇ ଜମିରେ ଫସଲ ବଞ୍ଚାଇବା କଥା କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଉଲ୍ଲେଖ ଅଛି। ବିଧାନ ଥିଲା ପାଣି ପାଇଁ ଚାଷୀକୁ କିଛି ରାଜସ୍ୱ(ଫସଲ ଆକାରରେ) ଦେବାକୁ ହେଉଥିଲା। ମାତ୍ର କୌଣସି ପରିସ୍ଥିତିରେ ଚାଷୀକୁ ପୋଖରୀରୁ ପାଣି ମନା କରାଯାଇପାରିବ ନାହିଁ। ଉପକୂଳ ଜିଲ୍ଲା, ସମତଳ ଅଞ୍ଚଳ ଏପରିକି ମାଳ ଅଞ୍ଚଳରେ ବି ମାଳ ମାଳ ବନ୍ଧ ଥିଲା। ଲୋକେ ଗାଧୁଆ ପାଧୁଆ କରୁଥିଲେ। ଗାଁଟୋକାଏ ପହଁରି ପାଣି ଫଟାଉଥିଲେ। ଝିଅ, ବୋହୂମାନେ ସୁବିଧା ଦେଖି ପହଁରା ପହଁରି କରୁଥିଲେ। ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ପିଲାଠାରୁ ବୁଢ଼ାପର୍ଯ୍ୟନ୍ତ ବର୍ଷସାରା ପୋଖରୀରେ ଚଳୁଥିଲେ। ଗାଈ, ମଇଁଷି ପାଣି ପିଉଥିଲେ, ଗାଧୋଉଥିଲେ। ନଈବଢ଼ି ବେଳେ ପୋଖରୀରେ ପାଣିଥିଲା। ମାଛ ଜାଆଁଳ ପଶି ଯାଉଥିଲେ। ବର୍ଷସାରା ଗାଁ ଲୋକେ ହଳରୁ ଫେରି, ଧାନ କଟାରୁ ଫେରି ମାଛ ଦିଟା ଧରୁଥିଲେ। ଭାତ, ମାଛ ବେସର ପାଣି। ମାଗଣା ପୁଷ୍ଟିସାର। ଚୈତ୍ରମାସରେ କୋଠରେ ମାଛଧରି ଠାକୁରାଣୀଙ୍କ ପାଖରେ ମାଜଣା ବା ଯନ୍ତାଳ କରୁଥିଲେ। ରାଜା, ଜମିଦାରଙ୍କର ଖାଲି ନାଁ, ଲୋକଙ୍କର ଗାଁ। ମରୁଡ଼ି ବେଳେ ପୋଖରୀରୁ ପାଣି ବୋହି ଜମିରେ ମଡ଼ାଇବା, ଶୀତଦିନେ ଜମିରେ ପାଣିମଡ଼ାଇ ମୁଗ, ବିରି ଚାଷ କରିବା, ଖରାଦିନେ କଖାରୁ, କାକୁଡ଼ି, ଖଡ଼ା, ପନିପରିବା ଚାଷକୁ ପୋଖରୀରୁ ପାଣି। ବରଜକୁ ପାଣି ନେଇ ବରଜ ବଞ୍ଚାଇବା ପାଇଁ ଶେଣାରେ ପାଣି ବୋହୁଥିଲେ। ଗଡ଼ିଆ ଚାରିପଟେ ଶାଳ। ଶେଣାରେ ପାଣି ବୋହିଲାବେଳେ ଦିହହାତ ହଲିଯାଉଥିଲା। ଦିହର ଝାଳ ବୋହିଯାଉଥିଲା। ସେଇଥିପାଇଁ ଲୋକଗୁଡ଼ାକ ସୁସ୍ଥସବଳ ଥିଲେ। ଦିହରେ କାଠିଏ ବଳ ଥିଲା। ହାତୀଗୋଡ଼କୁ ଧରିଲେ ହାତୀ ଚଳିପାରୁ ନଥିଲା।

ଦଳିତଶ୍ରେଣୀର ଲୋକମାନେ ବାଉଁଶରେ ଶେଣା ତିଆରିକରି ଦିପଇସା ବି ରୋଜଗାର କରୁଥିଲେ। ଆଜି ଶେଣା ଇତିହାସ ପାଲଟିଗଲାଣି। ଶେଣା କାରିଗର ହାତବାନ୍ଧି ବସିଛନ୍ତି।

ଗଡ଼ିଆପୋଖରୀ ବର୍ଷାପାଣି ଅମଳ କରୁଥିଲା , ଖରାଦିନେ ବି ୪/୫ହାତ ପାଣି ରହୁଥିଲା। ଏ କେତେଶହ ବର୍ଷ ତଳେ ଖୋଳା ହୋଇଥିଲା। ଆଉ ଉଝଳାଉଝଳି ନାହିଁ, ପୋତି ହୋଇଯାଉଛି। ତଥାପି ଅନେକ ପୋଖରୀରେ ଏବେବି ବର୍ଷସାରା ପାଣି ରହୁଛି। ମାତ୍ର ଆଜି ଆଉ ପୋଖରୀ, ଗାଡ଼ିଆ ଲୋକଙ୍କ ହାତରେ ନାହିଁ। ବଜାରୀକରଣ ଯୁଗରେ ସେଗୁଡ଼ାକ ପଞ୍ଚାୟତ ଦଲାଲମାନଙ୍କ କବ୍‌ଜାରେ। ମାଛଚାଷ ପାଇଁ ନିଲାମ ହେଉଛି। ପଇସାବାଲା ଗାଁର ଶାସକ ଗୋଷ୍ଠୀର ଦଲାଲ ନିଲାମନେଇ ମାଛଚାଷ କଲେ। ପୋଖରୀରେ ଗୋବର, କୁଣ୍ଡା, ଚୋକଡ଼, ଦାନା, ଭଳି ଭଳି ଔଷଧ ପକାଇଲେ। ମାଛବଢ଼ିବ। ବେପାର ହେବ। ଏବେ ଗାଁଲୋକେ ଗୋଡ଼ ବୁଡ଼ାଇବା ମନା। ମାଛ ଧରିବା ମନା। ପାଣି ଜମିକୁ ନେବା ମନା। ମାଛ ଧରିବେ, ଗାଁଲୋକଙ୍କ ପାଟିରେ ତୁଣ୍ଡି। ରୋହି, ଭାକୁଡ଼, ଦେଶୀ ବଡ଼ମାଛ ଖାଇବେ ସହରୀ ବାବୁମାନେ। ସେମାନେ ଅଧିକ ଦାମ୍ ଦେବେ ନା। ବିଡ଼ିଓ, ଥାନାବାବୁ, ବ୍ୟାଙ୍କ ମ୍ୟାନେଜର ବା ଉଚ୍ଚ ପ୍ରଶାସନିକ ଅଧିକାରୀମାନେ ପୁଅ, ଝିଅ, ବାହା ନିମିତକୁ ଗାଁ ପୋଖରୀରୁ ମାଛ ବରାଦ କରିବେ। ଗାଁଲୋକେ ଜଳକା ଭଳି ଚାହିଁ ରହିଥିବେ। ସେମାନଙ୍କ ଆଖିଆଗରେ କ୍ୱିଣ୍ଟାଲ କ୍ୱିଣ୍ଟାଲ ମାଛ ବାହାରକୁ ଚାଲିଯାଉଥିବ। କାତିଟିଏ ପାଇଁ ବି ସେମାନେ ଭାର୍ଜନ ନୁହନ୍ତି। ପିଲା, ଛୁଆ, ମାଛ ମାଛ କାନ୍ଦୁଥିବେ। ତାଙ୍କପିଠିରେ ଚାରି ଛଅଟା ବିଧା ଚାପୁଡ଼ା ଥୋଇ ରାଗ ଶୁଝାଇବେ। ଗଣତନ୍ତ ଲୋକଙ୍କ ଦ୍ୱାରା, ଲୋକଙ୍କର ଓ ଲୋକଙ୍କ ପାଇଁ ନା! ଭୋଟ ପାଇଁ ଏ ଲୋକଗୁଡ଼ାକ କାମରେ ଲାଗନ୍ତି। ଆଉବେଳକୁ ଏମାନେ କାତିଆ ବାଛୁରୀ।

ଓଡ଼ିଶାରେ ବରଜ ଗୋଟିଏ ଅର୍ଥକାରୀ ଫସଲ। ୧୦ଗଛ ବରଜରେ ୫ପ୍ରାଣୀ କୁଟୁମ୍ବ ଚଳନ୍ତି। ଗାଁର ଦଳିତ, ଗରିବଶ୍ରେଣୀ ଲୋକେ ପାନବରଜ କରିଥାନ୍ତି। ପରିବାରର ସମସ୍ତେ ଉଣା ଅଧିକ ବରଜ କାମ କରିଥାନ୍ତି। ଖରାଦିନେ ପାଣିବିନା ବରଜ ମରିଯାଉଛି। ଗାଁପୋଖରୀରୁ ଭେଜେ ପାଣି ନେଇଗଲା କି। ନିଲାମଧାରୀ ସଙ୍ଗେ ସଙ୍ଗେ ସରପଞ୍ଚଙ୍କ ପାଖେ ଫେରାଦ। ସରପଞ୍ଚ ଦେଖେଇ ଦେଲେ ଥାନାକୁ ବାଟ। ଚୋରି କେସ୍। ପାଣି ଚୋରୀ। ଚାଷୀଟି ଥାନା ହାଜତରେ। ଭାବୁଛି ବରଜ ମରିଥିଲେ ମରିଥାନ୍ତା, କି ଦୁର୍ବୁଦ୍ଧି କଲା। ଥାନା ହାଜତରେ ତାଲାପଡ଼ି କାନ୍ଦୁଛି। ବର୍ଷାପାଣି ପୋଖରୀରେ ଅଛି। କେଉଁ ଅଜା ଅମଳରୁ ତ ବରଜକୁ ଏଇ ପୋଖରୀରୁ ଖରାଦିନେ ପାଣି ଦେଉଥିଲେ। ଆଜି ସରକାର

କ'ଣ ଏଇ ଚାଷୀମାରଣ ଆଇନ କରିଛି। କାହାକୁ କହିବ ! ପାଞ୍ଚଶହ ହଜାରେ ଥାନାରେ ଦେଇ ମୁଚାଲିକା ଲେଖିଦେଲା ଆଉ ଗାଡ଼ିଆରୁ ପାଣି ନେବନାହିଁ। ତେଣିକି ବରଜ ମରୁ, ପିଲାଛୁଆ ମରନ୍ତୁ। 'ଇଂରେଜି ଆଇନଠାରୁ ଅଧିକ ଏବେକାର ଆଇନ କଡ଼ା' ଅଶୀ ବର୍ଷର ବୁଢ଼ାବାପା କାନ୍ଦି କାନ୍ଦି କହିପକାଇଲା। (ଖୋର୍ଦ୍ଧା ଜିଲ୍ଲା ବାଲିପାଟଣା ବ୍ଲକ୍‌ର ନରିଶୋ ଗ୍ରାମପଞ୍ଚାୟତରେ ପ୍ରତିବର୍ଷ ଏପରି ୫/୧୦କେସ୍ ଥାନାକୁ ଯାଉଛି)। ଘରୋଇବିଭାଗ ଆଇନ ସମ୍ପର୍କରେ ସଚେତନ ନୁହେଁ। ଓଡ଼ିଶାରେ ପୋଲିସ୍‌ରାଜର ଏହା ଏକ ନମୁନା ମାତ୍ର।

ଚାଷୀଟି ଜାଣିନାହିଁ ନିଲାମଧାରୀ ତାକୁ ଚାଷ ପାଇଁ ପାଣି ବନ୍ଦ କରିପାରିବ ନାହିଁ। ୨୦୧୧ମସିହାରେ ମାନ୍ୟବର ଉଚ୍ଚତମ ନ୍ୟାୟାଳୟ ଏକ ଯୁଗାନ୍ତକାରୀ ରାୟରେ ରାଜ୍ୟମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ସର୍ବସାଧାରଣ ପୋଖରୀ, ଗାଡ଼ିଆରୁ କୌଣସି ପରିସ୍ଥିତିରେ ଚାଷୀକୁ ପାଣି ବନ୍ଦ କରାଯାଇପାରିବ ନାହିଁ। ସେ ଗ୍ରାମପଞ୍ଚାୟତ ହେଉ, ରାଜ୍ୟ ସରକାର ହେଉ ବା ନିଲାମଧାରୀ ହୁଅନ୍ତୁ। ଏପରି କଲେ ଏମାନେ ଆଇନ ଅନୁସାରେ ଦଣ୍ଡିତ ହେବେ। ଏତେ ଗହୀରରେ କେଉଁ ଚାଷୀର ଚାଷ ଅଛି। ସରକାରଟା ଯେଉଁଠି ଦଲାଲଙ୍କ ପାଇଁ, ପଇସାବାଲାଙ୍କ ପାଇଁ, ସରକାରଟା ଯେଉଁଠି ମୁହଁରେ ମିଠାକଥା କହି ଭିତରେ ଚାଷୀଟାର ତଣ୍ଟିକାଟୁଛି, ଚାଷୀ କାହା ପାଖେ ଗୁହାରି କରିବ। ମନେମନେ ଭାବୁଛି, 'ଧନ୍ୟରେ ଚାଷୀମାରଣ ସରକାର'।

ଓଡ଼ିଶା ସରକାରଙ୍କ ୨୦୧୧-୧୨ଅର୍ଥନୈତିକ ସର୍ଭେ ରିପୋର୍ଟ କୁହେ ଆମ ରାଜ୍ୟରେ ୧.୨୨ଲକ୍ଷ ହେକ୍ଟର ପୋଖରୀ, ଗାଡ଼ିଆ, ଯୋର, ପାଟ ଅଛି। ରାଜ୍ୟର ଲୋକସଂଖ୍ୟା ଅନୁପାତରେ ପ୍ରତି ୧୦୦ ଜଣଙ୍କ ପାଇଁ ଏକ ଏକର ଜଳାଧାର। (ଏଠାରେ ଗ୍ରାମାଞ୍ଚଳରେ ବସବାସ କରୁଥିବା ୮୦ପ୍ରତିଶତ ଲୋକସଂଖ୍ୟାକୁ ହିସାବକୁ ନିଆଯାଉଛି)। ଖୁବ୍ ବେଶୀ। ଗୋରୁ, ଗାଈ, ମଣିଷ ଓ ଚାଷପାଇଁ ଯଥେଷ୍ଟ। ବୃଷ୍ଟିଜଳ ଅମଳ ପାଇଁ ଏବେ ବହୁ ବିକୃତ ଯୋଜନା କାଗଜ କଲମରେ ସମ୍ପୂର୍ଣ୍ଣ ହେଉଛି। ଆମର ଏହି ଯେଉଁ ଜଳ ସମ୍ପଦ ଅଛି, ଯଦି ପୋଖରୀଗୁଡ଼ିକ ପୁନରୁଦ୍ଧାର କରି ଚାଷୀ ଓ ସାଧାରଣ ଲୋକଙ୍କୁ ସେମାନଙ୍କର ପାରମ୍ପରିକ ଦାବୀ ଛାଡ଼ି ଦିଆଯାଆନ୍ତା, ଖୁବ୍ କମ୍‌ରେ ୧୦ଲକ୍ଷ ହେକ୍ଟର ଚାଷଜମିକୁ ଠିକୋଟ ସମୟରେ, ମରୁଡ଼ି ବେଳେ ପାଣି ମଡ଼ାଇପାରନ୍ତେ। ଗାଁ ଲୋକେ ମାଛ ଛାଡ଼ି ମାଛ ଖାଇପାରନ୍ତେ। ଅଙ୍ଗନବାଡ଼ି କେନ୍ଦ୍ର ଛତୁଆକୁ କାଗଜପତ୍ରରେ ଖୁଆଇ ଶିଶୁ ଓ ଗର୍ଭବତୀମାନଙ୍କ ପୁଷ୍ଟିସାଧନ କରିବ। ବାହା ବାଃ ନେବାକୁ ପଡ଼ନ୍ତା ନାହିଁ। ପଇସାର ମଧ୍ୟ ଅଭାବ ନାହିଁ। ମହାତ୍ମାଗାନ୍ଧୀ ଗ୍ରାମୀଣ ନିଶ୍ଚିତ କର୍ମନିଯୁକ୍ତି ଟଙ୍କାକୁ ହରିଲୁଟ୍ ନ କରି ଏଇ ଗୋଟିଏ କାମ ହାତକୁ ନେଲେ

୩ କୋଟି ଲୋକ ଉପକୃତ ହୁଅନ୍ତେ। ସରକାରଙ୍କ ଇଚ୍ଛାଶକ୍ତି ଥିବା ଦରକାର। ଅମଲାତାନ୍ତ୍ରିକ ସରକାରଙ୍କୁ ଆଇଏସ୍ ଅଫିସର କହିଲେ ହେଲା।

ଓଡ଼ିଶା ସରକାର ୨୦୦୧ରେ ପାଣିପଞ୍ଚାୟତ ଆଇନ କଲେ। ଜଳସେଚନ ବ୍ୟବସ୍ଥାରେ ଜମି ମାଲିକର ଭାଗୀଦାରି ରହିବ। ବିଶ୍ୱବ୍ୟାଙ୍କ ତାଗିଦରେ ପାଣିର ଘରୋଇକରଣ ପାଇଁ ବାଟ ତିଆରି ହେଲା। ଏବେ ପାଣି ପଞ୍ଚାୟତ ଅଛି। କେନାଲରେ ପାଣି ନାହିଁ। ପଞ୍ଚାୟତ– ପାଣି=ପାଣି ପଞ୍ଚାୟତ; ଏହାହିଁ ସୁଫଳ। ୨୦୦୨ରେ ଓଡ଼ିଶା ଜଳନୀତି ପ୍ରଣୟନ ହେଲା। ଭୂତଳ ଜଳ, ନଦୀ, ନାଳର ଜଳ ଉପରେ ମାଲିକ ସରକାର ହେଲେ। କମ୍ପାନୀମାନଙ୍କ ବରାଦରେ ଜଳ ପରିଚାଳନା। ଶାଗୁଣାକୁ ମଢ଼। ଗାଁ ଗାଁରେ ଭୂତଳଜଳ ପାଣି ପାଉଚ, ବୋତଲପାଣି କରି କମ୍ପାନୀମାନେ ବିକିଲେ। ପାଇପପାଣି ଖାଉଟୀଙ୍କୁ ଯୋଗାଇବା ନାଁରେ ସ୍ୱଜଳଧାରା କୋଟି କୋଟି ଟଙ୍କାରେ ତିଆରି ହେଲା। ଶହେକେ ଅନେଶତ ଅଚଳ। ଯେଉଁଟି ଚଳୁଛି ଟଙ୍କା ଦେଲେ ପାଣି ପିଇବ। ଗାଁରେ ବୁଢ଼ାବୁଢ଼ୀ କଥା ହେଲେଣି, 'ଆରେ ଏ କି ସରକାର ରାଜୁତି କରୁଛି ! ପ୍ରକୃତି ଆମପାଇଁ ପାଣି ଦେଇଛି। ସେଥିରେ ପୁଣି କମ୍ପାନୀ ବେପାର କରୁଛି। ପଇସାଦେଲେ ପାଣି ମୁନ୍ଦିଏ ପାଇବା। ଧନ୍ୟରେ ସରକାର। ବଞ୍ଚିରହିଲେ ଆଉ କ'ଣ ଅଘଟଣ ଦେଖିବାକୁ ଅଛି କେଜାଣି।' ଡିଏଫ୍ଆଇଡି ବିଲାତି କମ୍ପାନୀର ଏ କରିସ୍ମା।

ଗାଁ ଲୋକେ ବଞ୍ଚିବାକୁ ଚାହାନ୍ତି ତ ଆଉ ଡେରି ନକରି ଏକାଠି ହୁଅନ୍ତୁ। ସରପଞ୍ଚ, ବିଧାୟକ, ସାଂସଦ, ମନ୍ତ୍ରୀ ଏମାନଙ୍କୁ ପ୍ରଶ୍ନ କରନ୍ତୁ। ଗାଁରେ କମ୍ପାନୀ ପାଣି ନେଉଛି ତ ବନ୍ଦ କରନ୍ତୁ। କୁହନ୍ତୁ, 'ଏ ପାଣି ଆମର। ଆମପାଇଁ ପ୍ରକୃତିର ଦାନ। ଆମେ ଟୋପାଏ ପାଣି ଛାଡ଼ିବୁ ନାହିଁ।' ଲୋକପ୍ରତିନିଧିଙ୍କୁ ପୋଖରୀ ଖୋଳାଇବାକୁ ବାଧ କରନ୍ତୁ। ପୋଖରୀରୁ ପାଣି, ମାଛ ଗାଁ ଲୋକେ କୋଠରେ ବ୍ୟବହାର କରନ୍ତୁ। ସରକାରୀ ଅନ୍ୟାୟୀ ହେଲେ ଆମକୁ ସରକାରଠାରୁ ନ୍ୟାୟ ଛଡ଼ାଇ ଆଣିବାକୁ ପଡ଼ିବ। ସରକାର ଅନୀତି କରୁଛି। ତାକୁ ବାଡ଼ି ଛାଡ଼। ଆମ ନ୍ୟାୟ କହୁଛି ଆମକୁ ବନ୍ଧୁକ ଦେଖାଇବେ। ଆମେ ପାଣି ପାଇଁ ମରିବୁ ତୁମେ ପାଣି କମ୍ପାନୀକୁ ବିକିବ, ତୁମ ପିଲାଏ ଜଳକ୍ରୀଡ଼ା କରିବେ, ଗଲ୍ଫ ଖେଳିବେ, ଆଖିରେ ଆଙ୍ଗୁଠି ଗେଞ୍ଜି ଏପରି ମେରି ରାୟ ଶାସନ ଆଉ ଚଳିବ ନାହିଁ। ଗଣତନ୍ତ୍ରରେ 'ଲୋକ' ସର୍ବେସର୍ବା। ଲୋକଶକ୍ତି ଆଗରେ ବନ୍ଧୁକ, ପୋଲିସ ହାରମାନିବ। ଏ ବାହାପିଆ, ବେପରୁଆ ସରକାରକୁ ବାଟକୁ ଆଣିବାକୁ ହେଲେ ସଙ୍ଗଠିତ ହେବା ହିଁ ପ୍ରଥମ କାମହେଉ।



# ସମବାୟ !
# ଲୁଟେରାଙ୍କ କବ୍‌ଜାରେ...

ଉଣେଇଶି ଶହ ଷାଠିଏ ଦଶକ ପର୍ଯ୍ୟନ୍ତ ଆମ ଦେଶରେ ଦେଶୀଚାଷର ଯୁଗ ଥିଲା। ସେ କାଳରେ ଆଜିକା ଭଳି ଚାଷରେ ଖର୍ଚ୍ଚ ନଥିଲା। ଚାଷକାମ ପାଇଁ ବଜାରକୁ ଅପେକ୍ଷା କରିବାକୁ ପଡୁନଥିଲା। ଗୁହାଳରେ ହଳବଳଦ, ଖଳାବାଡ଼ିରେ ଖତ ଓ ଓଳିଆରେ ବିହନ। ବିହନର ମାଲିକଥିଲା ଚାଷୀ। ଚାଷୀ ନିଜେ ତ ଜମିରେ ଖଟୁଥିଲା। ତା'ର ସ୍ତ୍ରୀ, ପିଲାଏ ବି ଖଟୁଥିଲେ। ଛୋଟ ଓ ନାମମାତ୍ର ଚାଷୀମାନେ ନିଜେ କଣ୍ଟିରେ ହାତ ପକାଉଥିଲେ। ଜମିଦାର, ମକଦ୍ଦମ, ବଡ଼ଚାଷୀ, ସାଆନ୍ତମାନେ ହିଡ଼ ଉପରେ ଛତା ଧରି ବରାଦିଆ ଚାଷ କରୁଥିଲେ। ଦଳିତ, ଭୂମିହୀନମାନେ ଜମିରେ ମୂଲ ଲାଗୁଥିଲେ। ରୁଆ, ବଛାବଛି, ଧାନକଟା ପାଇଁ ମୂଲିଆ ଦରକାର ପଡୁଥିଲେ। ସେତେବେଳେ ମୂଲିଆମାନେ ମଜୁରୀପାଇଁ ଧାନ ମୂଲ ନେଉଥିଲେ। ପଇସା ମୂଲ କାଁ ଭାଁ ଦରକାର ପଡୁଥିଲା। ଅମାର, କୋଠି ବା ଭାଡ଼ିରେ ତ ଧାନ ଥାଏ। ଚାଷୀ ମୂଲ ମାପି ଦେଉଥିଲା। ବଡ଼ ଚାଷୀମାନଙ୍କର ତ ବଳକା ଥାଏ। ଛୋଟଚାଷୀଙ୍କର ଅଣ୍ଟନିଅଣ୍ଟ ବେଳେ ଗାଁ ମହାଜନଠାରୁ ତମସୁକ ଓ ଜମି ବନ୍ଧକଦେଇ ଦେଢ଼ିରେ ଧାନ ବା ଶହକେ ୨୫ ସୁଧରେ ଟଙ୍କା କରଜ ଆଣି ଚାଷକାମ ଚଳାଉଥିଲା। ଧୋଇ, ମରୁଡ଼ିରେ ଫସଲ କ୍ଷୟକ୍ଷତି ହେଲେ ଚାଷୀ ଧାନ ବା ଟଙ୍କା ମହାଜନକୁ ପଇଠ କରିପାରୁ ନଥିଲେ। ସେଥିପାଇଁ ବହୁଚାଷୀଙ୍କୁ ଛମାଣ ଆଠଗୁଣ୍ଠର ସନିଆ ଭଳି ଜମିଦାର ମଙ୍ଗରାଜମାନଙ୍କୁ ଜମି ଛାଡ଼ିଦେଇ ଦାଣ୍ଡର ଭିକାରୀ ହେବାକୁ ପଡୁଥିଲା।

୧୯୪୭, ଦେଶ ସ୍ୱାଧୀନ ହେଲା। ଇଂରେଜ ସରକାରଙ୍କୁ ବିଦାକରି ଦେଶୀ ସରକାର ଶାସନ କଲେ। ହେଲେ ଶାସନ ସେଇ ଇଂରେଜୀ ଢାଞ୍ଚାରେ ଚାଲିଲା। ଖାଲି ବୋତଲ ବଦଳି। ନୂଆ ବୋତଲରେ ପୁରୁଣା ମଦ ଭଳି। ଚାଷୀକୁ ଠିରୋଟ ବେଳେ ସାହାଯ୍ୟ କରିବା ପାଇଁ ଗାଁ ଗାଁରେ ସମବାୟ ସମିତିମାନ ଗଢ଼ାହେଲା। ଚାଷୀର ଜମି ପରିମାଣଅନୁସାରେ

■ *ଆଜ କେତେ ବିଷ ପିଇଲେ ଚେତିବା... !*

କୃଷି ଋଣ ଦିଆଯିବ ବୋଲି ପ୍ରଚାରଟି ହେଲା। ଛୋଟ ବା ନାମମାତ୍ର ଚାଷୀମାନେ ସମିତି ପିଣ୍ଡାକୁ ଉଠିବା ବି ସମ୍ଭବ ହେଲାନାହିଁ। ମହରଗରୁ ଆସି କାନ୍ତାରରେ ପଡ଼ିଲା ଭଳି ଅଭାବୀ ଚାଷୀ ମହାଜନଠାରୁ ଋଣ ତ' ପାଇଲା ନାହିଁ, କାରଣ ସେତେବେଳକୁ ଦେଶୀ ସରକାର ମହାଜନୀ କାରବାରକୁ ବେଆଇନ କରିଦେଇଥାନ୍ତି। ଚାଷ ଉଠିଆ କରିବା ପାଇଁ କଷ୍ଟସାଧ ହେଲା।

୧୯୬୫-୭୦ବେଳକୁ ଦେଶୀ ଚାଷ ବଦଳରେ ବିଦେଶୀ ଚାଷର ରାଜତ୍ୱ ଆରମ୍ଭ ହୋଇଗଲା। ଦେଶୀ ଧାନବିହନର ବେଳକାଳ ସରିଗଲା। ଏଣିକି ଅଧିକ ଅମଳକ୍ଷମ ଧାନ-ବିହନ ସରକାର ଚାଷୀପାଖରେ ପହଞ୍ଚାଇଲେ। ଏହି ପ୍ରକାର ବିହନପାଇଁ ପ୍ରଚୁର ରାସାୟନିକ ସାର, କୀଟନାଶକ ଓ ପାଣି ଦରକାର ପଡ଼ିଲା। ଲୋକେ ଏ ବିହନର ଢଙ୍ଗରଙ୍ଗରୁ ଏହାକୁ ପେଟୁଆ ବିହନ କହିଲେ। ସାମ୍ରାଜ୍ୟବାଦୀ ଆମେରିକାର ଚକ୍ରାନ୍ତରେ ଆମଦେଶରେ ରାସାୟନିକ କୃଷି ବା ସବୁଜ ବିପ୍ଳବର ଯୁଗ ଆରମ୍ଭ ହେଲା। ମାତ୍ର ଚାଷୀକୁ ବିହନ, ସାର, କୀଟନାଶକ ଓ ପାଣି କିଣିବା ପାଇଁ ବହୁ ପଇସା ଖଟେଇବାକୁ ପଡ଼ିଲା। ଚାଷୀର ଘର ବିହନ ଅକାମୀ ହୋଇଗଲା। ଏଣିକି ଲଙ୍ଗଳ ନୁହେଁ, ଚାଷପାଇଁ ଟ୍ରାକ୍ଟର। ଗୁହାଳରେ ବଳଦ ରହିଲେ ନାହିଁ। ଖତ ଆସିବ କେଉଁଠୁ? ଚାଷୀକୁ ସବୁ ସାଧନ ପାଇଁ ବଜାରକୁ ଯିବାକୁ ପଡ଼ିଲା। ଟଙ୍କାର ଚାହିଦା ବଢ଼ିଲା। ସରକାର ଏବେ ସମବାୟ ସମିତିମାନଙ୍କୁ ଅଧିକ ପୁଞ୍ଜି ଯୋଗାଇଲେ। ଚାଷୀ କରଜନେଇ ଚାଷରେ ଖଟେଇବ। ପୁଣି ପୂର୍ବଭଳି ବଡ଼ ବଡ଼ ଚାଷୀ, ସାଆନ୍ତମାନେ କାଗଜ ହେରଫେର କରି ସବୁ ଟଙ୍କା ସମବାୟରୁ ଲୁଟିଲେ। ୫/୧୦ବର୍ଷ ଅଧିକ ଉତ୍ପାଦନ ବି ପାଇଲେ। ଛୋଟ ଚାଷୀଙ୍କୁ ସମବାୟରୁ ଋଣ ସ୍ୱପ୍ନ। ସେମାନେ ସରକାରୀ ବିହନ ଅନୁସାରେ ସାର, କୀଟନାଶକ, ଜମିରେ ପ୍ରୟୋଗ କରିପାରିଲେ ନାହିଁ। ଫସଲ ଆମଦାନୀ କମିଲା। ହାତଉଧାରି ବଢ଼ି ବଢ଼ି ଚାଲିଲା। ପୁରୁଣା ଚାଷକୁ ଫେରିବାକୁ କେହି କେହି ପଛକୁ ଚାହିଁଲେ। ହେଲେ ସେତେବେଳକୁ ଲେଡ଼ି ଗୁଡ଼ କହୁଣୀକୁ ବୋହିଗଲାଣି। ମୂଳକଥା ଦେଶୀ ବିହନ ତ' ନାହିଁ।

୧୯୮୦-୮୫ ବେଳକୁ ଛୋଟ-ବଡ଼ ସବୁ ଚାଷୀ ଅନୁଭବ କଲେଣି ଚାଷରେ ଖର୍ଚ୍ଚ ବେଳକୁବେଳ ବଢୁଛି, ଧାନର ଅଭାବୀ ବିକ୍ରି। ସମବାୟ ଋଣ ହେଉ ବା ବ୍ୟାଙ୍କ ଋଣ ବା ହାତ ଉଧାରି ହେଉ; ବଢ଼ି ବଢ଼ି ଯାଉଛି। ଚାଷରୁ ମୁହଁ ବୁଲାଇବା ଆରମ୍ଭ ହୋଇଗଲାଣି। ସେତେବେଳକୁ ଦ୍ୱିତୀୟ ପିଢ଼ିର ପିଲାଏ ଆସିଗଲେଣି। ସରକାରୀ ବା ବେସରକାରୀ ଚାକିରୀ ପାଇଁ ସହର ଆଡ଼କୁ ମୁହାଁଇଲେଣି। ବଡ଼ବଡ଼ିଆଙ୍କ ପିଲାଏ ଚାକିରୀ ନହେଲେ

ଠିକାଦାରି, ବେପାର ବା ଛୋଟବଡ଼ କଳକାରଖାନା ଆରମ୍ଭ କଲେଣି । ଛୋଟ ଚାଷୀର ପିଲା ହେଉ ବା ବଡ଼ଚାଷୀର- ବିଲରେ ପାଣିକାଦୁଅ ହେବାକୁ ଏମାନଙ୍କର ଆଉ ଆଗ୍ରହ ନାହିଁ । ଚାଷକାମଟା ଯେପରି ଗୋଟାଏ ନିକମା କାମ । ଲାଜରା କାମ । ଜମି ତ ଅଛି । ଚାଷ ଫେରେ ହବ କିମିତି । ଏବେ ଖୋଜାହେଲେ ହଳିଆ, ଭାଗଚାଷୀ, ଗୁମାସ୍ତା । ଛୋଟ-ବଡ଼ ଜମି ମାଲିକମାନେ ଚାଷର ଖର୍ଚ୍ଚକୁ ଡରିଲେ । ଏଣେ ପିଲାମାନେ ଚାଷକୁ ମୁହାଁଉ ନାହାନ୍ତି, ଜମିସବୁ ଭାଗ ବା କାଟକୁ ଦେଇଦେଲେ । ବର୍ଷଶେଷକୁ ହଳିଆ ଅଧା ଫସଲ ଦୁଆର ମୁହଁରେ ମାପିଦେଲା । ପଇସାଟିଏ ଖର୍ଚ୍ଚ ନାହିଁ । ଧୋଇ, ମରୁଡ଼ି କ୍ଷୟକ୍ଷତି ହଳିଆ ସହିଲା । କେଡ଼େ ସୁବିଧା ! ମନେ ମନେ ଜମିମାଲିକ ଭାବିଲେ 'କେଡ଼େ ବୁଦ୍ଧିମାନ ନିଷ୍ପତ୍ତି ସତେ ।' ଆଜିର ସ୍ଥିତି । ଉପକୂଳ ଜିଲ୍ଲାମାନଙ୍କରେ ୭୦ରୁ ୮୦ପ୍ରତିଶତ ଜମି ଭାଗଚାଷର ଉଠିଆ ହେଉଥିଲା ବେଳେ ପଶ୍ଚିମଓଡ଼ିଶାର ୫୦ରୁ ୬୦ପ୍ରତିଶତ ଜମି ଭାଗ ବା କଣ୍ଟରେ ଚାଷହେଉଛି । ଏହି ଭାଗଚାଷୀମାନେ କିଏ ? ଏମାନେ ସବୁ ଦଳିତ, ଭୂମିହୀନ, କୃଷିଶ୍ରମିକ ଓ ନାମମାତ୍ର ଚାଷୀ । ସରକାରୀ ହିସାବରେ ଗୋଟିଏ ଏକର ଧାନଚାଷ ପାଇଁ ୧୨ ହଜାର ଟଙ୍କା ଖର୍ଚ୍ଚ (ଜାତୀୟ କୃଷି କମିଶନ ଚେୟାରମ୍ୟାନ ଓ ସବୁଜ ବିପ୍ଳବର ଜନକ ବୋଲାଉଥିବା କୃଷିବିଜ୍ଞାନୀ ଡଃ ଏମ୍.ଏସ୍. ସ୍ୱାମୀନାଥନଙ୍କ ହିସାବ ଅନୁସାରେ) । ସମବାୟ ସମିତି, ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କ ବା ବ୍ୟବସାୟିକ ବ୍ୟାଙ୍କର କୃଷି ଋଣ ଜମିମାଲିକଙ୍କୁ ହିଁ ଜମି ହିସାବରେ ମିଳିଥାଏ । ବାସ୍ତବରେ ଭାଗଚାଷୀମାନେ ହିଁ ସବୁ ସାଧନ କିଣି ଚାଷ କରୁଥିଲେ ମଧ୍ୟ ଯେହେତୁ ସେମାନଙ୍କ ନାମରେ ଜମି ନାହିଁ, ସେମାନଙ୍କୁ କୃଷିଋଣ ମନା ।

ପ୍ରତିବର୍ଷ କୃଷି ଋଣ କେନ୍ଦ୍ର ଓ ରାଜ୍ୟ ବଜେଟରେ ବଢ଼ି ବଢ଼ି ଯାଉଛି । ଚଳିତ ଆର୍ଥିକ ବର୍ଷ (୨୦୧୨-୧୩) କେନ୍ଦ୍ର ବଜେଟରେ ୫ଲକ୍ଷକୋଟି ଟଙ୍କାର କୃଷି ଋଣ ବରାଦ କରାଯାଇଛି । ଓଡ଼ିଶା ସରକାର କୃଷିକ୍ଷେତ୍ର ପାଇଁ ୫ହଜାର କୋଟି ଟଙ୍କାର ଋଣ ସମବାୟ ସମିତି ମାଧ୍ୟମରେ ଚାଷୀଙ୍କୁ ବଣ୍ଟନ କରିବେ ବୋଲି ଦିନରାତି ଟିଭି, ରେଡ଼ିଓ ଓ ଖବରକାଗଜରେ ଡେଙ୍ଗୁରା ପିଟୁଛନ୍ତି । ପୁଣି ନିୟମିତ ଋଣ ପରିଶୋଧ କଲେ ସୁଧ ଶହକେ ୩ଟଙ୍କା ମାତ୍ର । ନିକଟରେ ଆନ୍ଧ୍ର ସରକାର ତ' ଶୂନସୁଧରେ ଚାଷୀକୁ କୃଷିଋଣ ଦେବାକଥା ଘୋଷଣା କରିଛନ୍ତି । ପ୍ରକୃତରେ କ'ଣ ସରକାରଗୁଡ଼ାକ ଚାଷୀଟି ପାଇଁ ଏତେ ବିକଳ ! ଚାଷ କରୁଛି କିଏ ? ଋଣ ଉପଭୋଗ କରୁଛି କିଏ ? ସାର, ବିହନ, କୀଟନାଶକ ପ୍ରୟୋଗ ପାଇଁ ଋଣ ତ ମିଳିଲା । କାହିଁକି ଆମ ରାଜ୍ୟରେ ଧାନ ଉତ୍ପାଦନ କମି କମି ଯାଉଛି ? ୨୦୧୦-୨୦୧୧ ବର୍ଷ ଖରିଫ ଓ ରବିରେ ମୋଟ ଧାନଚାଷ ଜମି ପରିମାଣ ୪୨.୩ଲକ୍ଷ

ହେକ୍ଟର ଏବଂ ଧାନ ଉତ୍ପାଦନ ୧୦୩.୫ଲକ୍ଷ ଟନ୍। ଅର୍ଥାତ ହେକ୍ଟର ପ୍ରତି ଧାନ ଉତ୍ପାଦନ ହାର ୨.୪୫ ଟନ୍। (ଡାଇରେକ୍ଟରେଟ ଅଫ୍ ଇକୋନୋମିକ୍ସ ଆଣ୍ଡ୍ ଷ୍ଟାଟିଷ୍ଟିକସ୍, ଓଡ଼ିଶା)। କହିବା ବାହୁଲ୍ୟ ହେବ ଯେ ସାର, କୀଟନାଶକ ବ୍ୟବହାର ନକରି ଦେଶୀ ବିହନ ବ୍ୟବହାର କରି ଖୋର୍ଦ୍ଧାଜିଲ୍ଲାର ନରିଶୋ ଗ୍ରାମରେ ହେକ୍ଟରକୁ ହାରାହାରି ୩.୭ଟନ୍ ଧାନ ଉତ୍ପାଦନ ହେଉଛି। ଏଥିରୁ ଏକଥା ସ୍ପଷ୍ଟ ହେଉନାହିଁ କି କୃଷି ଋଣ ବାସ୍ତବରେ କୃଷିକ୍ଷେତ୍ର ପାଇଁ ବ୍ୟବହାର ହେଉ ନାହିଁ। ଆମ ରାଜ୍ୟସରକାର ଜାଣନ୍ତି ନାହିଁ କି କୃଷିଋଣର ସିଂହଭାଗ ଅଣଚାଷୀ ଜମି ମାଲିକମାନେ କବ୍‌ଜା କରି ସେମାନଙ୍କର ବ୍ୟବସାୟ, ଠିକାଦାରି, ସହରରେ ଘରତୋଳା, ଦୁଇଚକିଆ ଚାରିଚକିଆ କିଣାରେ ନିୟୋଜନ କରିଥାନ୍ତି। ଋଣ କରି (Paper Transfer) ସରକାରୀ ଋଣ ଛାଡ଼କୁ ଚାହିଁଥାନ୍ତି। ଲୁଚିଛି ନା ଗୋଡ଼ ଦି'ଟା ଦିଶୁଛି। ରାଜନେତା, ଅମଲାତନ୍ତ୍ର ସମସ୍ତେ ଏପ୍ରକାର ହରିଲୁଟ୍‌ରେ ଭାଗିଦାରୀ। ସେ ସବୁକୁ ଆସିବା। ଓଡ଼ିଶା ସରକାରଙ୍କ ଅର୍ଥନୈତିକ ସର୍ଭେ ରିପୋର୍ଟ-୨୦୧୧-୧୨ରୁ ଜଣାପଡ଼େ ଆମ ରାଜ୍ୟରେ ୨.୭୧୪ଟି ପ୍ରାଥମିକ କୃଷି ସମବାୟ ସମିତି କାମ କରୁଛନ୍ତି। ଏଥିମଧ୍ୟରେ ୨୧୩ଟି ବୃହତ ଆଦିବାସୀ ବହୁମୁଖୀ ସମବାୟ ସମିତି ଅନ୍ତର୍ଭୁକ୍ତ। ୧୭ଟି ଜିଲ୍ଲା କେନ୍ଦ୍ରୀୟ ସମବାୟ ବ୍ୟାଙ୍କ୍‌ରେ ୩୨୭ଟି ବ୍ଲକ୍‌ସ୍ତରୀୟ ଶାଖାବ୍ୟାଙ୍କ ପ୍ରାଥମିକ ସମବାୟ ସମିତିମାନଙ୍କୁ ପ୍ରତ୍ୟକ୍ଷ ଭାବେ ନିୟନ୍ତ୍ରଣ କରିଥାନ୍ତି। ଏତଦ୍‌ବ୍ୟତୀତ ରାଜ୍ୟ ସମବାୟ ବ୍ୟାଙ୍କ୍‌ର ୧୪ଟି ଶାଖା କୃଷିଋଣ ସହିତ ବ୍ୟବସାୟିକ ଋଣ ମଧ୍ୟ ବଣ୍ଟନ କରିଥାନ୍ତି।

୨୦୧୦-୧୧ ବର୍ଷ ଖରିଫ ଓ ରବି ଋତୁରେ ୨୦.୩୦ ଲକ୍ଷ ଜମି ମାଲିକଙ୍କୁ ତିନିହଜାର ତିନିଶହ ଛୟାନବେ ଟଙ୍କା ସ୍ୱଳ୍ପକାଳୀନ ଋଣ ମଞ୍ଜୁର କରାଯାଇ ଥିଲା। ସରକାରୀ ହିସାବରେ ଛୋଟ, ନାମମାତ୍ର ଓ ଭାଗଚାଷୀଙ୍କୁ ମିଶାଇ ମୋଟ ୫୦ଲକ୍ଷ ଚାଷୀ ପରିବାର ଅଛନ୍ତି। ସେମାନଙ୍କ ମଧ୍ୟରୁ ମାତ୍ର ୨୦.୩୦ ଲକ୍ଷ ଚାଷୀଙ୍କୁ ଋଣ ମିଳିଛି, ତାହା ପୁଣି ଖରିଫ ଓ ରବିକୁ ମିଶାଇ। ଅର୍ଥାତ ଓଡ଼ିଶାର ମୋଟ ଜମିମାଲିକମାନଙ୍କ ମଧ୍ୟରୁ ୩୦ପ୍ରତିଶତ ମାତ୍ର ସମବାୟ ଋଣ ପାଇଛନ୍ତି। କୃଷିର ଅଭିବୃଦ୍ଧି ପାଇଁ ରାଜ୍ୟ ସରକାର ସମବାୟ ଋଣ ଯୋଗାଣରେ ଯେ ବ୍ୟର୍ଥ ହେଉଛି,ଏହା ନିଃସନ୍ଦେହରେ କୁହାଯାଇପାରେ।

ଆମ ରାଜ୍ୟରେ ସମବାୟଗୁଡ଼ିକ ପ୍ରାୟତଃ ପୁରୁଣା ସମବାୟ ଆଇନ ଅନୁସାରେ କାମ କରୁଛନ୍ତି। ସମବାୟର ମୌଳିକ ନୀତିଠାରୁ ଏହା ଦୂରରେ। ସମବାୟ ଯେ ଚାଷୀ ସଭ୍ୟମାନଙ୍କର, ଚାଷୀ ସଭ୍ୟମାନଙ୍କ ଦ୍ୱାରା ଏବଂ ଚାଷୀମାନଙ୍କ ପାଇଁ ଏହି ମୂଳନୀତି ଓଡ଼ିଶାର କୌଣସି ସମବାୟରେ କାର୍ଯ୍ୟକାରୀ ହେଉନାହିଁ। ସମବାୟଗୁଡ଼ିକରେ ସରକାରଙ୍କ

କର୍ତ୍ତୃତ୍ୱ ହିଁ କାମକରେ। ତେଣୁ ଶାସକ ଦଳ ନିୟନ୍ତ୍ରଣରେ ହିଁ ସମବାୟ। ସରକାରୀ ନିୟନ୍ତ୍ରଣରୁ ସମବାୟକୁ ମୁକ୍ତ କରି ସ୍ୱୟଂଶାସିତ କରିବା ଲକ୍ଷ୍ୟରେ କେନ୍ଦ୍ର ସରକାର ୨୦୦୪ ମସିହାରେ ବୈଦ୍ୟନାଥଙ୍କ ଅଧକ୍ଷତାରେ ଗୋଟିଏ ଟାସ୍କଫୋର୍ସ ଗଠନ କରିଥିଲେ। ବୈଦ୍ୟନାଥ କମିଟି ସୁପାରିଶ ଅନୁସାରେ ସମିତିଗୁଡ଼ିକୁ ସୁଧାରିବା ପାଇଁ ଗ୍ରାଣ୍ଟ ଆକାରରେ ବହୁ ଟଙ୍କା କେନ୍ଦ୍ର ସରକାର ରାଜ୍ୟମାନଙ୍କୁ ଦେଲେ। ମାତ୍ର ଆମରାଜ୍ୟରେ ତଳଠାରୁ ଉପର ପର୍ଯ୍ୟନ୍ତ ସମବାୟ କର୍ମକର୍ତ୍ତାମାନେ ସେ ଟଙ୍କା ଚଲୁ କରିଦେଲେ। ସମବାୟ ଆଇନରେ ସଂଶୋଧନ ବା ସମବାୟକୁ ସ୍ୱୟଂଶାସିତ କରିବା ଶାସକଦଳର ସ୍ୱାର୍ଥ ପ୍ରତି ପ୍ରତିକୂଳ ହେବ ଜାଣି ଚିରାଚରିତ ସ୍ଥିତିରେ ଏମାନଙ୍କୁ ରଖାଯାଇଛି।

## ଲୁଟେରାମାନେ କିଏ ?

ଲୋକମାନଙ୍କ ସହ କଥାବାର୍ତ୍ତା କଲାବେଳେ ଯାହା ସାମ୍ନାକୁ ଆସିଥାଏ ତାହାହେଲା ଯେ, ସମିତିର ସମ୍ପାଦକମାନେ ଜାଲିଆତି ଋଣ, ଜମି ନଥିବା ବ୍ୟକ୍ତିଙ୍କୁ ଶୂନ୍ୟରୁ ଜମି ଆଣି ସଭ୍ୟକରିବା ଓ ଋଣ ଦେବା, ଋଣ ଟଙ୍କାରେ ହେରଫେର କରି ମହାଜନୀ କାରବାର କରିବା, କେନ୍ଦ୍ର ସରକାରଙ୍କ ଋଣ ଛାଡ଼ ଯୋଜନାର ସୁବିଧାନେଇ କୋଟି କୋଟି ଟଙ୍କାର ଋଣ ଏପଟ ସେପଟ କରି ଘୋଟାଲା କରିବା ଭଳି କାମମାନ କରିଥାନ୍ତି। ତଳଠାରୁ ଉପରପର୍ଯ୍ୟନ୍ତ ବିଭାଗୀୟ କର୍ମକର୍ତ୍ତାମାନଙ୍କୁ ସମ୍ପାଦକ ନିୟମିତ ପୂଜାପାର୍ବଣ କରିଥାନ୍ତି ବୋଲି ମଧ ଅଭିଯୋଗ ହୁଏ। କୁହାଯାଏ ଯେ, ସମିତିର ପରିଚାଳନା ବୋର୍ଡ଼ ବିଶେଷକରି ପ୍ରେସିଡେଣ୍ଟମାନେ ସମ୍ପାଦକଙ୍କୁ ଏହି ଅପକର୍ମରେ ସାହାଯ୍ୟ କରିଥାନ୍ତି। ଅନ୍ୟାନ୍ୟ ଅଭିଯୋଗ ଭିତରେ ଥାଏ ଯେ, ଅଣଚାଷୀମାନଙ୍କୁ ଜମି ନଥାଇ ମଧ ଲକ୍ଷ ଲକ୍ଷ ଟଙ୍କା ଋଣ ଦେଉଥିବାରୁ ସେମାନେ ମଧ ବେଶ୍ ପରସେଣ୍ଟ ସମ୍ପାଦକଙ୍କୁ ଦେଇଥାନ୍ତି: ଗାଁ'ରେ ବୁଲୁଥିବା ଶାସକଦଳର କର୍ମୀମାନେ ସମବାୟ ଋଣ ହଡ଼ପ କରିବାରେ ଅଗ୍ରାଧିକାର ପାଇଥାନ୍ତି। ଦଳିତ, ଭୂମିହୀନ, କୃଷିଶ୍ରମିକ ଯେଉଁମାନେ ବି ପ୍ରକୃତ ଚାଷୀ ସେମାନେ ଜଳକା ଭଳି ଚାହିଁଥାନ୍ତି। ସମିତି ପିଣ୍ଡା ସେମାନଙ୍କୁ ମନା। ସେମାନେ ଚାଷ କରିବେ। ଅଣଚାଷୀ ଋଣ ହଡ଼ପ କରିବେ। 'କିଏ ଖାଇବ କଉଡ଼ି ଢୋଲ ଖାଇବ ମାଡ଼।' ସଭାସମିତିରେ ସରକାର ଭାଗଚାଷୀଙ୍କ ପାଇଁ କୁମ୍ଭୀରକାନ୍ଦଣା କାନ୍ଦିବା ବେଳେବେଳେ ଦେଖାଯାଏ। ମାତ୍ର ଏଗୁଡ଼ାକ ଛଳନା, ଧୋକ୍କାବାଜ, ଭାଣ୍ଡାମି।

କେନ୍ଦ୍ର ବା ରାଜ୍ୟ ସରକାରମାନେ ପ୍ରକୃତ ଚାଷୀ ଚିହ୍ନଟ କରି ଫସଲ ବନ୍ଧକରେ କୃଷି ଋଣ ଦେଲେ କୃଷି ଉତ୍ପାଦନ ବାର୍ଷିକ ୫ପ୍ରତିଶତ ବଢ଼ିବା ସହଜ ହୋଇପାରନ୍ତା। ୨୦୧୧-

■ *ଆଉ କେତେ ବିଷ ପିଇଲେ ଚେତିବା... !*

୧୨ରେ ଆମ ରାଜ୍ୟରେ କୃଷି ଅଭିବୃଦ୍ଧି ମାତ୍ର ୨.୫। ସରକାରୀ ଦଳ ହେଉ ବା ବିରୋଧୀ ଦଳ; ଅଧିକାଂଶ ସଭ୍ୟ ତ ସାଆନ୍ତ ଶ୍ରେଣୀର। ସେମାନେ ଯେକୌଣସି ପରିସ୍ଥିତିରେ ଭାଗଚାଷୀଙ୍କ ସ୍ୱାର୍ଥବିରୋଧୀ କାର୍ଯ୍ୟ ହିଁ କରୁଛନ୍ତି, କରିବେ। 'ଜମି ଅଛି ଯାହାର ସରକାରୀ ଋଣ ଅଛି ତା'ର।' ଜମି ନାହିଁ ଯାହାର ସମିତିର ସମ୍ପାଦକଙ୍କୁ ହାତେଇଲେ ରାତାରାତି ସେ ୫/୧୦ଏକର ଜମିର ମାଲିକ। ଜାଲ୍ ପଟ୍ଟା ପାଉତି ସମ୍ପାଦକମାନେ ତିଆରି କରିଦେବେ। ବାମପନ୍ଥୀମାନେ ଭାଗଚାଷୀମାନଙ୍କ ପାଇଁ ଅଣ୍ଟାଭିଡ଼ିଲେ କୃଷିଋଣ ସେମାନେ ପାଇପାରନ୍ତେ। ଦେଶରେ ଉଲ୍ଲେଖନୀୟ କୃଷି ଉତ୍ପାଦନ ସମ୍ଭବ ହୁଅନ୍ତା। କମ୍ପାନୀମାନଙ୍କୁ କୋଟି କୋଟି ଟଙ୍କାର କୃଷି ଋଣ ଦିଆଯାଉଛି। ଛାଡ଼ ବି ପାଉଛନ୍ତି। ବିଚରା ଚାଷୀଟି ଭାଗ୍ୟ ଆଦରି ହାତ ଉଧାରି, ମାଇକ୍ରୋଫାଇନାନ୍ସ ଋଣ ନେଇ ଫସଲ କରୁଛି, ଫସଲର ଅଭାବୀ ବିକ୍ରି। ଋଣ ଶୁଝିନପାରି ଆତ୍ମହତ୍ୟା କରୁଛି। ଜମି ମାଲିକମାନେ ଶୁଖିଲାରେ ବାଲିଆ ପିଟୁଛନ୍ତି। ତାଙ୍କର ନିଘା ନାହିଁ ଚାଷଜମି ଯଦି କାରଖାନା କାମରେ ଲାଗେ ବା ତା'ଉପରେ କୋଠାବାଡ଼ି ତିଆରି ହୁଏ। ସେମାନେ ଖୁସି ଯେ, କ୍ଷେତ ମୂଲିଆ ବା ଭାଗଚାଷୀମାନଙ୍କ ପାଖରୁ ଜମିଟାକୁ ଉଦ୍ଧାର କରି ଯଦି ବିକିଦେଇ ହେଲା କିଛି ଟଙ୍କା ତ ବ୍ୟାଙ୍କରେ ରହିଯିବ। ବଜାରରୁ କିଣି ଚାଉଳ ଖାଇବେ। ଚାଷଜମିଟା ଯେ ଗୋଟିଏ ଲୋକର ନୁହେଁ ତାହା ଉପରେ ଅନେକ ପ୍ରାଣୀ ଏବଂ ଗୋଟିଏ ସଭ୍ୟତାର ଭବିଷ୍ୟତ ନିର୍ଭର କରୁଛି; ଏହି କଥା ସେମାନେ ବା ବୁଝିବେ କାହିଁକି ? ଟିକିଏ ବି ଭାବନ୍ତି ନାହିଁ ଯେ,ତାଙ୍କ ଚାରିପଟେ କେତେ ବେସାହାରା ଏବଂ ଅସହାୟ ମଣିଷ ଏହି ଜମିଟାକୁ ଆଳ କରି ବଞ୍ଚି ରହିଥାନ୍ତି। ମୁଣ୍ଡ ଝାଳ ତୁଣ୍ଡରେ ମାରି ମେହେନତ କରି ଯାହା ବି ଫସଲ ଆଦାୟ କରିଥାନ୍ତି, ସେମାନେ କ'ଣ ସବୁତକ କେବେ ନେଇପାରିଛନ୍ତି। ଯାହା ଜମିମାଲିକ ଦୟା କରେ ତାହାହିଁ କ୍ଷେତମୂଲିଆ ପାଇଥାଏ। ତଥାପି ଜମିଟାକୁ ଯେତେବେଳେ କଳକାରଖାନା ବା କୋଠାବାଡ଼ି ତିଆରି ପାଇଁ ମାଲିକ ଟଙ୍କାର ଲୋଭରେ ଟେକିଦିଏ, ସେ କେବେ ଟିକିଏ ବି ବିଚାର କରେନାହିଁ ସେ ଜମିରେ ଚାଷ କରୁଥିବା ଲୋକଟିର ଭବିଷ୍ୟତ କ'ଣ ହେବ ? ଏତେ ଅବିଚାର, ଅତ୍ୟାଚାର, ଲୁଣ୍ଠନ ଏ ଗରିବ ଚାଷୀ ବାପୁଡ଼ା କ'ଣ ସହିଯାଉଥିବେ। ନା, ସହିବାର ସୀମା ଟପିଗଲାଣି। ପ୍ରଜାମେଳିକୁ ରଜା ମେଳି ସରିନୁହେଁ। ଏମାନେ ବିପ୍ଳବ ମୁହାଁ ହେଲେଣି। ସରକାର ! କିଛି କର ନାହିଁ ତ ପରିଣତି ପାଇଁ ପ୍ରସ୍ତୁତ ରୁହ। ଚୋର ପାଇଁ ସବୁବେଳେ ଅନ୍ଧାର ରାତି ନଥିବ।



# ବିକାଶ ଯଜ୍ଞରେ ମାଛ ଆହୁତି

'ମାଗୁର ମାଛର ଝୋଳ, ବେଟା, ହରିଆ ହରିଆ ବୋଲ୍' । ଓଡ଼ିଶାର ଗାଁ ଗଣ୍ଡାରେ ଏହି ଉକ୍ତିଟି ବେଶ୍ ଜନପ୍ରିୟ । ବର୍ତ୍ତମାନ ମଧୁର ମାଛଟିଏ ପାଇବା ସ୍ୱପ୍ନ । ଯଦିବା ବର୍ଷେ ଛଅମାସରେ ହାଟ, ବଜାରରେ ମାଗୁର ମାଛଟିଏ (ଦେଶୀ ମାଗୁର ମାଛ) ଦେଖିଲେ ଲୋକେ ଏହି ଉକ୍ତିଟି ମନେପକାନ୍ତି । ମାଛ,ଭାତ ଆମ ଓଡ଼ିଆଙ୍କର ପ୍ରିୟ ଖାଦ୍ୟ । ଆମ ଦେଶରେ, ବିଶେଷତଃ ଆମରାଜ୍ୟରେ ମାଛ ଘରେଘରେ ପରିଚିତ । ଏବେ ମାଛ ମହା ସଙ୍କଟରେ । ମଧୁର ମାଛ ବା ଲୁଣି ମାଛ । ମାଛ ବଂଶ ଲୋପ ପାଇଯାଉଛି । କାହିଁକି ? କିଏ ଏଥିପାଇଁ ଦାୟୀ ? ନବ୍ୟ ଉଦାରୀକରଣ ନୀତି ଏଥିପାଇଁ ଦାୟୀ ନୁହେଁ ତ ! କାହିଁକି ମାଛ ବଂଶର ସୁରକ୍ଷା ଜରୁରୀ ? ଏହି ସବୁ ପ୍ରଶ୍ନର ଉତ୍ତର ପାଇବା ପାଇଁ ମାଛର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଗୁରୁତ୍ୱ ସମ୍ପର୍କରେ ସଂକ୍ଷିପ୍ତ ଧାରଣା ଆଣିବା ଉଚିତ ମନେହୁଏ ।

ଅଣ୍ଟା ଦମ୍ଭଥିବା ଗରାଖଟିଏ ମାଛ କିଣିବାକୁ ଆସି ଦେଖେ ରୋହି, ଭାକୁଡ଼, ମିରିକାଳି ମାଛ କିଲୋ ୨୦୦ଟଙ୍କା ଥିଲାବେଳେ ମାଗୁର ମାଛ କିଲୋ ୪୦୦/୫୦୦ଟଙ୍କା । ବୟସ୍କମାନେ ମନେ ମନେ ଗୁଣିହୁଅନ୍ତି, 'ଆରେ ଆମ ଯୁଆନବେଳେ ଖାଲ, ଖମଣା ବୋହିଦେଲେ ମାଗୁର, ରଣ, ଶେଉଳ ତ ସାଲୁବାଲୁ ହେଉଥିଲେ । ଏ କି କାଳ ହେଲା । ମାଗୁର ମାଛ ଏତେ ଧରୁ ଯେ ଆମେ ସାହି ପଡ଼ିଶାରେ ବାଣ୍ଟୁଥିଲୁ । ଖୁବ୍ ବେଶୀରେ ଯଦି ବିକାକିଣା ହେଲା ୨/୩ଟଙ୍କା ବାଣ୍ଟ (ବାଣ୍ଟ ଏକ ପୁରୁଣା କାଳିଆ ମାପ । ବାଣ୍ଟ ବା ବିଶା ପ୍ରାୟ ଆଜିର ୨କିଲୋ ଓଜନ ହେବ) ୪୦୦/୫୦୦ଟଙ୍କା କିଲେ ମାଗୁର ମାଛ । କି କାଳ ହେଲାରେ । ନୂଆ ଯୁଗ, ନୂଆ କଥା ।' ମାଛ ଦୋକାନ ଆଗରେ ୨/୩ଥର ଏପଟ ସେପଟ ଚାଲି ମାଗୁର ମାଛଉପରେ ଆଖି ପହରାଇ ନିରାଶରେ ଫେରି ଯାଆନ୍ତି ।

ଶୁଣାଯାଏ ଚୈତନ୍ୟ ଦେବ ବୈଷ୍ଣବ ଧର୍ମ ପ୍ରଚାର ପାଇଁ ଓଡ଼ିଶା ଆସିଥିଲେ । ଷୋଡ଼ଶ ଶତାବ୍ଦୀ କଥା । ପୁରୀର ଠାକୁର ରାଜା ସେତେବେଳେ ପ୍ରତାପରୁଦ୍ର ଦେବ ଥା'ନ୍ତି । ଶ୍ରୀ

ଚୈତନ୍ୟ ଓ ତାଙ୍କ ବଙ୍ଗାଳି ଶିଷ୍ୟମାନେ ରଜା ଓ ରାଣୀମାନଙ୍କୁ ହରିନାମ ଫାନ୍ଦରେ ପକାଇଦେଲେ। ରାଜା ରାଜ୍ୟ ଶାସନ ଭୁଲି ହରିନାମ ପ୍ରଚାରରେ ଲାଗିପଡ଼ିଲେ। ରାଜ୍ୟର ଅର୍ଥନୀତି ବା ପ୍ରଜାମାନଙ୍କ ସମସ୍ୟା ଆଉ ରଜାଙ୍କ ମୁଣ୍ଡରେ ନାହିଁ। ବାହାର ଶତ୍ରୁମାନେ ଆମରାଜ୍ୟକୁ ମାଡ଼ି ଆସିଲେ। ହେଲେ ହରିନାମ ଲୋକଙ୍କ ପାଖରେ ବିକେଇଲାନି। ଚୈତନ୍ୟ ତ ବଙ୍ଗାଳି ଲୋକ। ବଙ୍ଗଳାରୁ ଶିଷ୍ୟ କେତେଜଣ ସାଙ୍ଗରେ ଆଣିଛନ୍ତି। ସେମାନେ ଏଥିମଧ୍ୟରେ ଓଡ଼ିଆଙ୍କ ମନ କସିନେଲେଣି। ଓଡ଼ିଆ ମାଛପାଇଁ ପାଗଳ। ହରିନାମରେ ମାଛକୁ ଯୋଡ଼ିଦେଲେ ଲୋକେ ମାତିଯିବେ। ବୈଷ୍ଣବ ଧର୍ମାବଲମ୍ବୀମାନେ ନିରାମିଷାସୀ। ଅକାଳେ ନିୟମ ନାସ୍ତି। ଚୈତନ୍ୟ ଦେବ ରାଜି ହୋଇଗଲେ। ଏଣିକି ଚାଲିଲା 'ମାଗୁର ମାଛର ଝୋଲ, ବେଟା ହରିଆ ହରିଆ ବୋଲ୍'। ଝୋଟକୁ ନିଆଁଭଳି ଗାଁ ଗାଁରେ ହରିନାମ ବ୍ୟାପିଗଲା। ମାଛ ଛାଡ଼ି ଧର୍ମ ନାହିଁ। ମାଛ ଖାଇ ଧର୍ମ କରିହେବ ତ ଚଳିବ। ଗାଁ ଗାଁରେ ଅଷ୍ଟପ୍ରହରୀ, ଚବିଶ ପ୍ରହରୀ, ନାମଯଜ୍ଞ ଖେଦିଗଲାଣି। ଖଣ୍ଡାୟତ ପାଇକମାନେ ଖଣ୍ଡା ଛାଡ଼ି ଗାଁ ସଂକୀର୍ତ୍ତନ କଲେ। ମାଛ ଓ ଓଡ଼ିଆଙ୍କ ନିବିଡ଼ ସମ୍ପର୍କର ଏହା ଏକ ନମୂନା ମାତ୍ର। ବଙ୍ଗଳାରେ ମାଛ ନାହିଁ ତ କାତିଚୁନା ପକାଇ ତରକାରୀ କଲେ ବି ଭାତ ଉଠିବ। ମାଛ କିଲୋ ୫୦୦ଟଙ୍କା ହେଉ, ୨୦୦ଗ୍ରାମ ମାଛ ନେବେ। ମାଛ ଭଜା, ମାଛ ଝୋଳ, ମାଛ ଚେଞ୍ଚଡ଼ା। ସେତିକିମାଛରେ ଚାରି ଠା ଗୃହିଣୀମାନେ କରିଦେବେ।

ଓଡ଼ିଶା, ପଶ୍ଚିମବଙ୍ଗ, ଆସାମ, ବିହାର, ଆନ୍ଧ୍ରପ୍ରଦେଶ ବା ତାମିଲନାଡୁ ହେଉ, ମାଛ-ଭାତ ଏମାନଙ୍କର ଅତ୍ୟନ୍ତ ପ୍ରିୟ ଖାଦ୍ୟ। ଏହି ରାଜ୍ୟଗୁଡ଼ିକ ମତ୍ସ୍ୟଦେଶ ବୋଲି ସାହିତ୍ୟରେ ବର୍ଣ୍ଣନା ମଧ୍ୟ ଅଛି। ଗଙ୍ଗା, ବ୍ରହ୍ମପୁତ୍ର, ସୁବର୍ଣ୍ଣରେଖା, ମହାନଦୀ, କୃଷ୍ଣା, କାବେରୀ, ଗୋଦାବରୀ ନଦୀରେ ୫୦ବର୍ଷ ତଳେ ହାଉ ଯାଉ ମାଛ। ବଢ଼ି ବେଳେ ଘରେ ଘରେ ମାଛ। ବଙ୍ଗଳାଠାରୁ ତାମିଲନାଡୁ ପର୍ଯ୍ୟନ୍ତ ବଙ୍ଗୋପସାଗର ଉପକୂଳରୁ ନୋଳିଆ ବା ଅନ୍ୟାନ୍ୟ ପାରମ୍ପରିକ ମତ୍ସ୍ୟଜୀବୀମାନଙ୍କର ସମୁଦ୍ର ଭିତରକୁ ଡଙ୍ଗା ନେଇ ଜାଲ ବିଛାଇ ମାଛ ଧରିବା ନିତିଦିନିଆ କାମ। ଏଣେ ଆରବ ସାଗର କୂଳରେ କେରଳ, ମହାରାଷ୍ଟ୍ର, ଗୋଆ, ଗୁଜୁରାଟର ପାରମ୍ପରିକ ମାଛୁଆମାନେ ପାମ୍ପଲେଟ ମାଛ ଭଳି ଭିନ୍ନ ଭିନ୍ନ କିସମର ମାଛମାରି ପେଟ ପୋଷୁଥିଲେ। ନଈ, ପୋଖରୀ, ନାଳ, ଯୋରରୁ କୈବର୍ତ୍ତମାନେ ମଧୁର ମାଛ ଧରନ୍ତି। ୧୯୫୦ମସିହା ପର୍ଯ୍ୟନ୍ତ ମାଛ ଧରିବା, ବିକାକିଣା କରିବା ପାରମ୍ପରିକ ମତ୍ସ୍ୟଜୀବୀମାନଙ୍କ ଦଖଲରେ ଥିଲା। ପର୍ଯ୍ୟାପ୍ତ ମାଛ ଧରୁଥିଲେ, ମାଛରେ ଭାତ ଲଗାଇ ଖାଉଥିଲେ। ବଳକା ମାଛ ସହର, ବଜାରରେ ବିକୁଥିଲେ। ସହଜରେ ବିଶ୍ୱାସ କରାଯାଇନପାରେ ୧୯୫୧ ମସିହାର

କଥା। ପୁରୀ ମ୍ୟୁନିସିପାଲିଟି ମାର୍କେଟରେ ନୋଳିଆ ସ୍ତ୍ରୀଲୋକମାନେ ଚିଙ୍ଗୁଡ଼ି କୋଡ଼ିକୁ ୬୦ପଇସାରୁ ଟଙ୍କାଏ ମଧ୍ୟରେ ବିକ୍ରି କରୁଥିଲେ। ଆଜିର ବାଗ୍‌ଦା ଚିଙ୍ଗୁଡ଼ିକୁ ସେତେବେଳେ ବିଛାମାଳିଆ ଚିଙ୍ଗୁଡ଼ି କହୁଥିଲେ। ୨୦ଟି ଚିଙ୍ଗୁଡ଼ିର ଓଜନ ୫୦୦ ଗ୍ରାମରୁ ୮୦୦ଗ୍ରାମ ମଧ୍ୟରେ ହେବ। ମୂଲ୍ୟ ଟଙ୍କାକ ଭିତରେ। ଆଜି ବଜାରରେ ସେଇ ଚିଙ୍ଗୁଡ଼ି କିଲୋ ୪୦୦/୫୦୦ଟଙ୍କା। ହେଲେ ଆଜି ଚିଙ୍ଗୁଡ଼ି ଆଉ ନୋଳିଆ ବିକୁନି। ମ୍ୟୁନିସିପାଲିଟି ମାର୍କେଟରେ ଆଉ ଚିଙ୍ଗୁଡ଼ି ବିକ୍ରି ନାହିଁ। କମ୍ପାନୀ, ମାଫିଆ, ଟାଟା କବ୍‌ଜାରେ ଚିଙ୍ଗୁଡ଼ି। ଜାପାନ ଓ ଆମେରିକା ଲୋକେ ଖାଉଛନ୍ତି ଆମ ଚିଙ୍ଗୁଡ଼ି। ଏଣେ ଯାନ୍ତ୍ରିକ ମାଛଧରା ଯନ୍ତ୍ର ଓ ନଦୀ, ସମୁଦ୍ର ଜଳ ପ୍ରଦୂଷଣ ଯୋଗୁଁ ଚିଙ୍ଗୁଡ଼ି ସଂଖ୍ୟା ମଧ୍ୟ ଉଦ୍‌ବେଗଜନକ ଭାବେ କମି କମି ଯାଉଛି। ଏଣିକି ବୁଢ଼ାମାନେ ତାଙ୍କ ଅମଳର ଚିଙ୍ଗୁଡ଼ି ମାଛ ମଲାଇ କରି କଥା କହିବେ। ପୁଅ, ଝିଅ, ନାତି, ନାତୁଣୀ ବିଶ୍ୱାସ ନକରି କାନ ପହରେଇ ଦେବେ।

୫୦/୬୦ବର୍ଷ ତଳେ ନଦୀ, ହ୍ରଦ ବା ସମୁଦ୍ର ମାଛଉପରେ ଆଜିକା ଭଳି ସରକାରଙ୍କ ନିୟନ୍ତ୍ରଣ ନଥିଲା। ପାରମ୍ପରିକ ମତ୍ସ୍ୟଜୀବୀଙ୍କ ପାଇଁ ସେ ପ୍ରାକୃତିକ ସମ୍ପଦ ମୁକ୍ତ ଥିଲା। ମତ୍ସ୍ୟଜୀବୀମାନଙ୍କ ମାଛ ଧରା, ବିକା ନିରନ୍ତର ଜୀବିକା ଥିଲା। ପାରାଦ୍ୱୀପ, ଅସ୍ତରଙ୍ଗ, ପୁରୀ, ଗୋପାଳପୁର ଭଳି ସମୁଦ୍ରକୂଳ, ନଦୀ ମୁହାଣରୁ ଇଲିସି, ବିଛାମାଳିଆ ଚିଙ୍ଗୁଡ଼ି (ଆଜିର ବାଗ୍‌ଦା, ରୋକେନବର୍ଗ), ଶଙ୍ଖା, ଜାହାଙ୍ଗିରା, ପାଣି ଆଖିଆ, କୋକଲି ଭଳି ମାଛ ଝୁଡ଼ିରେ ଧରି ଗାଁ ଗାଁ ବୁଲି ବିକୁଥିଲେ। ପଇସା, ଚାଉଳ, ଧାନ, ମୁଗ, ବିରି ଯାହାବି ମିଳିଲା ନେଉଥିଲେ। Barter Economyର କାଳ। ଜିନିଷ କିଣିବ। ତୁମ ଜିନିଷ ବଦଳ ଦେବ। ଆଜି ତ ନିଆଁ ଧୂଆଁ ଦର। ଇଲିସି ମାଛ ବିଶା (ପ୍ରାୟ ୨କିଲୋକୁ) ସେରେ ମୁଗ ବା ସେରେ ଚାଉଳ ବା ୨ସେର ଧାନ। ସେରକ ଆଜିକାର ୫୦୦/୬୦୦ଗ୍ରାମ। ଆଜି ଇଲିସି କାଁ ଭାଁ ମିଳୁଛି। କିଲୋ ୬୦୦ଟଙ୍କାରୁ ୨୫୦୦ଟଙ୍କା ମଧ୍ୟରେ।

ମାଛୁଆଙ୍କର ମଉଜ ମଜଲିସ ବି ଥିଲା। ଚଇତ ପରବ, ଘୋଡ଼ା ନାଚ, ପୋଙ୍ଗଲ ଭଳି ଜାତିଜାତିକା ପର୍ବ। ଝିଅ, ପୁଅ ଏକାଠି ନାଚିବା, ପୁରୁଷମାନେ ହାଣ୍ଡିଆ, ପଇସା ହେଲେ କେବେ କେବେ ନାଲିପାଣି ଟିକେ ମାରି ସେ ୧୦/୧୫ଦିନ ବର୍ଷକର କ୍ଲାନ୍ତି ଭୁଲି ଯାଉଥିଲେ। ଅଭିଆଡ଼ି ଘରଯୋଗ୍ୟା ଝିଅ, ପୁଅଙ୍କ ଭିତରେ ବି ମନ ମିଳାମିଳି ଉତ୍ସବ ଭିତରେ ହେଉଥିଲା। କର୍ପୂର ଉଡ଼ିଗଲାଣି, କନା ଖଣ୍ଡିକ ବାସ ଦେଉଛି। ଏବେ କେଉଁଠି କେଉଁଠି ଘୋଡ଼ାନାଚ ହେଉଛି। ହେଲେ ସେ କାଳର ଜୋର୍ ଆଉ ନାହିଁ।

■ *ଆଉ କେତେ ବିଷ ପିଇଲେ ଚେତିବା... !*

ମାଛକଥା ଆମେ କାହିଁକି ଏତେ କହୁଛୁ। ଭାତ ଆଉ ମାଛ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ପ୍ରାୟ ୮୦ପ୍ରତିଶତ ଲୋକଙ୍କର ପ୍ରଧାନ ଖାଦ୍ୟ ଥିଲା। ଶ୍ୱେତସାର ଓ ଶକ୍ତି (Energy) ପାଇଁ ଆମେ ଭାତ ଖାଇବା। ମାତ୍ର ଏଥିସହିତ ଶରୀର ପୁଷ୍ଟିସାଧନ ପାଇଁ ପ୍ରୋଟିନର ଆବଶ୍ୟକତା ଅଛି। ମୁଗ, ବିରି, କୋଳଥ, ଡାଲିକୁ ଗରିବ ଲୋକଙ୍କର ପୁଷ୍ଟିସାର (poorman's protien) କୁହାଯାଏ। ଡାଲି ଜାତୀୟ ଖାଦ୍ୟରୁ ୧୭-୨୦ପ୍ରତିଶତ ପୁଷ୍ଟିସାର ମିଳିଥାଏ। ସତ, ହେଲେ ଗାଁର ଦଳିତ, ଆଦିବାସୀ, ମୂଲିଆ, ଛୋଟ ଓ ନାମମାତ୍ର ଚାଷୀମାନେ କେତେବା ଡାଲି ପାଆନ୍ତି। ବର୍ଷସାରା ସେମାନଙ୍କୁ ଭାତ ସହିତ ଡାଲି ମିଳେ କି ? ନାଁ। ମୁଗ, ବିରି ବା କୋଳଥ ଉପାଡ଼ି ଦଳିତମାନେ ମଜୁରି ବାବଦକୁ ଅଟା ନିଅନ୍ତି। ଫସଲର ୧୫ରୁ ୨୦ପ୍ରତିଶତ ଅଟାକୁ ନେଇଥାନ୍ତି। ଆଗ କାଳରେ (୧୯୬୫ସବୁଜ ବିପ୍ଳବ ରାଜୁତି ଆଗରୁ) ରବି ଫସଲ ଭଲ ଅମଳ ମିଳୁଥିଲା। ଅଟାରୁ ଶ୍ରମିକମାନେ ୩/୪ମାସ ପାଇଁ ଡାଲି ଯୋଗାଡ଼ କରିପାରୁଥିଲେ। ସାଆନ୍ତଙ୍କ ଡାଲି ତ ନୁହେଁ। ଡାଲିପାଣି। ଆଜି ଆଉ ସେକାଳ ପଖାଳ ନାହିଁ। ଏବେ ତ ରାସାୟନିକ କୃଷିର ଯୁଗ। ରାସାୟନିକ ସାର ଓ କୀଟନାଶକ ଖୁଆଇ ଚାଷୀ ଧାନ ଅମଳ କଲା। ଟ୍ରାକ୍ଟର ଚାଷରେ ମାଟି ପଥର। ସାର ଖିଆ ମାଟିରେ ଜୀବନ ନାହିଁ। ମୁଗ, ବିରି ବୁଣିଲେ ଗଛ ଉଧଉ ନାହିଁ। ଗଛ ୨/୪ପତ୍ର ହେଲାବେଳକୁ ମରିଯାଉଛି ବା ପତ୍ର ହଳଦିଆ ହୋଇଯାଉଛି। ଦେଶୀ ମଞ୍ଜି ବି ଚାଷୀପାଖରେ ନାହିଁ। ସାଆନ୍ତମାନଙ୍କର କର୍ଣ୍ଣ ମଲେ ପାଞ୍ଚ ବା ଅର୍ଜୁନ ମଲେ ପାଞ୍ଚ। ଚାଷ ତ ଆଉ ଜମି ମାଲିକ କରୁନି। ଚାଷ ଭାଗକୁ ଦେଇ ମକଦ୍ଦମ ଚାକିରି କଲେ କି ଠିକାଦାରି ବା ବେପାର ବଣିଜ। ହାଉ ଯାଉ ପଇସା। ଡାଲି କିଣି ଖାଇଲେ। ହେଲେ ଦଳିତ, ଭୂମିହୀନ ବା ଭାଗଚାଷୀ ପାଇଁ ଆଜିକାଲି ଡାଲିର ଯେଉଁ ଆକାଶଛୁଆଁ ଦାମ୍, ଡାଲି ଅପହଞ୍ଚ। ସେଇଥିପାଇଁ ୨୦୧୩ ବିଶ୍ୱ କ୍ଷୁଧା ମାନ (Global Hunger Index)ରେ ଭାରତର ସ୍ଥାନ ୬୩ରେ। ଆଫ୍ରିକୀୟ ଦେଶର ମାନଠାରୁ ମଧ ତଳକୁ। ଓଡ଼ିଶା ତ ଶିଶୁ, ଗର୍ଭବତୀ ମହିଳାଙ୍କ ଅପପୁଷ୍ଟିରେ ଭାରତରେ ପ୍ରଥମ ସ୍ଥାନରେ ଅଛି। ପୁଷ୍ଟିହୀନତାର ଶିକାର ହୋଇ ଦଳିତ ଶିଶୁ, ମାମାନଙ୍କର ଅକାଳ ମୃତ୍ୟୁ ଆଜିକା ସମୟରେ ନିତିଦିନିଆ ଘଟଣା। (New Indian Express, 01.02.2014)। କିନ୍ତୁ ମାଛରେ ପୁଷ୍ଟିସାରର ମାତ୍ରା ୧୭-୨୫ ପ୍ରତିଶତ। ଶୁଖୁଆରେ ୬୦ରୁ ୬୫ ପ୍ରତିଶତ। ମାଛ, ଭାତ ଖାଇ ଦିହରେ କାଠିଏ ବଳ ସେକାଳ ଲୋକମାନଙ୍କର ଥିଲା।

ଆଗକାଳରେ ମାଛ ପ୍ରାୟ ସବୁଦିନ ମିଳୁଥିଲା। ଖାଲ, ଖମଣା, ଯୋରରୁ ମାଛ, ନଈ, ନାଳ, ପୋଖରୀରୁ ମାଛ, ଧାନ ବିଲରୁ ଭୋଦୁଅ ମାସରେ ମାଛ, ଚୁଆରୁ ମାଛ,

ବର୍ଷାଦିନେ କେଉଁଠି ଉଠା ମାଛ ତ କେଉଁଠି ଖସା ମାଛ, ଗାଁରେ ଜମିଦାରଙ୍କ ଗଡ଼ିଆ ପୋଖରୀରୁ ସ୍ତ୍ରୀ ଲୋକମାନେ କଇଁଚି, ପଟିକିଆ ଖୁଅ, ଅନ୍ଧୁଣୀରେ ଧରିବେ ମାଛ। ବନିସୀରେ ମାଛ, ଡିଆଁରେ ମାଛ, ଭଉଁରୀରେ ମାଛ, କାଠି ପୋହୁଅରେ ମାଛ, ଜାଲ ପୋହୁଅରେ ମାଛ, ହୁରୁଡ଼ା ମାଛ, ଘରେ ଘରେ ମାଛ ଗାଦି ହୋଇଯାଉଥିଲା। ନିଜେ ଖାଇ, ସାଆନ୍ତଙ୍କ ଘରକୁ ଦେଇ, ହାଟ ବଜାରରେ ବିକି ଲୁଣ, ତେଲ, ହଳଦୀ ବି କିଣୁଥିଲେ। ସାଆନ୍ତେ, ମକଦ୍ଦମ, ସାହୁକାର, ଜମିଦାରମାନେ ତ ପିଣ୍ଡା ତଳକୁ ଓହ୍ଲାଇଲେ ତାଙ୍କ ସମ୍ମାନ ହାନୀ (Prestige leak) ହୋଇଯିବ। କାଦୁଅ ପଙ୍କରେ ପଶି ମାଛ ଧରିବେ !

ତଟକା ଇଲିସି ପହଞ୍ଚିଛି। ସୋରିଷ, କଞ୍ଚାଲଙ୍କା, ଦି'ଚାରି ପାଖୁଡ଼ା ରସୁଣ ବାଟଣ ନେଇ ସୋରିଷ ତେଲ ଫୁଟଣରେ ଇଲିସି ପକାଇ ୨/୪ ଖରଡ଼ା ଦେବା, ପାଣି ଟିକେ, ଦହି କିଛି, କଞ୍ଚା ସୋରିଷ ତେଲ ଟିକେ ଫୁଟେଇଦେଇ ୨/୩ଥର ଘାଣ୍ଟି ଦେଲେ ୧୦/ ୧୫ମିନିଟରେ ଉତୁରିଗଲା କଞ୍ଚା ଇଲିସିର ଝୋଲ। କି ମହକ। ସାଇ ପଡ଼ିଶାରେ ବାସ ଚହଟି ଯିବ। ଥାଳିଏ ଭାତ, ୨ଖଣ୍ଡ ଇଲିସି, ଟିକେ ମାଖା ଝୋଳ। କି ତୃପ୍ତି। ବଙ୍ଗାଳି ତ ଇଲିସି ମାଛପାଇଁ ପାଗଳ। ୨୦୧୩ରେ ଇଲିସି କିଲୋ ୨୫୦୦ଟଙ୍କା ପର୍ଯ୍ୟନ୍ତ ବିକ୍ରି ଖର୍ଦ୍ଦି ହୋଇଛି। ଗଙ୍ଗା ଇଲିସି, ପଦ୍ମା ଇଲିସି ବା ମେଘନା ଇଲିସି। ସ୍ୱାଦ ଅଲଗା ଅଲଗା। ବାସ ଅଲଗା ଅଲଗା। ଆଜି ଆଉ ସେ ଇଲିସି ନାହିଁ। ଇଲିସି ମହର୍ଗ ନୁହେଁ, ଇଲିସିର ଦୁର୍ଭିକ୍ଷ ସାଧାରଣ ମଣିଷ ପାଇଁ ପଇସା ମହରଗ। ଦୁଇପୁଅ, ଯୁଆନ ଝିଅ ଦାଦନ ଖଟିବାକୁ ଯାଇଛନ୍ତି। ସେ କି ପଇସା ଯୋଗାଇବେ ଯେ ବାପା, ମା ଇଲିସି ମାଛ ଖାଇବେ? ସେତେବେଳେ ଗାଁ ପୋଖରୀରେ ବଢ଼ିପାଣି ପଶୁଥିଲା। ନିଲାମ ନାହିଁ କି କଟକଣା ନାହିଁ। ଧାନ କାଟି ବିଲରୁ ଆସିଲେ। ଖୁଅ ଖଣ୍ଡେ ଧରି ପୋଖରୀରେ ୪/୫ପଟା ଖୁଅ ଦେଇ ହୁରୁଡ଼େଇ ଆଣିଲେ। ୨/୪ଟାରୁ ଅଧିକ ରୋହି, ଭାକୁଡ଼ କି ମିରିକାଳି ଫଡ଼ ଫଡ଼ ହୋଇ ଜାଲରେ ପଡ଼ିଗଲେ। ଆନନ୍ଦରେ ୨/୪ବୁଡ଼ା ମାରି ମାଛଧରି ଭେଣ୍ଡାପୁଅ ହାଜର। ଖାଇବା ବେଳେ ଡେରି ହୋଇଯାଉଛି। ମା ତରବରରେ ୧୦/୧୨ଖଣ୍ଡ ପେଟି ମାଛ ଦରଭଜା କରି ଭାତଥାଳି ପାଖେ ଥୋଇଦେଲେ। କଞ୍ଚାଲଙ୍କା ଲଗାଇ ଥାଳିଏ ଭାତ ଉଠେଇଦେଲେ ବାପ, ପୁଅ। କି ମଜା ! ଏବେ ଏଗୁଡ଼ାକ ବୁଢ଼ୀମା କାହାଣୀ ହେଲାଣି। ମହୁରାଡ଼ି, କେରାଣ୍ଡି, ଚାନ୍ଦି ବା ଜରାଡ଼ି ମାଛ ଆସିଛି। ଟିକେ ସୋରିଷ, କଞ୍ଚାଲଙ୍କା, ୨ପାଖୁଡ଼ା ରସୁଣ ବାଟଣ କରି ବଟା ମସଲା, ହଳଦୀ, ଲୁଣ ମାଛରେ ଗୋଳାଇ କଖାରୁ ପତ୍ରରେ ବାନ୍ଧି ଘସିନିଆଁରେ ପୋଡ଼ିଦିଅ। ପତ୍ରରୁ କାଢ଼ି ୨/୪ଟୋପା ଘଣା ସୋରିଷ ତେଲ ପକାଇ ଚଟଣୀ କର।

■ *ଆଉ କେତେ ବିଷ ପିଇଲେ ଚେତିବା... !*

କଂସାଏ ପଖାଳ ଭାତ, ବଡ଼ିଏ ଚଟଣୀରେ ଉଠିଯିବ। ମାଛ ତରକାରୀ ତା’ ପାଖରେ ଲଦି ଦିଆହେବ। ଆଜିକାଲିକା ଚିକେନ ଯୁଗର ବାବୁ କ’ଣ ବିଶ୍ୱାସ କରିପାରିବେ ?

ଆଜି ବଜାରରେ ମାଛକିଲୋ ଦୁଇଶହ ଟଙ୍କା। ଆନ୍ଧ୍ର ମାଛ। ୩/୪ଦିନର ବରଫଦିଆ ମୁର୍ଦ୍ଦାର ମାଛ। ଖାଉଟି କ’ଣ ଜାଣୁଛନ୍ତି ଆନ୍ଧ୍ରମାଛ ବିଷ। କେତେପ୍ରକାର ରାସାୟନିକ ସାର, ଗୋରୁ, ଛେଳି, ମେଣ୍ଢା କଂସେଇଘରର ପୁଟି, ହର୍ମୋନ, ଆଣ୍ଟିବାଇଓଟିକ୍ ଓ କୀଟନାଶକ ଆନ୍ଧ୍ରମାଛ ଚାଷୀ ପୋଖରୀରେ ପ୍ରୟୋଗ କରନ୍ତି। ବ୍ରଏଲର କୁକୁଡ଼ା ମାଂସରେ ଜି.ଏମ୍. ଟକ୍‌ସିକ୍ ଥିବା କମ୍ ଖାଉଟି ଜାଣନ୍ତି। ମେଦ ବୃଦ୍ଧି ଘଟାଇବା ବ୍ରଏଲର କୁକୁଡ଼ା ମାଂସର ଧର୍ମ। କୁକୁଡ଼ା ମଳରେ ଏହିସବୁ ବିଷ ଭରପୁର ଥାଏ। ମାଛର ସ୍ୱଳ୍ପ ସମୟ ମଧ୍ୟରେ ଓଜନ ବଢ଼ାଇବା ପାଇଁ କୁକୁଡ଼ା ମଳ ନିୟମିତ ପୋଖରୀରେ ପ୍ରୟୋଗ କରାଯାଏ। ଆମ ପିଲାମାନଙ୍କର ମେଦବୃଦ୍ଧି (obesity) ପାଇଁ ଖାଲି ଫାଷ୍ଟଫୁଡ୍ ବା ସଫ୍ଟ ଡ୍ରିଂକ୍ ନୁହେଁ; ଆନ୍ଧ୍ର ମାଛ ମଧ ଦାୟୀ। କିଏ ଶୁଣୁଛି, କିଏ ବୁଝୁଛି। ପଇସା ଗଣି ରୋଗ କିଣୁଛେ।

ଦେଶୀ-ବିଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଆମ ଦେଶର ମଧୁର ମାଛଚାଷ ନିୟନ୍ତ୍ରଣ କରୁଛନ୍ତି। ପ୍ରତିବର୍ଷ ପରି ୨୦୧୪ଆନ୍ତର୍ଜାତିକ ଆର୍ଦ୍ରଭୂମି ଦିବସ ଫେବୃୟାରୀ ୨ତାରିଖ ଦିନ ଆମ ରାଜ୍ୟରେ ପାଳନ ହୋଇଯାଇଛି। ଚିଲିକା, ଅଂଶୁପା ଭଳି ଆର୍ଦ୍ରଭୂମିର ସୁରକ୍ଷାପାଇଁ ନେତାମାନେ ଅତ୍ୟନ୍ତ ବିକଳ ଥିବା କଥାରୁ ଜଣାଗଲା। କିନ୍ତୁ ଆମେ ସବୁ ଜାଣିଛେ କି ପୁରୀଜିଲ୍ଲାର ଗୋପ, ସଦର, ବ୍ରହ୍ମଗିରି ବ୍ଲକ୍‌ର ହଜାର ହଜାର ହେକ୍ଟର ଆର୍ଦ୍ରଭୂମି ବେଦାନ୍ତ ଭଳି କମ୍ପାନୀମାନେ କେଉଁଠି ସରକାରଙ୍କଠାରୁ ଲିଜ୍ ନେଇ ତ କେଉଁଠି ଦଲାଲମାନଙ୍କୁ ଲଗାଇ ଚାଷୀର ପାହି-ଜମି ଶାଗ ମାଛ ଦରରେ କିଣି ମାଛଚାଷ, ଚିଙ୍ଗୁଡ଼ିଚାଷ କରୁଛନ୍ତି। ଆମେ କମ୍ପାନୀ ଜମି ହଡ଼ପ କଥାକୁ ଯାଉନାହୁଁ। ସ୍ଥାନୀୟ ଲୋକ ଆନ୍ଦୋଳନ କରି ଏପରି ହଡ଼ପ ଜମିକୁ କମ୍ପାନୀ କବଳରୁ ଉଦ୍ଧାର କରିପାରନ୍ତି। ମାତ୍ର ବେଦାନ୍ତ ଗୋପ, ପୁରୀ ସଦର ଖାଲୁଆ ଜମିକିଣି ମଧୁର ମାଛଚାଷ କରୁଛି। ନିମାପଡ଼ା, ନିଆଳି, କାକଟପୁର ବା ଭୁବନେଶ୍ୱରରେ ବେଦାନ୍ତ ଜୀଅଁନ୍ତା ମାଛ ବିକ୍ରି କରୁଛି। ଖାଉଟିମାନେ ଜାଣନ୍ତିକି ସେ ମାଛ କେଡ଼େ ବିଷାକ୍ତ ? କ୍ଷେତ୍ରରେ ଦେଖିଲେ ସଠିକ ଆକଳନ କରିହେବ। ଥରେ ତଥ୍ୟ ଜାଣିପାରିଲେ ତ ଖାଉଟି ସେ ମାଛ ପାଖ ହୁଣ ହୁଅନ୍ତେ ନାହିଁ। ସରକାରଟା ଯଦି ଲୋକଙ୍କର ବା ଲୋକଙ୍କ ପାଇଁ ହୋଇଥାନ୍ତା, କମ୍ପାନୀକୁ କାଠଗଡ଼ାରେ ଠିଆ କରନ୍ତାଣି।

ଆନ୍ଧ୍ରରେ ମାଛଚାଷୀଙ୍କ ଦୁଃଖ କାହାଣୀ ଜାଣନ୍ତି କି ? ଦଲାଲମାନେ ବ୍ୟାଙ୍କ, ହାତ ଉଧାରି ବା ସାହୁକାର ଠାରୁ ଋଣ କରାଇଦେଇ ଚାଷୀକୁ ମାଛଚାଷ ଯନ୍ତାରେ ପକାଇଦେଲେ। ମାଛବେପାରୀ ବରାଦରେ ମାଛ ଚାଷ ହେଲା। ମାଛବାବୁ ଯାହା ଯାହା ବତେଇଲେ ଚାଷୀ ମାନିଲା। ସାର ପକାଇଲା। ବିଷ, କୀଟନାଶକ ପକାଇଲା। ମାଛ ହୁ ହୁ ବଢ଼ିଗଲେ ସତ, ବେପାରୀ ୨୦୦ଟଙ୍କାରେ ବଜାରରେ ମାଛ ବିକିଲା। ଚାଷୀକୁ ବେପାରୀ କ'ଣ ମୂଲ୍ୟ ଦିଏ ଆମେ ଜାଣୁ କି ? ଯେତେବେଳେ ବଜାରରେ କିଲୋ ୨୦୦ଟଙ୍କା ଚାଷୀ ହାତକୁ ଯାଏ ୨୦ଟଙ୍କା। ମାଛ ପାଇଁ ସର୍ବନିମ୍ନ ସହାୟକ ମୂଲ୍ୟ ନାହିଁ। ମତ୍ସ୍ୟବିଭାଗ ଅଧିକାରୀମାନେ ଚାଷୀର ପିଠିରେ ପଡ଼ିବାର ନାହିଁ। ହାତୀ ମିଳିବ, ଘୋଡ଼ା ମିଳିବ କହି ଚାଷୀକୁ ଟେକାଟେକି କରିଦେଲେ। ଚାଷୀ ଫସିଗଲା। ଚାଷଜମି ଖଣ୍ଡକରେ ପୋଖରୀ ଖୋଳିଲା। ଭୁଜଙ୍ଗ ଚୁଚୁନ୍ଦରା ନ୍ୟାୟରେ ମାଛ ଚାଷ ଛାଡ଼ିପାରୁନି କି ଋଣ ଶୁଝିପାରୁନି। କ'ଣ କରିବ ? ଆତ୍ମହତ୍ୟା ! !

ସମାଜର ଦୁର୍ବଳଶ୍ରେଣୀ, ଦଳିତ, ଆଦିବାସୀ, ଛୋଟଚାଷୀ, ନାମମାତ୍ର ଚାଷୀଙ୍କ ଅଣ୍ଟାରେ ତ ପଇସା ନାହିଁ। କିଲୋ ୨୦୦ଟଙ୍କାରେ ମାଛ କିଣିବେ କେତେକ। ଆଗେ ଗାଁ'ର ନଈ, ପୋଖରୀ, ପାଟ, ଯୋର ମୁକୁଳାଥିଲା। ବଢ଼ି ପାଣିରେ ମାଛ ପଶୁଥିଲେ। ଶହ ଶହ କିସମର ଛୋଟ, ବଡ଼ ପ୍ରଜାତିର ମାଛ ଜାଆଁଳ ଭର୍ତ୍ତି ହୋଇଯାଉଥିଲେ। ଜମିଦାରଙ୍କ ଆସିବା ଯିବା ନଥିଲା। ଲୋକମାନେ ମାଛ ଯିଏ ଯେତେବେଳେ ପାରୁଥିଲେ, ଧରୁଥିଲେ। ପଞ୍ଚାୟତରାଜ, ତହସିଲ ବ୍ୟବସ୍ଥା ହେଲା। ଯେତେସବୁ ଜଳଉତ୍ସ (Water body) ଥିଲା ପଞ୍ଚାୟତ ନିୟନ୍ତ୍ରଣକୁ ସରକାର ନେଇନେଲେ। ଏଣିକି ଅନ୍ଧାରି ବେପାର ଚାଲିଲା। ସରକାରୀ ଦଳର ଗୁଣ୍ଡା, ଚାମଚା, ରାଜନେତା, ପଇସାବାଲାଙ୍କ କବ୍‌ଜାକୁ ପୋଖରୀ, ଗଡ଼ିଆ ଚାଲିଗଲା। ଆମ ସରକାରଙ୍କ କୃଷିନୀତି ଝିଙ୍କିକା ମାରି ବଣି ପୋଷା ସଙ୍ଗେ ସମାନ। ଗ୍ରାମପଞ୍ଚାୟତ / ସରକାରଙ୍କ ରାଜସ୍ୱ ବିଭାଗ ବର୍ଷକିଆ, ତିନିବର୍ଷିଆ, ପାଞ୍ଚ ବର୍ଷିଆ ଏପରିକି ୧୦ବର୍ଷିଆ ନିଲାମ କାରସାଦି କରି ତାଙ୍କ ଦାଦାମାନଙ୍କୁ ଦେଇଦେଲେ। ସେମାନଙ୍କ ହାତରେ ଭୋଟ୍ ଅଛି ନା। ସେମାନଙ୍କୁ ସବୁ ହାତରେ ରଖିବାକୁ ହେଲେ ଗରିବକୁ ଭାତରେ ମାରିବାକୁ ହେବ।

ମାଛ ପୋଖରୀ ନିଲାମଧାରୀମାନେ ସରକାରଙ୍କ ବରାଦରେ ରୋହି, ଭାକୁଡ଼, ମିରକାଳି, କମନ କ୍ରାପ (ଚାଇନା ରୋହି), ଗ୍ରାସ କ୍ରାପ ଓ ସିଲଭର କ୍ରାପ ଏଇ ୬କିସମର ଜାଆଁଳ କମ୍ ବେଶୀ କରି ପୋଖରୀରେ ପକାଇଲେ। ପ୍ରଥମ ୩ଟି ଆମ ଦେଶୀ କିସମ। ପଛ ୩ଟି ବିଦେଶୀ ମାଛ। ସ୍ୱାଦହୀନ, ଚିରଳ, ବାଳିଆ, ସେଉଳ, ମାଗୁର, ସାରଣା ଭଳି

ଆଉ ଶହ ଶହ କିସମର ମାଛ ଜାଆଁଳ ସରକାରଙ୍କ ହ୍ୟାଚେରୀ ତିଆରି କରେନି। ସରକାରଙ୍କ ହିସାବରେ ଏସବୁ କିସମଗୁଡ଼ିକ ଅଦରକାରୀ ମାଛ (ଭୁବନେଶ୍ୱର ରାଜ୍ୟ କୃଷି ପ୍ରଦର୍ଶନୀରେ ମତ୍ସ୍ୟବିଭାଗ ଷ୍ଟଲ୍‌ରେ ଏହିସବୁ ମାଛ କିସମଗୁଡ଼ିକ ଅଦରକାରୀ ମାଛ ବୋଲି ପ୍ରଦର୍ଶନ କରାଯାଇଥାଏ)। ଜାଆଁଳ ଛାଡ଼ିବା ପରେ ନିଲାମଧାରୀମାନେ ପୋଖରୀରେ ଖତ, ଗୋବର, କୁକୁଡ଼ାମଳ, କଂସେଇଖାନା, ବଳକା ମାଂସ, ପୁଟି, ରାସାୟନିକ ସାର ଓ ହର୍ମୋନ ପକାଇ ଚାଲିଲେ। ପାଣି ପ୍ରଦୂଷିତ ହେଲା। ସେଉଳ, ଗଡ଼ିସା, ରଣ, ମାଗୁର ଭଳି ତଳି ମାଛ ନିପାତ ହେଲେ। ଏଣେ ପାଣି ଦୂଷିତ ହେବା ଦ୍ୱାରା ପୋଖରୀରେ ଗାଧୋଇଲେ ଚର୍ମରୋଗ ହେଲା। ଗୋରୁ ଗାଈ ଗାଧୋଇବା ତ ମନା। ମରୁଡ଼ିବେଳେ ଜମିକୁ ପାଣି ମଡ଼ାଇଲେ ପୋଲିସ କେସ। ମାଛ ମରାହେବ, ସହରରେ ବିକ୍ରି। ସରକାରୀ ଅଧିକାରୀ, ବ୍ୟାଙ୍କ ମ୍ୟାନେଜର, ଥାନା ବାବୁ ମାଛ ଭେଟି ଦେବେ। ଗାଁ ଲୋକେ କାତିଟିଏ ବି ପାଇବେନି। ଆମ ଜିଲ୍ଲାପାଳ, ପୋଲିସ ବାବୁମାନେ ଜାଣନ୍ତି କି ମାନ୍ୟବର ଉଚ୍ଚ ନ୍ୟାୟାଳୟ ୨୦୧୦ ମସିହାରେ ଏକ ଯୁଗାନ୍ତକାରୀ ରାୟ ଦେଇଛନ୍ତି। ରକ୍ଷିତ ଅନାବାଦି, ଗୋଚର ବା ସର୍ବସାଧାରଣ ଜମିରେ ପୋଖରୀ ଥିଲେ ମାଛ ଓ ପାଣି ଗାଁ ଲୋକମାନେ ହିଁ ବ୍ୟବହାର କରିପାରିବେ। ଆମ ଓଡ଼ିଶାରେ ମାରିନେଲେ ମହାପାତ୍ରେ ଚାହିଁଛନ୍ତି ଜଳକା ନ୍ୟାୟରେ ସରକାର ତେଲିଆ ମୁଣ୍ଡରେ ତେଲ ଢାଳୁଛନ୍ତି। ସରକାର ଜାଣୁନାହାନ୍ତି ସରକାରୀ ପ୍ରୋତ୍ସାହନରେ ଶହ ଶହ କିସମ ମାଛମାନଙ୍କର ବଂଶ ଲୋପ ପାଇଯାଉଛି ? ରାଜ୍ୟ ବା କେନ୍ଦ୍ର ମତ୍ସ୍ୟସମ୍ପଦ ବିକାଶ ମନ୍ତ୍ରଣାଳୟ କମ୍ପାନୀମାନଙ୍କ ସ୍ୱାର୍ଥରେ ପ୍ରାକୃତିକ ସମ୍ପଦ ବିନାଶ ନିରନ୍ତର ଭାବେ କରିଚାଲିଛନ୍ତି। ସାମୁଦ୍ରିକ ମତ୍ସ୍ୟ ସମ୍ପଦ କ୍ଷେତ୍ରରେ ବିପଦ ଉଦ୍‌ବେଗଜନକ।

ବୈଜ୍ଞାନିକ, ପରିବେଶବିତ୍ ଓ ଗବେଷକମାନେ ସତର୍କ କଲେଣି ପୃଥିବୀର ଶାସକଗୋଷ୍ଠୀ ବେଳହୁଁ ମତ୍ସ୍ୟସମ୍ପଦର ସୁରକ୍ଷାପାଇଁ ତୁରନ୍ତ ଫଳପ୍ରଦ ପଦକ୍ଷେପ ନନେଲେ ଆସନ୍ତା ୪୦ବର୍ଷ ଭିତରେ ପୃଥିବୀରୁ ମାଛ ବଂଶ ସମ୍ପୂର୍ଣ୍ଣ ଲୋପ ପାଇଯିବ। ମେ ୧୯, ୨୦୧୦ ହିନ୍ଦୁରେ ପ୍ରକାଶିତ ଖବରର କିଛି ଅଂଶ ଏଠାରେ ଉଦ୍ଧାର କରାଯାଉଛି:--

'Oceans Fish stock could vanish by 2050.'

More than 20million people employed in the fishing industry may need to be retrained for other work over the next 40years if the final collapse of fish stocks in the world's oceans is to be avoided, the UN warned on Monday.

Pavan Sukhdev, head of the initiative said, 'Already 30 percent of the Ocean fisheries have collapsed and producing less than 10percent of this original ability.' At the heart of the analysis is the $27billions in subsidies it estimates is being injected into fishing every year mainly by developing countries. UN says the subsidies are huge in terms of the scale of the industry, amounting to almost a third of the $85billion total value of fish caught xxx.... Gaurdian Newspapers limited, 2010'.

ମଧୁର ମାଛ ପ୍ରଜାତିଙ୍କ ଦୁଃଖ କହିଲେ ନସରେ। ଆମଦେଶରେ ୫ହଜାରରୁ ଅଧିକ ପ୍ରଜାତିର ମଧୁର ମାଛ ୧୯୫୦ପୂର୍ବରୁ ଥିଲା। ରାସାୟନିକ କୃଷି ଓ ବିକାଶ ନାଁରେ ଯେଉଁ ବିନାଶ ପ୍ରକ୍ରିୟା ଚାଲିଛି, ଏହାର ଦୌରାତ୍ମ୍ୟରେ ଏହି ସଂଖ୍ୟା କଳ୍ପନାତୀତ ଭାବେ ହ୍ରାସ ପାଇ ବର୍ତ୍ତମାନ ୨୦୦/୩୦୦ପ୍ରଜାତିକୁ କମି ଆସିଲାଣି।

ଆମ ଶରୀରର ପୁଷ୍ଟିସାଧନ ପାଇଁ ମାଛର ଭୂମିକା ଅତୁଳନୀୟ। ମାଛରେ ତ ଯଥେଷ୍ଟ ପୁଷ୍ଟିସାର ଥିବା ଆମେ ଆଗରୁ କହିଛେ। ହଜମ ଦୃଷ୍ଟିରୁ ମାଛ ଖୁବ୍ ଶୀଘ୍ର ହଜମ ମଧ ହୋଇପାରେ। ମାଛରେ ଲାଇସିନ୍ (Lysine) ଏବଂ methionine ଭଳି ଆମିନୋ ଏସିଡ୍ ଭରପୁର ଥାଏ। ମାଛରେ ଥିବା ପଲିଫ୍ୟାଟି ଏସିଡ୍ (eicosopentaenoic acid) ଆମ ଶରୀରରେ ରକ୍ତର କୋଲେଷ୍ଟୋରଲ ମାତ୍ରା କମାଇବାରେ ସହାୟକ ହୋଇଥାଏ। ଏହା ଫଳରେ ରକ୍ତଚାପ ବା ହୃଦ୍‌ଘାତ ଭଳି ରୋଗର ଆଶଙ୍କା ଯଥେଷ୍ଟ କମିଥାଏ। ଏହା ବ୍ୟତୀତ ଭିଟାମିନ୍ A,B,C,D,Bcomplex, B12 ଏବଂ କ୍ୟାଲସିୟମ, ଫସ୍‌ଫରସ, ଲୌହ, ସୋଡ଼ିୟମ, ପୋଟାସିୟମ, ମାଙ୍ଗାନିଜ ଏବଂ ଗନ୍ଧକର ଧାତବ ଲବଣ ମାଛରେ ପ୍ରଚୁର ପରିମାଣରେ ଥାଏ ଯେଉଁଥିପାଇଁ ସେ କାଳ ଲୋକଙ୍କର ରୋଗ ପ୍ରତିରୋଧକ ଶକ୍ତି ଯଥେଷ୍ଟ ଥିଲା (Source- A Manual of Fresh-water aquaculture- Dr R.santharam, Dr.N.Sukumaran & Dr. P.Natarajan) Fisheries College, Tamilnadu Agricultural University, Tuticorin)।

ପରିବେଶବିତ୍ ମାନେ ନିରବଚ୍ଛିନ୍ନଭାବେ ପ୍ରାକୃତିକ ସମ୍ପଦର ସୁରକ୍ଷା ପାଇଁ ଲଢ଼େଇ କରୁଛନ୍ତି। କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଜାଣତରେ କମ୍ପାନୀମାନେ ଜଳ, ଜମି, ଜଙ୍ଗଲ ବା ଜନ୍ତୁ ଲୁଟ କରିଚାଲିଥିଲାବେଳେ ପ୍ରାକୃତିକ ସମ୍ପଦକୁ ଧ୍ୱଂସମୁଖରୁ ରକ୍ଷାକରିବା ପାଇଁ ଉଦ୍ୟମ ଜାରି ରଖିଛନ୍ତି। ସେମାନଙ୍କ ଚେଷ୍ଟାରେ ଅଲିଭ ରିଡ଼ଲେ କଇଁଛ, କୁମ୍ଭୀର, ନୀଳ କଙ୍କଡ଼ା,

■ *ଆଉ କେତେ ବିଷ ପିଇଲେ ଚେତିବା... !*

ସାପ, ବାଘ, ସିଂହ, ହାତୀ, ନୀଳଗାଈ, ଶଙ୍ଖଚିଲ, ଶାଗୁଣା, ଘରଚଟିଆ, ବାୟାଚଢ଼େଇ, ମୟୂର, କୃଷ୍ଣସାର ମୃଗ, ବାଦୁଡ଼ି ଭଳି ପଶୁ, ପକ୍ଷୀ ଓ ଜଳଜୀବମାନଙ୍କୁ ବିରଳ ପ୍ରାକୃତିକ ସମ୍ପଦ ମାନ୍ୟତା କରାଇ ସୁରକ୍ଷାପାଇଁ ଲାଗି ପଡ଼ିଛନ୍ତି। ଏହା ସେମାନଙ୍କର ସାଧୁ ଉଦ୍ୟମ। ବିକାଶ ନାଁରେ ସରକାର କମ୍ପାନୀମାନଙ୍କ ଲାଭପାଇଁ ଯେପରି ବିନାଶର ଜୟଯାତ୍ରା ଚାଲୁ ରଖିଛନ୍ତି ବିରୋଧୀମାନଙ୍କ ସ୍ୱର ସରକାରଙ୍କୁ ବାଟ ଓଗାଳୁଛି। ବିଚରା ମାଛ, କରତିକିଆ, ସୁଧାର ଜଳ ଜୀବଟି କି ଦୋଷ କଲା। ମାଛ କ'ଣ ବିରଳ ପ୍ରାକୃତିକ ସମ୍ପଦ ମାନ୍ୟତା ପାଇବା ପାଇଁ ହକ୍‌ଦାର ନୁହେଁ? ମାଛବଂଶ ସୁରକ୍ଷା ପାଇଁ ସଚେତନ ବୁଦ୍ଧିଜୀବୀମାନେ ସ୍ୱର ଉତ୍ତୋଳନ କଲେ କେମିତି ହୁଅନ୍ତା ?

ପରିବେଶ ସନ୍ତୁଳନ, ଶରୀର ପୁଷ୍ଟିସାଧନ, ଖାଦ୍ୟ ସାର୍ବଭୌମତ୍ୱ, ଜୀବନଜୀବିକା, ମନୋରଞ୍ଜନ ଓ ଦେଶୀ ଅର୍ଥନୀତି ସୁଦୃଢ଼ କରିବାରେ ମାଛର ଉଲ୍ଲେଖନୀୟ ଭୂମିକା ଶାସ୍ତ୍ର, ପୁରାଣ, ସାହିତ୍ୟ, ସଂସ୍କୃତି ଓ ଇତିହାସରୁ ଯଥେଷ୍ଟ ପ୍ରମାଣମିଳେ। ଆମେ ପୁଣିଥରେ ମନେ ପକାଇବାକୁ ଚାହୁଁଛୁ ଉତ୍ତର ଖୋଜିବା ପାଇଁ। (୧) କାହିଁକି ମାଛର ବଂଶ ଲୋପ ପାଇଯିବା ଆଶଙ୍କା ଉପୁଜୁଛି ? (୨) କାହିଁକି ଦଳିତ, ଆଦିବାସୀ, ମତ୍ସ୍ୟଜୀବୀ, ଛୋଟ ଓ ନାମମାତ୍ର ଚାଷୀ ପାଇଁ ମାଛ ଏକ ବିଳାସ ସାମଗ୍ରୀ ପାଲଟୁଛି ? (୩) କାହିଁକି ମାଛମରା ଜାଲ, ଭଉଁରି, ପୋହୁଅ, ଖଇଁଚି, ଦାନ୍ତିଆ, ଅନ୍ଧୁଣୀ, ବଜା ଭଳି ମାଛମରା ଦେଶୀ ଯନ୍ତ୍ରଗୁଡ଼ିକ ଚାଷୀର ଭାଡ଼ି, ଗୁହାଳ, ପଲାଡ଼, ବାରଣ୍ଡା ବା ଅଗଣାରେ ଅକାମି ହୋଇ ଖତ ଖାଉଛି ? ମାଛମାନଙ୍କ ବିପଦ ପାଇଁ ବିକାଶ ଯନ୍ତା କ'ଣ ?



# ମାଟି ମା'କୁ ଚିହ୍ନିବା ଆସ

କ୍ଷିତି, ଅପ୍, ତେଜ, ମରୁତ ଓ ବ୍ୟୋମ। ଏହି ୫ଟି ମୂଳ ଉପାଦନକୁ ନେଇ ଜୀବଜଗତର ସୃଷ୍ଟି। କ୍ଷିତି ବା ମାଟିର ଭୂମିକା ଏମାନଙ୍କ ମଧ୍ୟରେ ଅଧିକ। ଜୀବର ମୃତ୍ୟୁପରେ ଅପ୍, ତେଜ, ମରୁତ ଓ ବ୍ୟୋମ ଶୂନ୍ୟରେ ଲୀନ ହୋଇଥାଏ। ମାତ୍ର ମରଶରୀର କ୍ଷିତି ବା ମାଟିରେ ମିଶିଯାଇଥାଏ। ଉଦ୍ଭିଦ, ପ୍ରାଣୀ ଓ ମଣିଷ ସମସ୍ତ ଜୀବନ୍ତବସ୍ତୁର ମୃତ୍ୟୁ ଅଛି। ମୃତ୍ୟୁ ପରେ ଏମାନେ ମାଟିରେ ମିଶି ମାଟି ପାଲଟିଯାଆନ୍ତି। ମାଟି ହିଁ ଜୀବଜଗତର ସୃଷ୍ଟିର ଆଧାର। ଉଦ୍ଭିଦ ଜଗତ ପ୍ରତ୍ୟକ୍ଷ ଭାବେ ମାଟିରୁ ଖାଦ୍ୟ ସଂଗ୍ରହକରି ବଞ୍ଚିଥାନ୍ତି। ପ୍ରାଣୀଜଗତ ପ୍ରତ୍ୟକ୍ଷ ବା ପରୋକ୍ଷଭାବେ ଖାଦ୍ୟପାଇଁ ମାଟି ଉପରେ ହିଁ ନିର୍ଭରଶୀଳ। ପଶ୍ଚିମ ଦେଶମାନେ (ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନ ଇତ୍ୟାଦି) ମାଟିକୁ ମଦର ଆର୍ଥ (Mother Earth)ବୋଲି କହିଥାନ୍ତି। ପ୍ରତିବର୍ଷ ଆର୍ଥ ଡ଼େ (Earth Day) ପାଳନ କରିଥାନ୍ତି। ୨୦୧୫ ବର୍ଷକୁ ଆନ୍ତର୍ଜାତିକ ମୃତ୍ତିକା ଦିବସ (2015-International Year of Soils) ମିଳିତ ଜାତିସଂଘ ବରାଦରେ ସଭ୍ୟଦେଶ ମାନେ ପାଳନ କରୁଛନ୍ତି। ସରକାର, ଶିଳ୍ପପତି, ବୈଜ୍ଞାନିକ ବା ସମାଜର ବଡ଼ପଣ୍ଡାମାନେ ମାଟିକୁ ମା' କହିବା କୁମ୍ଭୀର କାନ୍ଦଣା। ବିକାଶ ନାଁରେ ସେଇମାନେ ହିଁ ମାଟିର ବିନାଶ ପାଇଁ ଅହରହ କାର୍ଯ୍ୟ କରିଥାନ୍ତି। ସେ କଥାକୁ ପରେ ଆସିବା।

ଆଦିବାସୀ, ଚାଷୀ, ମହିଳା ଓ ଗାଁଗଣ୍ଡାର ସାଧାରଣ ମଣିଷ ନିରନ୍ତରଭାବେ କାହିଁ କେଉଁ ଆଦିମ କାଳରୁ ମାଟିକୁ ମା' କହି ପୂଜା ଅର୍ଚ୍ଚନା କରି ଆସୁଛନ୍ତି। ସେମାନେ ବୁଝିଛନ୍ତି ମାଟି ଏକ ପ୍ରାକୃତିକ ସମ୍ପଦ। ମାଟି ପରା ଆମକୁ ଖାଇବାକୁ, ପିନ୍ଧିବାକୁ, ମୁଣ୍ଡ ଗୁଞ୍ଜିବାକୁ ସବୁ ସାଧନ ଯୋଗାଉଛି। ମାଟି ସେମାନଙ୍କ ପାଇଁ ସୁନାଠାରୁ ଆହୁରି ମୂଲ୍ୟବାନ୍। ଆମ ଓଡ଼ିଶାରେ ବୈଶାଖ ଶୁକ୍ଳ ତୃତୀୟାକୁ ଆମେ ଅକ୍ଷୟ ତୃତୀୟା କହିଥାଉ। ଚାଷୀକୁଳ ପାଇଁ ସେ ଦିନଟି ପବିତ୍ର ଦିନ। ମୁଠି ଅନୁକୂଳ। ସେଦିନ ଲଙ୍ଗଳ ଧୋଇ ଚିତା ଦିଆ ହେବ। ବଳଦ ସକାଳୁ ମୁହାଁହେବେ। ଚାଷୀଭାଇ ନୂଆ ଲୁଗା ପିନ୍ଧି ମୁଣ୍ଡରେ ନୂଆ ଗାମୁଛାରେ

ଠେକା ବାନ୍ଧିବ। ହଳ ଯୋଚି ବିଲକୁ ଯିବ। ବିଲରେ ହଳ ଠିଆକରି ଆଗ ମାଟିକୁ ପୂଜା। ତାପରେ ମାଟିକୁ ମୁଣ୍ଡିଆମାରି ହଳ କରିବ। ନୂଆ ଟୋକେଇରେ ବିହନ ମୁଣ୍ଡାଇ ହଳ ପଛେ ପଛେ ଘରଣୀ ବିହନ ବୁଣିବ। ଆଗରୁ ବିଲରେ ଖତମାଟି କରିଛି। ମାଟିକୁ କାଣ୍ଡି ଅମଳ କରିଛି। ଭାଡ଼ିରେ ସାଇତା ବିହନ ଓଳିଆରୁ ପାଳି ଆଣିଛି। ବିହନ ତ ପଡ଼ିଗଲା। ପହିଲି ଆଷାଢ଼ରେ ଅସରାଏ ଫେଣଲଗା ବର୍ଷା ହୋଇଗଲେ ଅଗାଡ଼ି ଫୋଡ଼ ଗଛ। ମାଟିରେ ତ ଭରପୂର ଖତିରା (Humus)। ଉର୍ବର ମାଟି। ବର୍ଷାରେ ୧୫ଦିନ ଭିତରେ ଧାନ ଗଛ ଫଡ଼ା ଫଡ଼ା ହୋଇଯିବ। ଆଷାଢ଼ ମାସର ପହିଲି ବର୍ଷାରେ ଓଦାମାଟିର ମହକ। କି ବାସନା। ଧାନ ଗଛ ଦେଖି ବାସନା ଶୁଂଘି ଚାଷୀ ଆତ୍ମହରା ହୋଇଯାଏ। ଅନୁଭବୀ ହିଁ ଜାଣେ। ମାଟି ମା ପାଖେ କୃତ କୃତ ହୋଇଯାଏ।

ଜୁନ୍ ୧୨ରୁ ୧୭। ଯାରି ଭିତରେ ଆମ ରାଜ୍ୟରେ ରଜପର୍ବ। ବାରମାସରେ ତ ତେରପର୍ବ। ରଜ ଚାଷୀ ପର୍ବ। ରଜ ତିନିଦିନ ଚାଷକାମ ବନ୍ଦ। ବସୁମାତା ପରା ରଜସ୍ୱଳା ହୋଇଛି। ହଳ, ମାଟି ଖୋଳା ତଡ଼ା, ହଣାକୁଟା କିମିତି ହେବ? ମାଟିମାକୁ ବର୍ଷ ଭିତରେ ଏହି ତିନିଦିନ ବିଶ୍ରାମ। ରଜ ତିନିଦିନ ପିଠା, ପଣା, ଖେଳକୁଦ ମସ୍ତି ଚାଲିଲା। ପିଲାଙ୍କଠାରୁ ବୁଢ଼ାଙ୍କ ପର୍ଯ୍ୟନ୍ତ। ବାଗୁଡ଼ି ଖେଳ, ତାସଖେଳ, ପଶାଖେଳ, ଝିଅ ବୋହୂମାନଙ୍କର ଦୋଳି ଖେଳ। ଝିଅ ବୋହୂଙ୍କୁ ସେ ତିନିଦିନ ବାଡ଼ି ଛାଡ଼।

ଚତୁର୍ଥ ଦିନ। ଠାକୁରାଣୀ ଗାଧୁଆ। ଠାକୁରାଣୀ କିଏ? ବସୁଧା ବା ବସୁମାତା। ଚାଷୀଭାଇ ଆଗରୁ ଲଙ୍ଗଳ ଲୁହା, କୋଡ଼ି, କୋଦାଳ, କାଙ୍କ, ଦା, କଟୁରୀ, କୁରାଢ଼ି, ସାବଳ ଇତ୍ୟାଦି ଚାଷ ଉପକରଣ ଗାଁ କମାର ଶାଳରେ ପୂଜା ପୂଜି କରିଛି। ଘରଣୀ ଗୋବରରେ ଦୁଆର ମୁଣ୍ଡୁଳାଏ ଲିପିବେ। ଉପକରଣଗୁଡ଼ିକ ଦୁଆରେ ମନ୍ଦେଇକରି ଥୋଇବେ। ବସୁଧା ପୂଜାପାଇଁ ଗୃହିଣୀମାନଙ୍କର ଗୋଡ଼ ତଳେ ଲାଗୁ ନଥିବ। ହଳଦୀ ପାଣିରେ ମାଟି ମାକୁ ଗାଧୋଇଦେବେ। ମାଟିକୁ, ଚାଷ ଯନ୍ତ୍ରପାତିକୁ ସିନ୍ଦୂର ପିନ୍ଧାଇ ଦେବେ। ଫୁଲ, ଦୁବ, ବରକୋଳି ପତ୍ର ପକାଇ ପୂଜା ଅର୍ଚ୍ଚନା କରିବେ। ବାଡ଼ିଘରୁ ଆଣିଥିବା ଆମ୍ବ, ସପୁରି, ପଣସ, ନଡ଼ିଆ ମାଟିମାକୁ ଲାଗି କରାଇବେ। ହୁଳହୁଳି ପଡୁଥିବ। ଶଙ୍ଖ ବାଜୁଥିବ। ଗୃହିଣୀ ଆଣ୍ଠୁଭାଙ୍ଗି ମାଟିମାକୁ ପ୍ରଣାମ କରିବେ। ଘରର ବଡ଼ଲୋକମାନେ ମାଟିକୁ ମୁଣ୍ଡିଆ ମାରିବେ। ପିଲାଛୁଆଙ୍କୁ ଡାକି ମାଟିମାକୁ ପ୍ରଣାମ କରାଇବେ। ମା ପ୍ରସନ୍ନ ହେବେ। ଭଲ ଫସଲ ହେବ। ସମସ୍ତେ ଭୋଗ ପାଇବେ।

ଆଗରୁତ ଖରୁଡ଼ି ପାଗରେ ଧାନ ବୁଣାବୁଣି ସରିଛି । ଠାକୁରାଣୀ ଗାଧୁଆଦିନ ପୂଜାପୂଜି ପରେ ହଳଯୋଚା । ବଳୁରି ତଳି ପକାଇବ । ମଝିଆଣି ବିଲରେ ଛୋଟ ଧାନ ରୁଆ ହେବ । ଅସରାଏ , ଦୁଇ ଅସରା ବର୍ଷାପରେ ୧୦/୧୫ ଦିନରେ ତଳି ଡ଼େଇଁ ଆସିବ । ମାଟିରେ ତ ଖତିରା ଅଛି । ତଳି ବିଲରେ ଆଗରୁ ଦିଗୁଣ ଖତ ପକାଇଛି । ମାଟି ସୁସ୍ଥ ଅଛି । ମାଟିକୁ ଆଗରୁ ଅମଳ କରିଛି । ଦେଶୀ ଧାନ ବିହନ ତ । ୧୫ଦିନର ତଳି ଧାଡ଼ିରେ ଗୋଟିଏ ଗୋଟିଏ ରୋଇଦେଲେ ୧୦/୧୫ ଦିନ ଭିତରେ ପିଲ ଫାଟି କିଆରୀ ପୁରିଯିବ । ମାଟି ସୁସ୍ଥ ତ, ଅମଳ ପାଇଁ ଚିନ୍ତା ନାହିଁ ।

ସାଧାରଣ ମଣିଷଟି କାହିଁ କେଉଁ ଆଦିମ କାଳରୁ ପ୍ରକୃତିକୁ ପୂଜା କରିଆସିଛି । ଗଛକୁ ପୂଜା, ମାଟିକୁ ପୂଜା, ପାଣିକୁ ପୂଜା, ନିଆଁକୁ ପୂଜା । ଯେଉଁଠୁ ଉପକାର ପାଇଲା, ତାକୁ ପୂଜା । ମନ୍ତ୍ର, ଶ୍ଳୋକର ଭଣ୍ଡାମି ନାହିଁ । କାଠ, ପଥରରେ ଗଢ଼ା ମୂର୍ତ୍ତି ଏକ ବିକୃତ ମାନସିକତା । ଭଣ୍ଡାମି । ଗୋଟିଏ ଶ୍ରେଣୀର ଅକର୍ମା ସାଧାରଣ ମଣିଷକୁ ଲୁଟିବା ପାଇଁ । ଗଛର ମଲାଙ୍ଗ ଭଳି ଅନ୍ୟକୁ ଶୋଷିବା ପାଇଁ ଏଗୁଡ଼ାକ ଶକ୍ତିଶାଳୀ ଅସ୍ତ୍ର । ମାଟିକୁ ପୂଜା କରୁଛି ଏଇଥିପାଇଁ ଯେ ସେ ବୁଝିଛି ମାଟିର ଜୀବନ ଅଛି । ମାଟି ସକାଶେ ତା'ର ଜୀବନ । ତଥାକଥିତ ସଭ୍ୟମଣିଷ ପାଇଁ ମାଟି ଏକ ଜଡ଼ ପଦାର୍ଥ । ସେ ମାଟିକୁ ମଇଳା କହି ଘୃଣାକରେ । ପିଲାର ପାଠ ହଉନି । ଦୋଷ ବାପ, ମା, ଅଭିଭାବକର ନୁହଁ, ଶିକ୍ଷକର ନୁହଁ, ସମାଜର ନୁହଁ । ଅଲେଇ ବଲେଇ ମୁଣ୍ଡାଇବାକୁ ମାଟି । ତୁରନ୍ତ ବିଚାର 'ପିଲାଟି ମାଟି ହୋଇଗଲା ।' ସୁସ୍ଥ, ସବଳ ଯୁବକ । ହାତକୁ କିଛି କାମ ନାହିଁ । ଯନ୍ତ୍ରଯୁଗରେ ତା ହାତରୁ କମ୍ପାନୀମାନେ କାମ ଛଡ଼ାଇ ନେଉଛନ୍ତି । ଘରେ ବସୁଛି । ନହେଲେ ଛକରେ ସାଙ୍ଗ ପିଲାଙ୍କ ସହିତ ଦୁଃଖ ବାଣ୍ଟୁଛି । ବାପା, ଭାଇଙ୍କଠାରୁ ଗାଳି ମନ୍ଦ ଶୁଣୁଛି । ଶୁଣୁଛି "ତୋ ଦ୍ୱାରା ମଲାକଙ୍କଡ଼ା ଉଠାଇ ହେବନି । ତୁ ମାଟି ହୋଇଗଲୁ ।" ସତେ ଯେମିତି ମାଟି ଗୋଟେ ଅଲୋଡ଼ା ଜିନିଷ । ଯାହାର ଖାଇବ ତାକୁହିଁ ଗାଳି । ମାଟିକୁ ତାଚ୍ଛଲ୍ୟ- ନିଜ ଗୋଡ଼ରେ ନିଜ କୁରାଢ଼ି । ଆତ୍ମାଘାତୀ ବିଚାର । ସହରିଆ ଲୋକେ ତ ସଭ୍ୟ ନା ! ଗୋଡ଼ରେ ମାଟିଟିକେ ଲାଗିଗଲେ ଝାଡ଼ି ଝୁଡ଼ି ହୁଅନ୍ତି । 'ମଇଳା ଲାଗିଗଲା' ।

"Treating Soil Like dirt is a fatal mistake' The Hindu Friday March 27, 2015 Page-7" । "ମନେ କରାଯାଉ ପୃଥିବୀରେ ଜଳବାୟୁ ପରିବର୍ତ୍ତନର ଭୟ ରହିବ ନାହିଁ । ରହିବ ନାହିଁ ମଧୁର ଜଳ ସଂକଟ । ପୃଥୁଳତା ରୋଗ ଆମେ ଆୟତ

କରିଦେଲୁ । Antibiotic Resistance ରହିବନାହିଁ । ରହିବ ନାହିଁ କର୍କଟ ରୋଗର ଭୟ । ସନ୍ତ୍ରାସବାଦର ଡ଼ର ନାହିଁ । ଯୁଦ୍ଧର ଆଶଙ୍କା ନାହିଁ । ନାହିଁ ଗ୍ଲୋବାଲ ୱାର୍ମିଂ ସମସ୍ୟା । ତେବେ କ'ଣ ଆମେ ସବୁ ବିପଦ ଟାଳି ଦେଲେ । କ୍ଷମା କରିବେ । ପୃଥିବୀପୃଷ୍ଠରୁ ସବୁ ଅଘଟଣ, ସବୁ ସମସ୍ୟା ଅପସରି ଗଲେ ମଧ୍ୟ ଯଦି ଆମେ ମାଟିର ହେପାଜତରେ ହେଳା କରୁଛେ, ପୃଥିବୀରେ ଜୀବଜଗତ ବଞ୍ଚିରହିବା ଅସମ୍ଭବ ହୋଇପଡ଼ିବ । ତଥାକଥିତ ବୁଦ୍ଧିଜୀବୀ, ବୈଜ୍ଞାନିକ, ଅର୍ଥନୀତି ବିଶାରଦ, ରାଜନୈତିକ ଶ୍ରେଣୀ ବା ଶିଳ୍ପପତି, ସମାଜର ବଡ଼ପଣ୍ଡା ବୋଲି ଜାହିର କରୁଥିବା ସ୍ଥିତି ସଂପନ୍ନ ଜାତିମାନେ ମାଟିକୁ ତୁଚ୍ଛ, ଅଦରକାରୀ ଓ ଆବର୍ଜନା ଶ୍ରେଣୀର ବସ୍ତୁ ବୋଲି ବୁଝି ଯାଇଛନ୍ତି । ମାଟି ଏପରି ଏକ ଅପ୍ରାସଙ୍ଗିକ ଜିନିଷ ବୋଲି ଆମ ଧାରଣା ଯେ ମାସ ମାସ ଧରି ଖବର କାଗଜ, ରେଡ଼ିଓ, ଦୂରଦର୍ଶନରେ ମାଟି ସଂପର୍କିତ ଖବର ପଢ଼ିବା, ଶୁଣିବା ବା ଦେଖିବାପାଇଁ ମିଳେନାହିଁ । ହୁଏତ ସଂକୀର୍ତ୍ତନ, ନବକଳେବର, ଯଜ୍ଞ ଭଳି ହାଲକା ଖବରରେ ଖବର କାଗଜର ପୃଷ୍ଠା ପୁରିଯାଉଛି ବା ଟିଭି ମନିଟରରେ ଶୋଭାପାଉଛି । ମାଟି ଆମ ପାଦତଳେ ଅଛି । ଆମ ପୂର୍ବ ପୁରୁଷମାନେ ମାଟିର ମହତ୍ୱ ବୁଝିଥିଲେ । ଜୀବଜଗତ ମାଟିରୁ ସୃଷ୍ଟି । ମାଟି ପାଇଁ ହିଁ ଆମେ ବଞ୍ଚିଛେ । ମାତ୍ର ପତ୍ରକାର ବନ୍ଧୁମାନେ ମାଟିକୁ ଚିହ୍ନିବାରେ ଊଣା କରିଛନ୍ତି । ମାସ ମାସ ଧରି ଖବରକାଗଜରେ ମାଟି ଖବର ଦେଖିବାକୁ ମିଳେନି । (Source-George Monbiot, Guardian Newspaper Limited, 2015) । ପରିବେଶବିତ୍‌ମାନେ ଜଳ, ଜମି, ଜଙ୍ଗଲ କଥା କହୁନ୍ତି । ମାଟି ଓ ଜମି ଏକ କଥାନୁହେଁ । ସେମାନେ ମାଟିର ସୁରକ୍ଷା ପାଇଁବି ଲଢ଼େଇ କରନ୍ତୁ ।

ମାଟିର ଜୀବନ ଅଛି । ଖାଲି ଆଖିକୁ ମାଟି ଆମକୁ ଜଡ଼ଭଳି ଦେଖାଯାଏ । ମାଟିରୁ ଖାଦ୍ୟ ଗ୍ରହଣ କରି କୋଟି କୋଟି ପ୍ରାଣୀ ବଞ୍ଚନ୍ତି । ଉଦ୍ଭିଦ, ଜୀବଜନ୍ତୁ ଓ ମଣିଷ ଜୀବନ ମାଟିର ଦାନ । ସୁସ୍ଥ ମାଟିରେ ଅସଂଖ୍ୟ ଅଣୁଜୀବ (ଆଜୋଟୋ ବ୍ୟାକ୍ଟର, ଆଜୋସ୍ପିରିଲିୟମ, ରାଇଜୋବିୟମ) ଥିବା ବିଜ୍ଞାନାଗାରରେ ପରୀକ୍ଷାରୁ ଜଣାପଡ଼େ । ପ୍ରସିଦ୍ଧ ଅର୍ଥଶାସ୍ତ୍ରୀ ଡ଼ଃ ଇ.ଏ ସୁମାକର କହୁନ୍ତି "A cubic centimetre of fertile soil contains millions of living organisms, the full exploitation of which is far beyond the capacities of man". (Small is Beautiful by Dr. E.F. Schumacher Page - 91) । ଅର୍ଥାତ୍ ଘନସେଏ ଉର୍ବର ମାଟିରେ କୋଟିକୋଟି ଅଣୁଜୀବ ଥାନ୍ତି । ଏମାନେ ଉଦ୍ଭିଦର ବନ୍ଧୁ । ଉଦ୍ଭିଦର ବୃଦ୍ଧିପାଇଁ ଯବକ୍ଷାରଯାନ, ଫସ୍‌ଫରସ ଓ ପୋଟାସ୍ ଲବଣ ମୁଖ୍ୟତଃ ଦରକାର ହୋଇଥାଏ । ମାଟିରେ ଥିବା ଆଜୋଟୋବ୍ୟାକ୍ଟର, ଆଜୋସ୍ପିରିଲିୟମ ବାୟୁରେ

ଥିବା ଅମାପ ଯବକ୍ଷାରଯାନ (79% of Air-Nitrogen)କୁ ଖାଦ୍ୟରେ ପରିଣତ କରି ଗଛର ଚେରକୁ ଯୋଗାଇଥାନ୍ତି । ସେହିପରି ଫସ୍‌ପୋ-ବ୍ୟାକ୍ଟର ମାଟିରେଥିବା ଅଦ୍ରବଣୀୟ ଫସ୍‌ଫରସକୁ ଏବଂ ପୋଟାସିୟମ ବ୍ୟାକ୍ଟର ଖତରେ ଥିବା ପୋଟାସିୟମକୁ ଚେରକୁ ଯୋଗାଇଥାନ୍ତି । ମୁଗ, ବିରି, କୋଳଥ, ଚିନାବାଦାମ ଭଳି ଡ଼ାଲିଜାତୀୟ ଫସଲ ପାଇଁ କୃଷିବିଭାଗ ରାଇଜୋବିୟମ କଲଚର ବେଳେବେଳେ ଦେଇଥାନ୍ତି । ମାତ୍ର ଖଡିରା ମାଟିରେ ରାଇଜୋବିୟମ ଅଣୁଜୀବ ସଂଖ୍ୟାବୃଦ୍ଧି କରିପାରନ୍ତି ଏବଂ ଡ଼ାଲିଜାତୀୟ ଫସଲକୁ ଯବକ୍ଷାରଜାନ ବାୟୁରୁ ଟାଣିଆଣି ଯୋଗାଇଥାନ୍ତି । ୬୦ବର୍ଷରୁ ଅଧିକ ବୟସର ଚାଷୀ ଜଣେ ଜଣେ କୃଷି ବୈଜ୍ଞାନିକ କହିଲେ ଅତ୍ୟୁକ୍ତି ହେବନାହିଁ । କି ବିଚକ୍ଷଣ ବୁଦ୍ଧି । ନୂଆ ଜମିରେ ପ୍ରଥମକରି ମୁଗ ଚାଷ ହେବ । ଗତବର୍ଷ ମୁଗ ବୁଣା ହୋଇଥିବା ଜମିରୁ ଟୋକେଇଏ ମାଟିଆଣି ଚାଷୀ ନୂଆ ବିଲରେ ଛାଟିଦେଲା । ବିଲସାରା ରାଇଜୋବିୟମ ବ୍ୟାକ୍ଟିୟା ଖେଦିଗଲେ । ବାସ୍ ପଇସା ଖର୍ଚ୍ଚରୁ ଛୁଟି । ନୂଆ ଜମିରୁ ମୁଗ ଅମଳ ହାରୁନି, ବରଂ ଅଧିକ ।

ମା'ଠାରୁ କ୍ଷୀର ସରିଗଲେ ପିଲାର ମା ଦରକାର ପଡୁନି । କଥା ଅଛି "କ୍ଷୀର ଶୁଖିଲେ କି କରଇ ମା, ନଈ ଶୁଖିଲେ କି କରଇ ନାହା" । ଆଧୁନିକତା ପବନ ବାଜିବା ଦିନରୁ ଲକ୍ଷ ଲକ୍ଷ ମା ଏବେ ପିଲାଙ୍କ ପାଇଁ ଅଲୋଡ଼ା ହୋଇଯାଉଛନ୍ତି । କିନ୍ତୁ ମାଟି ମା ! ପିଲାଟି ମାଟିରେ ପଡ଼ିବା ଦିନରୁ ମରିବା ପର୍ଯ୍ୟନ୍ତ ମାଟିକୁ ଝୁଣୁଛି । ସେଇଥିପାଇଁ ଶାସ୍ତ୍ର, ପୁରାଣରେ ମାଟିମାର ପୂଜା । ବାହା ବ୍ରତରେ, ଯଜ୍ଞ ହୋମରେ ଆଣ ମାଟି ପୂଜା । ପିଲାର ଷଠିଘର ପାଇଁ ମାଟି, ଷଠିଓଷାରେ ମାଟିରେ ପିତୁଳା ଗଢ଼ି ପୂଜା । ବାୟାଚଢ଼େଇଟି ବସାକୁ ମାଟିରେ ଲିପି ଗୋବର ଟିକିଏ ଥୋଉଛି ବିଶୋଧନ ପାଇଁ । ମାତ୍ର ଅନ୍ଧ ସୁନାଗରା ଝୁଣ୍ଟିଲା ନ୍ୟାୟରେ ଆମେ ମାଟିର ଗୁରୁତ୍ୱ ବୁଝିବାକୁ ଆଗ୍ରହ କରୁନାହୁଁ ।

ଭୌଗଳିକମାନେ ମାଟିକୁ ଦୁଇଟି ଶ୍ରେଣୀରେ ବିଚାର କରନ୍ତି । 'ଉପର' ମାଟି (Top-soil) ଓ ତଳମାଟି (Sub-soil) । ଉପରମାଟିର ଗଭୀରତା ୭୦ରୁ ୯୦ ସେ.ମି. ଭିତରେ । ଏହା କାଦୁଅ, ବାଲି, ଶିଳା, ଖଣିଜପଦାର୍ଥ, ଜୈବିକ ଓ ଅଜୈବିକ ପଦାର୍ଥର କମ୍ ବେଶୀ ମିଶ୍ରଣରେ ତିଆରି । ଏହି ଉପର ମାଟି ହିଁ ଉଦ୍ଭିଦର ବୃଦ୍ଧିପାଇଁ ସହାୟକ ହୋଇଥାଏ । ଛୋଟବଡ଼ ଯେକୌଣସି ଗଛର ଚେର ଉପରମାଟିରୁ ହିଁ ଖାଦ୍ୟ ସଂଗ୍ରହ କରିଥାଏ ।ଏଇ ୭୦ରୁ ୯୦ସେ.ମି ଗଭୀରତାରେ ଥିବା ମୂଳ ବା ଚେର ଖାଦ୍ୟ ଯୋଗାଣ

କାର୍ଯ୍ୟରେ ଲାଗିଥାନ୍ତି । ବଡ଼ ବଡ଼ ଗଛ ପିଜୁଳି, ଆମ୍ବ, ପଣସ, ଶାଳର ମୂଳ ୨୦/୩୦ ଫୁଟ ପର୍ଯ୍ୟନ୍ତ ତଳକୁ ଯାଇଥାଏ । ମାତ୍ର ଉପମାଟି (sub-soil)କୁ ଭେଦିଥିବା ଚେର ଖାଦ୍ୟ ସଂଗ୍ରହ କରେ ନାହିଁ । ଉପମାଟି ତ କେବଳ ଶିଳା ବା ଖଣିଜ ପଦାର୍ଥ । ଗଛପାଇଁ ସେଥିରେ କିଛି ଖାଦ୍ୟ ନଥାଏ । କେବଳ ବଡ଼ ବଡ଼ ଦ୍ରୁମକୁ ଦୃଢ଼ଭାବେ ଧରି ରଖିବା ସେ ଚେରର କାମ । ଉପର ମାଟିରେ ନିରନ୍ତର ପ୍ରାଣୀ ଓ ଉଦ୍ଭିଦର ଧ୍ୱଂସାବଶେଷ ମିଶୁଥାଏ । ମାଟିର ଖତିରା ସମତୁଲ ରଖୁଥାଏ । ଖତିରାକୁ ମାଟିର ଉର୍ବରତା କୁହାଯାଏ । ଚାଷୀ ଭାଇ ପାଠଶାଠ ପଢ଼ି ନଥାଇପାରେ । ମାତ୍ର ତାର ବ୍ୟବହାରିକ ଜ୍ଞାନ ଓ ଅନୁଭୂତିକୁ ମାନିବାକୁ ହେବ । ସେ ଜାଣିଥିଲା ମାଟିରେ ଗଭୀର ଚଷ, ବାରମ୍ବାର ଖୋଳା ଖୋଳି କଲେ ପାଣି ପବନରେ ଉପର ମାଟି ଧୋଇ ହୋଇଯିବ (Erosion) । ଜମିର ଖତିରା କମିଯିବ । ଅମଳ କମିଯିବ । ମାଟିକୁ ବାନ୍ଧି ରଖିବା ପାଇଁ ଜମି ଚାରିପଟେ ହିଡ଼ ଦେଉଥିଲା । ଗଡ଼ାଣିଆ ଜମିହେଲେ ସ୍ତରକୁ ସ୍ତର ପଥରମାଟିରେ ବନ୍ଧକରି ମାଟିକୁ ଅଟକାଇ ରଖୁଥିଲା (ଜାପାନ ଓ ଗ୍ରୀସରେ ଟେରାସ୍ ଫାର୍ମିଂ ଏହି ପ୍ରଣାଳୀର ଉଦାହରଣ) । ପୁଅତ ମାକୁ ଏତେ ଯତ୍ନ କରୁନି ! ଚାଷୀ ଭାଇଟି ମାଟିମାକୁ କେତେ ହେପାଜତ କରୁଛି ! କି କୃଷି ବୈଜ୍ଞାନିକ ! ସେମାନେ ପୋଥିରେ ବାଇଗଣ ଫଳାନ୍ତି । ବାଡ଼ି ବାଇଗଣ ଚାଷୀର ଦାନ ।

ମଣିଷ ଯେତେ ଯେତେ ବୈଜ୍ଞାନିକ ତତ୍ତ୍ୱ ଉଦ୍ଭାବନ କରୁଛି, ବିକାଶ ନାଁରେ ଯେତେ ଜଙ୍ଗଲ ସଫା କରିଚାଲିଛି, ପୁଞ୍ଜିବାଦ ଅର୍ଥନୀତିରେ ପୃଥିବୀର ଗରିବୀ ଯେତେ ବଢ଼ି ବଢ଼ି ଯାଉଛି ପ୍ରକୃତିର ବିନାଶ ପ୍ରକ୍ରିୟା ସେତେ ତ୍ୱରାନ୍ୱିତ ହୋଇଯାଉଛି । ମାଟି ଉପରେ ମଣିଷକୃତ ଚଡ଼କ ପଡ଼ିଯାଉଛି । ସାରା ପୃଥିବୀରେ ମାନବ ସଭ୍ୟତା ଠା ଠା କରି ଭୁଷୁଡ଼ି ପଡୁଛି । ମାଟିମା ଦୁଃଖ, ଯନ୍ତ୍ରଣାରେ ତ୍ରାହି ତ୍ରାହି ଡାକ ଦେଉଛି । ୧୯୫୫ ମସିହା ଟମ୍ ଡ଼େଲ (Tom Dale) ଏବଂ ଭର୍ଣ୍ଣାନ ଗିଲ୍ କାର୍ଟର ଖଣ୍ଡିଏ ବହି ପ୍ରକାଶ କଲେ - 'Top Soil and Civilisation' ପୁସ୍ତକରେ ସେମାନେ ଲେଖନ୍ତି "ତଥାକଥିତ ସଭ୍ୟମଣିଷ ନିଜକୁ ପ୍ରକୃତିର ପ୍ରଭୁବୋଲି ଭାବିଥାନ୍ତି । ପ୍ରକୃତି ଉପରେ ସାମୟିକ ପ୍ରଭୁତ୍ୱକୁ ମଣିଷ ସ୍ଥାୟୀ ଭାବି ଭ୍ରମରେ ପଡ଼ିଥାଏ । ପ୍ରକୃତିର ନିୟମ ନଜାଣି ମଣିଷ ଯେପରି ଭାବେ ପରିବେଶ ଧ୍ୱଂସ କରିଥାଏ, ସେ ଜାଣିପାରେନି ଯେ ସେ ନିଜଗୋଡ଼ରେ ନିଜେ କୁରାଢ଼ି ମାରୁଛି । ମଣିଷ ଯେତେ ଶୀଘ୍ର ପ୍ରକୃତିକୁ ଧ୍ୱଂସ କରିଥାଏ, ସଭ୍ୟତା ସମାନ ବେଗରେ ଭୁଷୁଡ଼ି ପଡ଼ିଥାଏ ।"

ଐତିହାସିକ ଓ ନୃତତ୍ତ୍ୱବିତ୍‌ମାନଙ୍କ ଗବେଷଣା ଓ ତଥ୍ୟକୁ ଉଦ୍ଧାରକରି ଟମ୍ ଡଲ ଏବଂ କାର୍ଟର କୁହନ୍ତି Civilised man has marched across the face of the earth and left a desert in his foot-prints" (Small is Beautiful - E.F. Schumacher-The proper use of Land-Page-84) (ଏହି ଉକ୍ତିର ବିସ୍ତୃତ ପ୍ରମାଣ ଆମେ ପରବର୍ତ୍ତୀ ପ୍ରବନ୍ଧରେ ଉପସ୍ଥାପନ କରିବା) । ମଣିଷ ତଥାକଥିତ ବିକାଶର ଇନ୍ଦ୍ରଜାଲରୁ ନ ମୁକୁଳିଲେ ସ୍ମାର୍ଟ ସିଟି, ଇଣ୍ଡିଷ୍ଟ୍ରିଆଲ କରିଡ଼ର, କୋଷ୍ଟାଲ ଇକୋନୋମିକ ଜୋନ, ସିମେଣ୍ଟ କଂକ୍ରିଟ ରାସ୍ତା, ନଦୀ ସଂଯୋଗୀକରଣ ଭଳି ଯୋଜନାରେ ମୋହଗ୍ରସ୍ତ ହେଉଥିବ ଏବଂ ଏଥିସହିତ ମାଟି ବା ପରିବେଶର ସୁରକ୍ଷା ହେବ, ଏହା ଅବାସ୍ତବ । ମଣିଷ ପ୍ରତି ମୁହୂର୍ତ୍ତରେ ମାଟିକୁ ଖିନ୍‌ଭିନ୍ କରି ଧର୍ଷଣ କରୁଛି । ମାଟିର ଗଠନ (Top-soil Formation) ଅତ୍ୟନ୍ତ ମନ୍ଥର ପ୍ରକ୍ରିୟା । ଭୂ-ପୃଷ୍ଠରେ ଗୋଟିଏ ଇଞ୍ଚ ବହଳର ଉପରମାଟି ଗଠନପାଇଁ ୧୦ ହଜାର ବର୍ଷ ଲାଗିଥାଏ । ମାତ୍ର ଆଜି ଦିନର ଅସଭ୍ୟ, ବର୍ବର ମଣିଷ ହଜାରେ ଘଣ୍ଟାରେ ସେଇ ଅମୂଲ୍ୟ ପ୍ରାକୃତିକ ସଂପଦକୁ ନଷ୍ଟ କରିଦିଏ । ମାଙ୍କଡ଼ ହାତରେ ଶାଳଗ୍ରାମ-ନଚେଇ ନଚେଇ ନେଲା ପ୍ରାଣ । ସଭ୍ୟ ମଣିଷକୁ ତାର ଅପକର୍ମ ପାଇଁ ମାଙ୍କଡ଼ କହିବା କମ୍ ହେବ । ପଇସା, ଟଙ୍କାପାଇଁ ସେ ନିଶାଗ୍ରସ୍ତ । ବିବେକ, ବୁଦ୍ଧି, ଦୂରଦୃଷ୍ଟି ବୋଲି ତାର କିଛି ଆଉନାହିଁ । ସେ ଯଦି ତାର ନାତି, ଅଣନାତିଙ୍କ ଭବିଷ୍ୟତ କଥା ଭାବନ୍ତା ସେମାନଙ୍କୁ ଅନ୍ଧାର ଭିତରକୁ ଠେଲିଦେବା କାମ କରନ୍ତା ନାହିଁ । 'ଆପେ ଅର୍ଜିବା କର୍ମମାନ, ବେଲୁ ହୋଇବ ସାବଧାନ । ଏଡ଼େବଡ଼ ସୁନ୍ଦର ପୃଥିବୀକୁ ଧ୍ୱଂସ କରିବାକୁ ମଣିଷର ହାତ ଯାଉଛି କିମିତି ? ଜହ୍ଲାଦ ଓ ଆଧୁନିକ ମଣିଷ ଭିତରେ ତଫାତ କେଉଁଠି ?

ବାୟୁ, ଜଳ ଓ ସୂର୍ଯ୍ୟତାପ ପୃଥିବୀପୃଷ୍ଠର ପ୍ରଧାନ କ୍ଷୟକାରୀ ଶକ୍ତି (Agents of weathering) । ପ୍ରାକୃତିକ କ୍ଷୟ କ୍ରିୟ (Weathering Process) ଶିଳା, ଖଣିଜ ପଦାର୍ଥ ଓ ଅଜୈବ ଧାତୁ ଦ୍ରବ୍ୟଭଳି କଠିନ ପଦାର୍ଥକୁ କ୍ଷୟକରି ଉପରମାଟି ଗଢ଼ିଥାନ୍ତି । କାଦୁଆ, ବାଲି, ଜୈବିକ ଧ୍ୱଂସାବଶେଷ (Humus) ମିଶି ଉପରମାଟି (Top-soil) କୃଷି ଉପଯୋଗୀ ହୋଇଥାଏ । (Source-Text Book of Soil Science by TD Biswas & S.K. Mukherjee Page-3) । ୧୮୭୯ । ରୁଷିଆର ବୈଜ୍ଞାନିକ ଡ଼କୁଚଭ (Dokuchaev) ଏବଂ ତାଙ୍କର ଶିଷ୍ୟମାନେ ପରୀକ୍ଷା ନୀରିକ୍ଷାକରି ମୃତ୍ତିକା ବିଜ୍ଞାନର ପ୍ରଧାନ ନିୟମଗୁଡ଼ିକ ଲୋକଲୋଚନକୁ ଆଣିଲେ । ଡ଼କୁଚଭ କୁହନ୍ତି "The Upper layers of the soils were apparently subject to processes due to weathering and to processes

due to vegetation, both of these were instrumental in changing the upper horizon of the parent material to a greater or lesser depth. The parent materials which have undergone changes by the natural activities of air, water and plants, I call soil. Soils are the surface mineral and organic formation always more or less coloured by the humus ***" (Source-Text Book of Soil Science)

ଆମେ ବାରମ୍ବାର ଯେଉଁ ଉପରମାଟି କଥା କହୁଛୁ ତାର ମୋଟେଇ ମାତ୍ର ୭୦ ସେ.ମି.ରୁ ୯୦ ସେ.ମି. ମଧ୍ୟରେ। ପୃଥିବୀପୃଷ୍ଠରୁ ପୃଥିବୀ କେନ୍ଦ୍ରର ଗଭୀରତା ୮,୩୭୦ କିଲୋମିଟର (Oxford School Atlas Page - 7, The Earth)। ଉପରମାଟିର ମୋଟେଇ ଯେ କେତେ କମ୍ ସହଜରେ ବୁଝିପାରିବା। ପ୍ରାଣୀମାନଙ୍କ ଶରୀରରେ ଚମ ଭଳି। କଳ୍ପନା କରନ୍ତୁତ ଯେକୌଣସି ପ୍ରାଣୀର ଦେହରୁ ଚମଡ଼ା ଛଡ଼ାଇ ଦେଲେ ସେ ବଞ୍ଚିବତ ? ଉପରମାଟି ଧୋଇ ହୋଇଗଲେ ଜୀବଜଗତ ନିଶ୍ଚିହ୍ନ ହୋଇଯିବ। ପୃଥିବୀ ଜଡ଼ ପାଲଟିଯିବ। ଉପରମାଟି ଥାଇ ସେଥିରେ ଖତିରା କମିଗଲେ ଉଦ୍ଭିଦର ବଢ଼ିବା ବା ଫଳିବା ଆଶାତୀତ କମିଯିବ। ସେ ମାଟିକୁ ଆମେ ଉସର ମାଟି କହିବା। 'ମାଟି ନିନ୍ଦନ୍ତି ଅକର୍ମା'। ଉସର ମାଟିରେ ମଧ୍ୟ ନିୟମିତ ଜୈବିକ ଖତ ପ୍ରୟୋଗ କଲେ ତାହା ଉର୍ବର ହୋଇଯିବ। ମାଟି କାହାର ଧାରୁଆ ନୁହେଁ। ମାଟିକୁ ହେପାଜତ କଲେ ସେ ଫଳରେ କଡ଼ାଗଣ୍ଡା ହିସାବରେ ମଣିଷକୁ ଫେରାଇ ଦେବ। ହ୍ୟୁମସ ଉର୍ବର ମାଟିର ମାପକ। ସାର ଆଲବର୍ଟ ହାୱାର୍ଡ଼ କୁହନ୍ତି "ସାଧାରଣତଃ ଖତିରା ପରୋକ୍ଷ ଭାବେ ଗଛକୁ ସାହାଯ୍ୟ କରିଥାଏ। ଖତ ବା ଖତିରାରେ ଥିବା ପୁଷ୍ଟିକର ଖାଦ୍ୟ (ଉଦ୍ଭିଦ ପାଇଁ)ର ଅକ୍ସିଡ଼ାଇସନ୍ ଦ୍ୱାରା ମାଟିରେ ଭିନ୍ନ ଭିନ୍ନ ଲବଣ ପ୍ରସ୍ତୁତ ହୁଏ। ପାଣି ସାହାଯ୍ୟରେ ଏହି ସବୁ ଲବଣ ସୂକ୍ଷ୍ମଚେର (Hair Roots) ଦ୍ୱାରା ଗଛ ଖାଦ୍ୟରୂପେ ଗ୍ରହଣ କରିଥାଏ । "The Mechanism by which having fungous threads (mycitium) invade the cells of the young roots and are gradually digested by these is a continuous phenomenon" (The soil and Health- A study of Organic Agriculture by Sir Albert Howard).

ସୁସ୍ଥ ମାଟିରୁ ସୁସ୍ଥ ମଣିଷ। ସୁସ୍ଥ ଜୀବଜନ୍ତୁ। ସୁସ୍ଥ ଫଳ ଓ ପନିପରିବା। ଇତିହାସରୁ ଜଣାଯାଏ ପଥିବୀରେ ଯେଉଁ ଅଞ୍ଚଳରେ ଯେତେବେଳେ ମାଟିର ଉର୍ବରତା କମିଛି ସେ ଅଞ୍ଚଳର ମଣିଷର ସ୍ୱାସ୍ଥ୍ୟରେ ଅବନତି ଘଟିଛି। ପ୍ରଥମ ରୋମ ସାମ୍ରାଜ୍ୟ ପତନର ଏହା

ଏକ ପ୍ରମୁଖ କାରଣ। "History suggests that a decline in soil fertility is always accompanied by a corresponing decline in the vigour of the people who dwell upon it. To those who doubt this I recommend a study of the fall of the first Roman Empire..." The Living Soil by Madan E.B. Balfour.

ଭାରତରେ ମୃତ୍ତିକା ଅବକ୍ଷୟ ୧୯୯୦ ଠାରୁ ବିଜୁଳି ବେଗରେ ସରକାରୀ ପ୍ରୋତ୍ସାହନରେ ଘଟୁଛି। ୧୯୯୦ରେ LPG ଆମ ସରକାର ଲାଗୁକଲେ। ପରିଣାମସ୍ୱରୂପ ଗତ ୧୦ବର୍ଷ ଭିତରେ ଆମଦେଶର ୫ଲକ୍ଷ ହେକ୍ଟର ଚାଷଜମି ଅଣଚାଷରେ ନିୟୋଜିତ ହେଲାଣି। (Economic Survey of India 2012-2013)। ଦକ୍ଷିଣ ଭାରତରେ ଏହି ସମସ୍ୟା ଉତ୍କଟରୂପ ଧାରଣ କଲାଣି। ଅସୀମ ଶ୍ରୀବାସ୍ତବ ଏବଂ ଆଶୀଷ କୋଠାରୀ Churning the Earth - The Making of the Global India ରେ ଚାଞ୍ଚଲ୍ୟକର ତଥ୍ୟ ଉପସ୍ଥାପନ କରିଛନ୍ତି। ସେମାନେ ଲେଖନ୍ତି "Farmers are enticed or forced to sell of the Top-soil for brick making, forever destroying the productive capacity of their farms. This has reached outrageous proportions around many cities such as Bengaluru, from the surrounds of which over 4000 truck Loads of top-soil from farms and tank beds are removed everyday for cities construction purposes. Then there is the ugly realty of wide spread displacement, Sixty million people have been displaced from their traditional production landscapes since Independence." (Churning The Sarth-A House of five-Page - 143)। ମାରିନେଲେ ମହାପାତ୍ରେ ରହିଁଛନ୍ତି ଜଳକା। ଝିଙ୍କିକା ମାରି ବଣି ପୋଷିବା ନୀତିର ପ୍ରଥମ ଶିକାର ଚଷାର ଜମିଖଣ୍ଡକ।





'ଆଉ କେତେ ବିଷ ପିଇଲେ ଚେତିବା'ର ଲେଖକ ପିତୃପ୍ରତିମ ଶ୍ରୀ ନଟବର ଷଡ଼ଙ୍ଗୀ ଜଣେ ଦରଦୀ, ସମ୍ବେଦନଶୀଳ ଓ ସଂଗ୍ରାମୀ କୃଷକ ତଥା ଚିନ୍ତାନାୟକ। ଜଣେ ଭିନ୍ନ ଚିନ୍ତାଧାରର ଶିକ୍ଷକ ହିସାବରେ ସେ ଛାତ୍ରମାନଙ୍କ ନିକଟରେ ପରିଚିତ। ସମାଜରୁ ଅନ୍ଧବିଶ୍ୱାସ, କୁସଂସ୍କାର, ଜାତି ଧର୍ମ ଭେଦଭାବ ଇତ୍ୟାଦି କେମିତି ଦୂରହୋଇ ବୈଜ୍ଞାନିକ ଚିନ୍ତାଧାରା ଓ ସମାନତାକୁ ଭିତ୍ତିକରି ଏକ ସାମାଜିକ ସମ୍ପର୍କ ଏବଂ ସ୍ୱାବଲମ୍ବନଶୀଳ ସମାଜ ପ୍ରତିଷ୍ଠା କରାଯାଇପାରିବ ସେଥିପାଇଁ ସେ ସଦାସର୍ବଦା ଉଦ୍ୟମରତ। ଅବସର ପରେ ସେ ଚାଷବାସକୁ ଜୀବନଦେଇ ଭଲପାଇଆସିଛନ୍ତି। ଦେଶୀଧାନ ବିହନ ସଂଗ୍ରହ ଓ ଦେଶୀ ପଦ୍ଧତିରେ ଚାଷକରିବା ନଟବର ବାବୁଙ୍କର ଏକ ନିଶା ହୋଇଯାଇଛି। ଯୁବଚାଷୀ ଯୁବରାଜଙ୍କ ସହ ମିଶି ସେ ଯେଉଁ ପ୍ରଚେଷ୍ଟା ଜାରି ରଖିଛନ୍ତି ତା'ର ସୁଫଳ ଓଡ଼ିଶାବାସୀଙ୍କୁ ମିଳିସାରିଛି। ୪୫୦ ରୁ ଉର୍ଦ୍ଧ କିସମର ଦେଶୀଧାନ ବିହନ ଏବେ ନଟବର ବାବୁଙ୍କ ଓଳିଆରେ। ଅବେଳରେ ଚାଲିଯାଇଥିବା ବଡପୁଅ ରାଜେନ୍ଦ୍ରଙ୍କ ସହ ମିଶି ଯୁଗୋପଯୋଗୀ କିଛି ସୃଜନଶୀଳ ପ୍ରକଳ୍ପ ସେ ଆରମ୍ଭ କରିଥିଲେ। ସମଦୃଷ୍ଟି ପାକ୍ଷିକ ପତ୍ରିକାରେ ନଟବର ବାବୁଙ୍କ ଅନେକ ଉପାଦେୟ ଓ ଉଚ୍ଚକୋଟିର ଗବେଷଣାମୂଳକ ଲେଖାମାନ ପ୍ରକାଶ ପାଇଛି: କୃଷି ଠାରୁ ଆରମ୍ଭ କରି ଗ୍ରାମ୍ୟ ଅର୍ଥନୀତିର ପ୍ରତେକଟି ଦିଗ ଯାଏ ଏବଂ ସାଆନ୍ତିଆ ସମବାୟ ଠାରୁ ଆରମ୍ଭକରି ମନସାଣ୍ଟୋ ଓ ସିନ୍‌ଜେଣ୍ଟା ଭଳି ବହୁରାଷ୍ଟ୍ରିୟ କୃଷି କମ୍ପାନୀ ଯାଏ। ୮୨ ବର୍ଷ ରେ ବି ନଟବର ବାବୁଙ୍କ କଲମ ଓ ଲଙ୍ଗଳ ଉଭୟ ଆଜି ସକ୍ରୀୟ ଅଛନ୍ତି।

ଏହି ପୁସ୍ତକଟି ସାଧାରଣ କୃଷିଜୀବୀଙ୍କଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟର ନିଷ୍ଠାପର ଗବେଷକଙ୍କ ଯାଏ ସମସ୍ତଙ୍କ ପାଇଁ ଉପଯୋଗୀ ହେବବୋଲି ଅଶା ଓ ବିଶ୍ୱାସ। ଏଥିରେ ସ୍ଥାନିତ ପ୍ରତିଟି ଲେଖା ପାଠକଙ୍କ ଦ୍ୱାରା ପୂର୍ବରୁ ବେଶ୍ ଆଦୃତ ହୋଇସାରିଛି। ପ୍ରତିଟି ଲେଖାରେ ଉଚ୍ଚତର ଗବେଷଣା ଓ ନୀତିନିର୍ଦ୍ଧାରଣ ପାଇଁ ଯଦେଷ୍ଟ ଉପାଦେୟ ତଥ୍ୟ ଓ ଦିଗ୍‌ଦର୍ଶନ ପ୍ରଦାନ କରାଯାଇଛି। ଓଡ଼ିଶାର କୃଷି ସାହିତ୍ୟ ଏବଂ କୃଷିର ରାଜନୈତିକ ଅର୍ଥନୀତି କ୍ଷେତ୍ରରେ ଏହି ବହିଟିର ଏକ ବଳିଷ୍ଠ ଅବଦାନ ରହିବ ନିଶ୍ଚୟ।

**- ସୁଧୀର ପଟ୍ଟନାୟକ**
ପ୍ରକାଶକ

